# ଜୀବନ

ଭାବି ଭାବି ଜୀବନକୁ ପାରୁନି ମୁଁ ଜାଣି
ଏମିତି କେମିତି ହୁଏ କାହିଁକି କେଜାଣି !
ପୁରୁଣାରେ ନୂଆ କି ସେ
        ନୂଆରେ ପୁରୁଣା
ଜଣାରେ ଅଜଣା କିବା
        ଅଜଣାରେ ଜଣା
କାହାଣୀରେ ଗୀତ କି ସେ ଗୀତରେ କାହାଣୀ ।।୧।।
ଭାବନାରେ ଭାବ ଅବା
        ଭାବରେ ଭାବନା
କଳ୍ପନାରେ ବାସ୍ତବ କି
        ବାସ୍ତବେ କଳ୍ପନା
ଯାମିନୀର ଅମା କିବା ଅମାର ଯାମିନୀ ।।୨।।
ନିରାଶାରେ ଆଶା ଅବା
        ଆଶାରେ ନିରାଶା
ଭାଷାରେ ଭାବନା ଅବା
        ଭାବନାରେ ଭାଷା
ଶ୍ରାବଣର ଲୁହ କିବା ଲୁହର ଶ୍ରାବଣୀ ।।୩।।
ଜଳରେ ନଉକା ଅବା
        ନଉକାରେ ଜଳ
ଲତାର ପତର କିବା
        ଲତାରେ ପତର
ପାଣିରେ ପାଖୁଡ଼ା ଅବା ପାଖୁଡ଼ାରେ ପାଣି ।।୪।।
ଚନ୍ଦନର ବାସ କିବା
        ବାସର ଚନ୍ଦନ
ପବନର ଛନ୍ଦ ଅବା
        ଛନ୍ଦର ପବନ
ପାଣିର ଭଉଁରୀ କିବା ଭଉଁରୀର ପାଣି ।।୫।।

# ଶରତ
# ଗୀତିସମଗ୍ର

## ପ୍ରଫେସର ଶରତ ଚନ୍ଦ୍ର ରଥ

ସଂକଳନ :
ବିଭୁ ପ୍ରସୂନ ଦାସ

ବିଦ୍ୟା ପ୍ରକାଶନୀ

ପ୍ରଫେସର ଶରତ ଚନ୍ଦ୍ର ରଥଙ୍କ **ଗୀତିସମଗ୍ର**


ମୋବାଇଲ୍ : ୯୪୩୭୭୫୬୨୪୦

ସଂକଳନ : **ଶ୍ରୀ ବିଭୁ ପ୍ରସୂନ** ଦାସ

୫୮/୬୦ ଦିବ୍ୟ ବିହାର, ଭୁବନେଶ୍ୱର

ପ୍ରକାଶକ : **ଦିବ୍ୟ ପ୍ରକାଶନୀ,** ଭୁବନେଶ୍ୱର





ପ୍ରଥମ ସଂସ୍କରଣ : ୨୦୨୧

ପ୍ରଚ୍ଛଦ ପରିକଳ୍ପନା : ବିଭୂ ପ୍ରସୂନ

ମୁଦ୍ରଣ : ଦିବ୍ୟ ମୁଦ୍ରଣୀ

ଦିବ୍ୟ ବିହାର, ଭୁବନେଶ୍ୱର-୨, ୯୪୩୭୦୦୬୫୬୬

ମୂଲ୍ୟ ₹ ନଅ ଶହ ଟଙ୍କା

ମୁଖ୍ୟ ବିତରକ : **ସର୍ଜନା,** ବ୍ରହ୍ମପୁର


Prof. Sarat Chandra Rathanka Giti Samagra


Edited by : **Sri Bibhu Prasuna Das**

58/60, Divya Vihar, Bhubaneswar, Orissa

Mob-9437494142

Publisher **Divya Prakashani**

58/60, Divya Vihar, Bhubaneswar, Orissa





First Edition **2021**

Cover Design **Bibhu Prasuna**

Printed at **Divya Mudrani**

58/60, Dibya Vihar, BBSR-2, 9437006566

Distibruter : **Sarjana**, Berhampur

Price : ₹ 900

# ଉତ୍ସର୍ଗ

ଉକ୍ତ 'ଗୀତିସମଗ୍ର' ପୁସ୍ତକଟିକୁ
ଶ୍ରୀମାଶ୍ରୀଅରବିନ୍ଦଙ୍କ
ଚରଣରେ ଆଭୂମ ପ୍ରଣାମ
ସହ ସମର୍ପଣ କଲି ।

# ଗୀତିକ୍ରମ

## ଧୂପବାସ (୧୯୯୫)

## ମାଟି ମହକ (୧୯୯୭)

## ଆରାଧନା (୧୯୯୮)

## କାଲି ସକାଳର ସୂର୍ଯ୍ୟ (୧୯୯୯)

## ପ୍ରତିଧ୍ୱନି (୧୯୯୯)

## ବନମାଳା (୨୦୦୧)



## ତୁମେ ଓ ମୁଁ (୨୦୧୨)

## ନବଚେତନା (୨୦୧୩)



## ବନ୍ଦନିକା (୨୦୧୯)

## କରୋନାଗୀତି (୨୦୨୧)



## ମତାମତ

# ଧୂପବାସ




**ଡକ୍ଟର ଶରତ ଚନ୍ଦ୍ର ରଥ**

ଏମ୍.ଏ., ଏମ୍.ଫିଲ୍. ପିଏଚ.ଡ଼ି

**ପ୍ରକାଶ କାଳ : ୧୯୯୫**

**ପ୍ରଚ୍ଛଦ : ରମାକାନ୍ତ ସାମନ୍ତରାୟ**

# ମୁଖଶାଳା

ମନର ସୁକୁମାର ଭାବ ବିଳାସ ଗୀତିକବିତାରେ ରୂପ ପାଏ। ଗୀତିକବିତା ଏକ ସ୍ୱତଃସ୍ଫୁର୍ତ୍ତ ଅଭିବ୍ୟକ୍ତି। ମନର ଏକ ନିର୍ଦ୍ଦିଷ୍ଟ ଆବେଗହିଁ ଏଥିପାଇଁ ପ୍ରଥମ ଓ ପ୍ରଧାନ ଭିତ୍ତି। ସେ ଅବସ୍ଥା ସବୁବେଳେ ନଥାଏ, ବେଳେବେଳେ ଆସେ। ସେତେବେଳେ ଶବ୍ଦମାନେ କେଉଁ ଅଜଣା ରାଇଜରୁ ଅଲକ୍ଷ୍ୟରେ ଆସିଯାଆନ୍ତି। କାଉଁରିଲଗା ସେ ତନ୍ମୟ ଅବସ୍ଥା ବଚନର ବିଷୟ ନୁହେଁ, ଅନୁଭବର ବିଷୟ। ପ୍ରତ୍ୟେକ ଗୀତିକବିଙ୍କର ଏ ଅନୁଭବ ଥିବ ଯେ ସେ ଗୀତିକବିତା ଲେଖନ୍ତି ନାହିଁ, କେଉଁ ଶକ୍ତି ତାଙ୍କୁ ମନ୍ତ୍ରମୁଗ୍ଧକରି ତାଙ୍କ ଦ୍ୱାରା ସେଗୁଡ଼ିକୁ ଲେଖାଇନିଅନ୍ତି। ପରେ ସେ ତନ୍ମୟ ଅବସ୍ଥା ସଂପର୍କରେ ଭାବିବସିଲେ କବିଙ୍କୁ ମଧ୍ୟ ବିସ୍ମିତ ହେବାକୁ ହୁଏ। ଶବ୍ଦମାନେ ଗୀତି କବିତାରେ ବ୍ୟବହୃତ ହୋଇନଥିବା ବେଳେ ଯେତିକି ଶକ୍ତିର ଅଧିକାରୀ ହୋଇଥାନ୍ତି, ଗୀତିକବିତାରେ ବ୍ୟବହୃତ ହେବାପରେ ସେଗୁଡ଼ିକ ଅଧିକ ଶକ୍ତିଶାଳୀ ହୋଇଯିବାପରି ମୁଁ ଅନୁଭବ କରେ। ଗୀତିକବିତା ପ୍ରତି ମୋର ଆନ୍ତରିକତା ସ୍ୱତନ୍ତ୍ର। ଏହି ଆନ୍ତରିକତା ଛାତ୍ରଜୀବନରୁ ଅଦ୍ୟାବଧି ଅତୁଟ ରହିଛି। ଏଥିରୁ ମିଳୁଥିବା ଆନନ୍ଦ ଓ ଆତ୍ମସନ୍ତୋଷ କଥାରେ କହିହେବ ନାହିଁ।

ଭିନ୍ନ ଭିନ୍ନ ଅବକାଶରେ ମୋ ଦ୍ୱାରା ରଚିତ ଗୀତିକବିତାଗୁଡ଼ିକରୁ କେତେକ ପଢ଼ିବାର ଓ ଶୁଣିବାର ସୁଯୋଗ ପାଇ ସେଗୁଡ଼ିକୁ ପୁସ୍ତକ ଆକାରରେ ମୁଦ୍ରିତ କରିବା ନିମନ୍ତେ ଯିଏ ପ୍ରବଳ ପ୍ରେରଣା ଦେଇଛନ୍ତି, ସେ ହେଉଛନ୍ତି ମୋ ବୋଉ ଶ୍ରୀମତୀ ମନୋରମା ରଥ। ଆଜି ଏହି ପୁସ୍ତକ ପ୍ରକାଶନର ଅବକାଶରେ ମୁଁ ତାଙ୍କୁ ମୋର କୃତଜ୍ଞତା ଜଣାଉଛି। କଣ୍ଠଶିଳ୍ପୀ ଶ୍ରୀ ଅରବିନ୍ଦ ମୁଦୁଲି ଏଥିରୁ କେତେକ ଭଜନ ପରିବେଷଣ ତଥା ଜେ.ଇ. କମ୍ପାନୀ ମାଧ୍ୟମରେ ରେକଡ଼ିଙ୍ଗ କରିଥିବାରୁ ତାଙ୍କୁ ମୁଁ ସାଧୁବାଦ ଜଣାଉଛି। ଏହି ପୁସ୍ତକ ପ୍ରକାଶନ ନିମନ୍ତେ ମୋର ବନ୍ଧୁ ଅଧ୍ୟାପକ ଡକ୍ଟର ନାରାୟଣ ସାହୁ ଓ ଛାତ୍ର ଶ୍ରୀ ସୌମେନ୍ଦ୍ର ଜେନାଙ୍କ ଆଗ୍ରହ ମୋ ପାଇଁ ସ୍ମରଣୀୟ।

ପବନରେ ଧୂପବାସ ସଞ୍ଚରିତ ହୋଇ ପୂଜାର ପରିବେଶକୁ ପବିତ୍ର କଲାପରି 'ଧୂପବାସ'ର ଭଜନଗୁଡ଼ିକର ପ୍ରତ୍ୟେକ ପାଠକଙ୍କର ହୃଦୟରେ ସଞ୍ଚରିତ ହୋଇ ବିଭୁନିରାଜନା ପାଇଁ ମନକୁ ପବିତ୍ର କରୁ, ଏତିକି କାମନା।

। ଇତି ।

ବିନୀତ

ଲେଖକ

# ତୁମେ ହିଁ ପ୍ରଥମ

ପ୍ରୀତିର ପ୍ରଥମ ଫୁଲବନ ତୁମେ
ଗୀତର ପ୍ରଥମ ସ୍ୱର
ନୀଳସାଗରର ପ୍ରଥମ ଲହରୀ
ନଦୀର ପ୍ରଥମ ଧାର ।।୦।।

ଘୋର ତମଘେରା ଗଗନରେ ତୁମେ
ପ୍ରଥମ ଉଷାର ହସ
ନୀଳ ଆକାଶର ନୂଆମେଘେ ତୁମେ
ପ୍ରଥମ ବିଜୁଳି ରାସ
ଧ୍ୱନିର ପ୍ରଥମ ଓଁକାର ତୁମେ
ଭାଷାରେ ପ୍ରଥମାକ୍ଷର ।।୧।।

ଆଶାର ପ୍ରଥମ ମୁକୁଳ ବିଳାସ
କୋଇଲି ପ୍ରଥମ ଗାନ
ଅଳିର ପ୍ରଥମ ଗୁଞ୍ଜରଣ ତୁମେ
ମାଙ୍ଗଳିକ ମଧୁତାନ
ମାଟିର ପ୍ରଥମ ଭିଜାଗନ୍ଧ ତୁମେ
ସ୍ନେହର ପ୍ରଥମ ମୂଳ ।।୨।।

ପ୍ରଥମ ବସନ୍ତ ମଳୟ ପ୍ରବାହ
ମୃଦୁ ହସ ମନୋରମ
ପ୍ରଥମ କବିତା ନବ କିଶଳୟେ
ସୁଲଳିତ ଅନୁପମ
ଜୀବନ ବୀଣାର ପ୍ରଥମ ଝଙ୍କାର
ତୁମେ ତ ଦୟା ସାଗର ।।୩।।

●●●

# ନୀରବ ନିଶୀଥେ

ନୀରବ ନିଶୀଥେ ସପନରେ ସତେ
ଆସିବ କି ପ୍ରଭୁ ଆସିବ କି ?
ତୁମ ଦରଶନେ ସେ ମଧୁ ଲଗନେ
ମୋ ଚିତ୍ତ ପ୍ରେମରେ ଭାସିବ କି ? ॥୦॥

ତୁମର ସେ ଧୀର ମଧୁର ଚାହାଣି
ମୃଦୁମୃଦୁ ହସ ସୁଲଳିତ ଠାଣି
ଦରଶନେ ମୋର ମରୁ ଜୀବନରେ
ଆଶାଫୁଲ ଫୁଟି ବାସିବ କି ? ॥୧॥

ତୁମ ରୂପ ଶୋଭା ଦେଖି ମୋର ଆଖି
ଲୁହେ ଭିଜି ଭିଜି ରହିଯିବ ଲାଖି
ସରଗର ସୁଧା ଅବତରି ଆସି
ସତେ କି ମୋ ହାତେ ଖସିବ କି ? ॥୨॥

ରାଜ ଆସନରେ ବସିଥିବ ତୁମେ
ପାଦ ତଳେ ତୁମ ବସିଥିବି ପ୍ରେମେ
ବରଷାର ଧାରା ହୋଇ ତୁମେ ପରା
ମୋ ଚିତ୍ତ ଚାତକ ତୋଷିବ କି ? ॥୩॥

●●●

# ସପନକୁ ମୋର

ସପନକୁ ମୋର ସତ କରି ପ୍ରଭୁ
ଦେଖାଦେବ ଆସି ଯେବେ
ସେତେବେଳେ କିବା ଦେବି ଉପହାର
ମନେ ମନେ ବସି ଭାବେ ।।୦।।

ପାଦ ଧୋଇଦେବି ଗଙ୍ଗାଜଳ ଦେଇ
ଭାବେ ବସି ମନେ ମନେ
ପୁଣି ଭାବେ ବସି କି ଲାଭ ତହିଁରେ
ଗଙ୍ଗା ତୁମ ନଖ କଣେ
ସବୁ ବଇଭବ ଅଛି ବୋଲି ତୁମ ନାମ ଭଗବାନ ଭବେ ।।୧।।

ଫୁଲଟିଏ ଅବା ଦିଅନ୍ତି ପାଦରେ
ପାଦ ତୁମ ଫୁଟାଫୁଲ,
ଯାର ରୂପ ଶୋଭା ଭୁବନ ଭୁଲାଏ
ବାସ ତା ଅମୂଲ ମୂଲ ।
ତୁମ ମହିମାର ତୁଳନା ନାହିଁତ ଅମଳିନ ଯୁଗେ ଯୁଗେ ।।୨।।

ବାସ ଚନ୍ଦନ ମୁଁ ଲେପିବି ଅଙ୍ଗରେ
ମନେ ମନେ ଭାବେ ବସି,
ହେଲେ ତୁମ ଅଙ୍ଗ ବାସର ମହକ
ଚନ୍ଦନକୁ ଦେବ ହସି ।
ଆନନ୍ଦର ଅଶ୍ରୁ ଝରାଇ ନୟନୁ ଭେଟିଦେବି ତୁମ ପାଦେ ।।୩।।

●●●

# ତୁମେ ନନ୍ଦନ ଫୁଲହସ

ତୁମ ନନ୍ଦନ ଫୁଲ ହସ
ତୁମେ ଚନ୍ଦନ ଚାରୁ ବାସ
ସୂରୁଯ ଆଲୋକ ଜହ୍ନର ଜୋଛନା ସଲିଳର ସୁଧାରସ ॥୦॥

ତୁମେ ଆକାଶର ଶୋଭନ ନୀଳିମା
ସବୁଜ ବନର ଶୁଭ ଶ୍ୟାମଳିମା
ଆଲୋକ ବରଣୀ ଉଷାର ତମେତ ମଧୁର ମୋହନ ବେଶ। ॥୧॥

ପ୍ରବଣତା ତମେ ଅଶେଷ ଆଶାର
ମୃଦୁ ଧ୍ୱନି ତୁମେ ମରମ ଭାଷାର
ଜନମେ ଜନମେ ନୂଆ ଚେତନାର ସୁଲଳିତ ମଧୁହାସ। ॥୨॥

ପ୍ରାଣେ ପ୍ରାଣେ ତମେ ଆନନ୍ଦ ସୁବାସ,
ଜୀବନେ ଜୀବନେ ପ୍ରୀତିର ପୀୟୂଷ
ଜଡ଼ରୁ ଜୀବନ, ଜୀବନରୁ ମନ, ସବୁ ତୁମ ଅଭିଳାଷ। ॥୩॥

●●●

# ପଙ୍କେ ରହି ମୁଁ

ପଙ୍କେ ରହି ମୁଁ ପଙ୍କଜ ହୋଇନି
ତୁମ ପୂଜା ଡାଲା ସାଜିବା ପାଇଁ
ସାଗରେ ରହି ମୁଁ ଶଙ୍ଖ ହୋଇନି
ତୁମ ପୂଜା ବେଳେ ବାଜିବା ପାଇଁ ॥୦॥

ବଣରେ ରହି ମୁଁ ତମାଳ ହୋଇନି
ତୁମରି ପରଶ ପାଇବା ପାଇଁ
ବାଡ଼ିରେ ରହି ମୁଁ ତୁଳସୀ ହୋଇନି
ତୁମରି ମହିମା ଗାଇବା ପାଇଁ
ନିଆଁ ହୋଇ ଦୀପଶିଖା ହୋଇନାହିଁ
ତୁମ ପୂଜା ବେଳେ ଜଳିବା ପାଇଁ ॥୧॥

ଜଳଧାର ହୋଇ ଯମୁନା ହୋଇନି
ତୁମରି ପରଶ ପାଇବା ପାଇଁ
ବାଉଁଶ ହୋଇ ମୁଁ ବଇଁଶୀ ହୋଇନି
ତୁମରି ଅଧର ଛୁଇଁବା ପାଇଁ
ମଳୟ ବାଜି ମୁଁ ଚନ୍ଦନ ହୋଇନି
ତୁମ ସେବା ମୋର କରମେ ନାହିଁ ॥୨॥

●●●

## ସବୁ ତୁମରି ଇଚ୍ଛାରେ ହୁଏ

ସବୁ ତୁମରି ଇଚ୍ଛାରେ ହୁଏ,
ଆଉ କେହି ନୁହେଁ କେହି ନୁହେଁ,
ସମସ୍ତେ କହନ୍ତି ମୁଁ ମୁଁ ବୋଲି
ମୁଁ ମୁଁ କିଛି ନୁହେଁ ॥୦॥

ତୁମେ ତ ସକଳ ଜୀବର ଜୀବନ
ବେଦର ଗାୟତ୍ରୀ ଛନ୍ଦ,
ଫୁଟିଲା ଫୁଲର ମିଠା ମିଠା ହସ
ଫଗୁଣ ମଳୟ ମନ୍ଦ।
ତୁମରି ଭାବନା ହୁଏନାହିଁ ଆନ
ସବୁକିଛି ରୂପ ପାଏ। ॥୧॥

ତୁମରି ଆଦେଶେ ମେଘମାଳା ଭାସେ
ବରଷେ ସଲିଳ ଧାର,
ତୁମରି ଇଙ୍ଗିତେ ସାଗରରେ ନାଚେ
ଲହରୀ ମାଳକୁ ମାଳ।
ତୁମରି କରଣି, ତୁମେ ତ କରତା
କରମ ତୁମରି ହୁଏ। ॥୨॥

•••

# ଏ ଜୀବନ କର ଧନ୍ୟ

ଏ ଜୀବନ କର ଧନ୍ୟ କରି ତୁମ ପ୍ରେମ ଦାନ,
ଆଜି ତୁମ ଚରଣରେ ଏଇ ମୋର ନିବେଦନ ॥୦॥

ମୋ ଚେତନା ନୀଳକଇଁ ଫୁଟୁ ପ୍ରଭୁ ତୁମ ପାଇଁ,
ତୁମେ ମୋ ପରାଣ ପ୍ରଭୁ ତୁମେ ମୋ ଜୀବନେ ସବୁ
ମୋ ମନର ଆକାଶରେ ତୁମେ ତ ପୂର୍ଣ୍ଣିମା ଜହ୍ନ ॥୧॥

ତୁମେ ପ୍ରାଚୀନଭେ ଉଷା, ନିରାଶା ଅନ୍ଧାରେ ଆଶା,
ଛଣା ସୁଧା ତୁମ ଭାବ, ଲାଗେ କେତେ ଅଭିନବ ।
ତୁମେ ଦିବାକରେ ପ୍ରଭା ଶୋଭାରେ ନନ୍ଦନ ବନ ॥୨॥

ତୁମେ ସଲିଳରେ ରସ, ଫୁଟାଫୁଲେ ମୃଦୁ ହସ,
ପ୍ରଭୁ କରୁଣା ସାଗର, ନାହିଁ ତୁଳନା ତୁମର ।
ମୋ ଆରତ ପଦ୍ମବନ ପାଇଁକି ମତ୍ତ ବାରଣ ॥୩॥

●●●

# ତୁମେ ସଲିଳର ରସ ଧାରା

ତୁମେ ସଲିଳର ରସ ଧାରା
ଫୁଲରେ ଫୁଲରେ ସୁବାସ ସୁଷମା
ଆଶାର ପାହାନ୍ତି ତାରା । ॥୦॥

ବରଷା ଧାରାରେ ଝରଝର ତାନ,
ଫଗୁଣ କୁଞ୍ଜରେ ପିକ କୁହୁଗାନ ।
ରାକା ରଜନୀର ମୋହନ ମାଧୁରୀ
ସରଗ ସୁଧା ପଖଳା ॥୧॥

ଅରୁଣ କିରଣେ ତୁମେ ମୃଦୁ ହାସ,
ସକାଳ ପବନେ ଶୀତଳ ପରଶ,
ଶ୍ୟାମଳ ବନର ରୁଚିର ଶୋଭାରେ
କାଉଁରି ପରଶ ପରା ॥୨॥

ଆକାଶର ତୁମେ ରୁଚିର ନୀଳିମା,
ଦିଗ ଦିଗନ୍ତରେ ଚାରୁ ମଧୁରିମା ।
ଜୀବନେ ଜୀବନେ ଆନନ୍ଦ ସାଗର
ମଧୁର ତରଙ୍ଗମାଳା ॥୩॥

●●●

# ସାଗରେ ବରଷିଗଲ

ସାଗରେ ବରଷିଗଲ ତୁମେ ଜଳଧାର,
ମରୁବାଲି ନ ପାଇଲା ଟୋପାଏ ମାତର ॥୦॥

ଚାହିଁ ଚାହିଁ ଆଶା ନେଇ ଦିନ ଗଲା ଚାଲି,
ମିଳିବ ବୋଲି ତୁମର କରୁଣା ଶ୍ରୀହରି ।
ଆଶା ରହିଲା ଆଶାରେ କରୁଣା ସାଗର ॥୧॥

କରମ ଲିଖନ ବୋଲି ବୁଝୁ ନାହିଁ ମନ,
ତୁମ ଇଛା ହେଲେ ତାହା ହୋଇଥାନ୍ତା ଆନ ।
ପଙ୍ଗୁ ଲଙ୍ଘେ ଗିରିଶିଖ, ଭାସଇ ପଥର ॥୨॥

ମାଗୁଣି ରଖିଲ ନାହିଁ କାହିଁକି କେଜାଣି,
ଦେଖି ମୋର କେଉଁ ଦୋଷ ପାରୁନି ମୁଁ ଜାଣି ।
ଅପୂରଣ ରହିଗଲା ମୋର ଭିକ୍ଷାଥାଳ ॥୩॥

●●●

# ମୋ ଦୋଷେ ମୁଁ

ମୋ ଦୋଷେ ମୁଁ ହୁଡ଼ିଲି ପଥ
  ମିଛେ କଲି ତୁମକୁ ଦୋଷୀ,
ତୁମେ ମନ୍ଦାକିନୀ ପବିତ୍ର ପ୍ରବାହ
  ତୁମ କୂଳେ ଥାଇ ମୁଁ ଚିର ଶୋଷୀ ॥୦॥

ଯଶ, ଗଉରବ, ଧନ, ଜନ, ମାନ,
ପଛେ ପଛେ ଧାଇଁ ହରାଇଲି ଜ୍ଞାନ।
ଜଳବେଣୀ ନୁହେଁ ମରୀଚିକା ସିଏ
  ଶୋଷ ମୋ ବଢ଼ିଲା ବେଶି ॥୧॥

ଅବାଟରେ ମୁଁ ତ ବାଟୋଇ ସାଜିଲି
ଭବ ଦୁଃଖ କଣ୍ଟା ପାଦେ ଗଲା ଗଳି।
ଆଗକୁ ପାରୁନି ଯାଇ ମହାପ୍ରଭୁ !
  ପଛକୁ ପାରୁନି ଆସି ॥୨॥

ତୁମକୁ ଭୁଲିଲି ଯେଣୁ ମହାବାହୁ,
ରାହୁ କଲା ଗ୍ରାସ ତେଣୁ ଚାହୁଁ ଚାହୁଁ।
ମୁଁ ବଣା ନାବିକ ସଂସାର ସାଗରେ
  ଅକୂଳେ ଯାଉଛି ଭାସି ॥୩॥

●●●

# ତୁମେ ବଡ଼ ଦାନୀ

ତୁମେ ବଡ଼ ଦାନୀ ଦୁନିଆଁ ଆଖିରେ
ମିଛେ ହରି ବୋଲାଉଛ,
ନେଲ ହରି ଯାହା ଦେଲ ହରି ତାହା
କୁହ ସତ କି ନା ମିଛ ? ||୦||

ବରଜ ନାଗରୀ ବାସ ଚୋରି କରି
ନେଲ ହେ ମୁରଲୀଧରା !
ଦ୍ରୁପଦ କୁମାରୀ ଦୁଃଖ ନେଲ ହରି
ଦେଇ ସେ ବସନ ପରା |
ବାସ ନେଲ ବାସ ଦେଲ ସତ କରି କହ ପ୍ରଭୁ
ଆଉ କି ବା ଅଧିକା ଦେଇଛ ||୧||

ବଳିଠାରୁ ନେଲ ଧନ ତୁମେ ମାଗି
ସୁଦାମାକୁ ଯାଚି ଦେଲ
ଦୁନିଆଁ ଗାଇଲା ତୁମରି ମହିମା
ତୁମେ କରୁଣା ସାଗର
ଧନ ନେଲ ଧନ ଦେଲ ସତ କରି କହ ପ୍ରଭୁ
ଆଉ କି ବା ଅଧିକା ଦେଇଛ ||୨||

# ମନବୀଣା ତାରେ

ମନ ବୀଣା ତାରେ ନୂଆ ଆଶାସୁର
ତୁମେ ତ ଦେଇଛ ଭରି,
ସବୁ ତୁମ ଦାନ ହେ ମହାମହିମ
କେହି ନାହିଁ ତୁମ ପରି ॥୦॥

ତୁମେ ଦେଖାଇଛ ଚେତନାର ପଥ
ଚାଲି ଶିଖାଇଛ ଧରି ମୋର ହାତ
ବିଷାଦର ବିଷ ଧୋଇତ ଦେଇଛ
ପ୍ରେମର ପୀୟୂଷ ଢାଳି ॥୧॥

ଜୀବନର ତୁମେ ଦିଗନ୍ତ ଦିଶାରୀ,
ଜୀବର ଜୀବନ ଅନ୍ଧର ଲଉଡ଼ି ।
ଅନ୍ତରେ ଅନ୍ତରେ ଦେଇଅଛ ଭରି
ତୁମେ ଆନନ୍ଦ ଲହରୀ ॥୨॥

ରାକା ରଜନୀରେ ବିମଳ ସୁଷମା,
ଅନନ୍ତ ଆକାଶେ ଶୋଭନ ନୀଳିମା ।
ମୃଦୁ ମଳୟରେ ମାଦକତା ପ୍ରଭୁ
ତୁମେ ତ ଦେଇଛ ଭରି ॥୩॥

●●●

# ତୁମେ ବିଶ୍ୱ ନୟନ କାରା

ତୁମେ ବିଶ୍ୱ-ନୟନ-କାରା,
ସଂସାର ସାଗରେ ବଣା ନାବିକର
ଭରସାର ଧ୍ରୁବତାରା ॥୦॥

ତୁମେ ତ ଅଦେଖା ହାତର ଇଙ୍ଗିତ
ତୁମେ ତ ବୀଣାର ଲଳିତ ସଙ୍ଗୀତ
କଳା କାରିଗରି ସବୁ ତ ତୁମରି,
ତୁମେ ତ ପୀୟୂଷ ଧାରା ॥୧॥

ମୁକୁଳରେ ତୁମେ ଆଶାର ବିଳାସ,
ନୀରବରେ ତୁମେ ଶୁଭ ଅଭିଳାଷ,
ଜଡ଼ରେ ପୁଲକ, ଅନ୍ଧାରେ ଆଲୋକ
ତୁମେ ଭରିଦିଅ ପରା ॥୨॥

ମାନବ ମାନସେ ଦେଇଛ ମମତା,
ଚରାଚର ଗାଏ ତୁମ ଯଶ ଗାଥା,
ତୁମେ ଲୀଳାନିଧି ତୁମରି ପ୍ରସିଦ୍ଧି
ଅସୀମ ଅନନ୍ତ ପରା ॥୩॥

●●●

## ପ୍ରଭୁ ନ ଚାହିଁଲେ

ପ୍ରଭୁ ନ ଚାହିଁଲେ ଅମୃତ ବିଷ,
ସେ ଜାଣନ୍ତି ଏକା ମରମ ବେଦନା
ସେ ଚାହିଁଲେ କାନ୍ଦ ପାଲଟେ ହସ ॥୦॥

ସବୁ ତାଙ୍କ ଇଛା ସିଏ ନିଜେ ଇଛାମୟ,
ଚରାଚର ନିରନ୍ତର ଗାଏ ତାଙ୍କ ଜୟ,
ସିଏ କର୍ତ୍ତା, ସିଏ କର୍ମ ଆଉ କିଏ ତାଙ୍କ ସମ ?
ସିଏ ଆଶା ସେ ଭରସା ସିଏ ପରମ ପୁରୁଷ ॥୧॥

ପ୍ରାଣରେ ଆନନ୍ଦ ଧାରା ତାଙ୍କରି କରୁଣା,
ମନର ଗହନେ ଝରେ ମମତା ଝରଣା,
ସିଏ କରୁଣା ସାଗର ନାହିଁ କଳନା ତାଙ୍କର
ଶତକଣ୍ଠେ ଗାଇଲେ ବି ସରିବନି ତାଙ୍କ ଗୁଣ ॥୨॥

୦୦୦

# ତୁମ ମହିମାର

ତୁମ ମହିମାର ତୁଳନା ନାହିଁ ତ
କାହିଁ ଏ ମରତ ଧାମେ,
ଆଉ କେହି ନାହିଁ ସରି ହେବା ପାଇଁ
ତୁମପରି ଏକା ତୁମେ ॥୦॥

ଅଖିଳ ମୋହନ ନିଖିଳ ନିଦାନ
ତୁମକୁ ବୁଝିବ କିଏ,
ଇଛାମୟ ତୁମେ ଇଛାରେ ତୁମର
ସବୁ ଏ ଜଗତେ ହୁଏ,
ଆଶାର ଶ୍ରାବଣ ବାରିଧାରା ତୁମେ
ପ୍ରଭୁ! ଏ ତପତଭୂମେ ॥୧॥

ତୁମେ ଜଗତର ଜଗତ ତୁମର
ଭିତରେ ବାହାରେ ତୁମେ,
ଆଲୋକ ତୁମର ଅନ୍ଧାର ତୁମର
ସବୁର ମାଲିକ ତୁମେ।
ଆଶିଷ ତୁମର ଫୁଲ ପରି ଫୁଟେ
ଜୀବନର ଉପବନେ ॥୨॥

❁❁❁

# ସତେ କି ଶୁଭ ଲଗନ

ସତେ କି ଶୁଭଲଗନ ଏ ଜୀବନେ ଆସିବ
ମନ କୁଞ୍ଜବନେ ପ୍ରଭୁ ତୁମ ବଂଶୀ ବାଜିବ ॥୦॥

ଫୁଟିବ କଦମ୍ବ କଢ଼ି, ମମତାର ମଧୁବାଢ଼ି,
ନିରାଶାର ବାସିଫୁଲ, ଯେତେସବୁ ଯିବ ଝଡ଼ି,
ଆନନ୍ଦେ ନାଚିବ ଚିତ୍ତ ସବୁ ଦୁଃଖ ହଜିବ ॥୧॥

ହୃଦୟ ଆକାଶେ ହସି, ଉଇଁବ ପୂର୍ଣ୍ଣିମା ଶଶି,
ପ୍ରଶାନ୍ତି ସୁଧା ବରଷି, ଭରିବ ପ୍ରାଣ କଳସୀ,
ମୋ ଜୀବନ ମୋ ସପନ ନୂଆ ସାଜେ ସାଜିବ ॥୨॥

ପ୍ରଭୁ ତୁମ ପ୍ରେମଧାରା, ହେବ ମୋ ରଙ୍କ ପସରା,
ମୋର ତୁଣ୍ଡେ ତୁମ ନାମ, ରହିଥିବ ଅବିରାମ,
ଅଗତିର ଗତି ପ୍ରଭୁ ମୋର ପ୍ରାଣ ବାନ୍ଧବ ॥୩॥

•••

# ମୋ ଜୀବନ

ମୋ ଜୀବନ ଗୋଧୂଳି ଲଗନରେ
ପ୍ରଭୁ ତୁମ ପ୍ରେମ ହୋଇ ପୂର୍ଣ୍ଣ ଶଶି
ବିରାଜିବ ପ୍ରାଚୀ ଗଗନରେ ।।୦।।
ହତାଶା ଅନ୍ଧାର ଯିବ ଅପସରି
ପଡ଼ିଲେ ଜୋଛନା ଆକାଶରୁ ଝରି
ଶାନ୍ତି ସୁଧା ଧାରା ବହିଯିବ ପରା
ମୋ ମନ ଗହନେ ଗୋପନରେ ।।୧।।

ନୂତନ ଚେତନା ନୂତନ ଭାବନା
ଆସିବ ପାଇଲେ ତୁମରି କରୁଣା
ତୁମେ ପରା ପ୍ରଭୁ ମୋ ରଥେ ସାରଥି
ସମର ଭୂଇଁରେ ମରମରେ ।।୨।।

ଜୀବନେ ଆସିବ ନୂଆ ଅନୁଭବ
ସରି କିବା ତାରେ ଅଳକା ବିଭବ
ନିରନ୍ତର ତୁମ ଛବି ବିମୋହନ
ନାଚୁଥିବ ମୋର ନୟନରେ ।।୩।।

●●●

# ଦୁଃଖହାରୀ ଆଉ କେବେ ?

ଦୁଃଖହାରୀ ଆଉ କେବେ ଦୁଃଖ ମୋର ହରିବ ?
ଜୁହାରି ଜୁହାରି ହରି ଦିନ ମୋର ସରିବ ॥୦॥

କରମ ଲିଖନ ବୋଲି ଯେବେ ତୁମେ କହିବ,
ଅକର୍ମ କର୍ମ ଦାୟକ ନାଆଁ କିଆଁ ବହିବ ?
ଆଉ କେହି ନାହିଁ ବୋଲି ତୁମକୁ ଗୁହାରି କଲି
ଝୁଲି ମୋ ରହିଲା ଖାଲି ଆଉ କିଏ ଭରିବ ? ॥୧॥

ହାତରେ ଶ୍ରୀଫଳ ନାହିଁ ତୁମକୁ ମୁଁ ଦେବି,
ସାଲବେଗ ଭାବ ନାହିଁ ଭଜନ ଗାଇବି,
ତୁମ ଚରଣେ ଶରଣ ନେଇଛି ହେ ନାରାୟଣ
ଶରଣ ରକ୍ଷଣ ପ୍ରଭୁ ଯାହା ଇଚ୍ଛା କରିବ ॥୨॥

# ଯାହା ମୋର ଅଛି

ଯାହା ମୋର ଅଛି ସବୁ ତୁମ ଦାନ
ନିମିତ୍ତ ମାତର ମୁହିଁ,
ତୁମ ଚରଣରେ ମନ ରହୁ ପ୍ରଭୁ !
ଦୟାକର ଭାବଗ୍ରାହୀ ॥୦॥

ଅକିଞ୍ଚନ ଜନେ କରିଛ କରୁଣା
କରିଅଛ ଚିର ଋଣୀ,
ଶୁଝିବି କିପରି ଅଶୁଝା ସେ ଋଣ
ପାରୁନାହିଁ ମୁହିଁ ଜାଣି ।
ବିତିଯାଉ ମୋର ଏ ସାରା ଜୀବନ
ତୁମ ନାମ ଗାଇ ଗାଇ ॥୧॥

ତୁମ ପାଇଁ ଫୁଟୁ ଭକତି କୁସୁମ
ମୋହର ହୃଦୟ ବନେ,
ଧାର ଧାର ଅଶ୍ରୁ ଝରି ପଡୁଥାଉ
ତୁମରି ମହିମା ଗାନେ ।
ତୁମେ ମୋର ରଥେ ସାରଥି ହୋଇବ
ଆରପୁରେ ଯିବା ପାଇଁ ॥୨॥

ମୋ ଅନ୍ଧଲଉଡ଼ି ମୋର ଆଶା ବାଡ଼ି
ଜୀବର ଜୀବନ ମୋର,
ଯୋଡ଼ିବେନି ପାଣି ମାଗୁଛି ମାଗୁଣି
ଦୋଷାଦୋଷ କ୍ଷମା କର ।
ନିଖିଳ ବିଶ୍ୱର ରାଜ ରାଜେଶ୍ୱର
ତୁମେ ମୋ ପରାଣ ସାଇଁ ॥୩॥

●●●

# ଦୀପ ହୋଇ ଯେବେ

ଦୀପ ହୋଇ ଯେବେ ନ ଜଳିବି ତେବେ
ଆଲୋକ ଦେବି ମୁଁ କାହୁଁ ?
ଧୂପ ହୋଇ ଯେବେ ନ ଜଳିବି ତେବେ
ସୁବାସ ଆସିବ କାହୁଁ ? ||୦||

ମେଘ ହୋଇ ଯେବେ ନ ଭାସିବି ନଭେ
ଘଡଘଡି ଘାତ ସହି
ମାଟି ପାଇଁ ପ୍ରଭୁ ଶୀତଳ ବାରି ମୁଁ
ପାରିବି କିପରି ଦେଇ ।
ପଙ୍କ ନହେଲେ ମୁଁ ପଙ୍କଜ କିପରି
ଫୁଟାଇବି ମୋର ଦେହୁ ? ||୧||

ବଣଫୁଲ ହୋଇ ନଫୁଟିବି ଯେବେ
ବରଷା ପବନ ସହି
ବନମାଳୀ ତୁମ ଗଳାମାଳି ହୋଇ
ମନ କି ପାରିବି ମୋହି ?
ବାଉଁଶ ନହେଲେ ବଇଁଶୀର ସୁର
ଆସିବ ମୋ ଦେହେ କାହୁଁ ? ||୨||

ଅହମିକା ମୋର ନଭାଙ୍ଗିବ ଯେବେ
ହେବି କି ତୁମ କାହାଳୀ ?
ଘଣ୍ଟିଏ ହୋଇ ଆଘାତ ନପାଇ
ବାଜିବି କହ କିପରି ?
କଣ୍ଟା ଫରୁଆରେ କାଇଁଚ ନହେଲେ
ତୁମ ମାଳା ହେବି କାହୁଁ ? ||୩||

●●●

# ମୋହନ ମୁରଲୀ

ମୋହନ ମୁରଲୀ ବାଜେ ମନକୁଞ୍ଜେ
ଦିବାନିଶି ଅବିରାମ,
ଶୁଣିବାକୁ କାନ ଦିଅ ମହାପ୍ରଭୁ
ସୁଧା ଭରା ସେଇ ଗାନ ॥୦॥

ଫୁଟୁ ମୋର ଦେହ କଦମ୍ବ ବନରେ
କେତେ କେତେ ଫୁଲ କଢ଼ି,
ଆନନ୍ଦ ସୁନୀଳ ଯମୁନା ଜଳରେ
ତା ପରାଗ ପଡୁ ଝଡ଼ି,
କୁସୁମିତ ହେଉ ଜୀବନ ସରଣୀ।
ସୁଲଳିତ ଅନୁପମ ॥୧॥

ପ୍ରୀତିର ପବନ ପରଶେ ଶୀତଳ
ହେଉ ପ୍ରାଣର ସରସୀ,
ମାଦକତା ଭରା ଭ୍ରମର ଗୁଞ୍ଜନ
ବିଞ୍ଚୁ ଦେଉ ଭାବ ରାଶି,
ଧନ୍ୟ ହେଉ ମୋର ମାନବ ଜନମ
ଅଭିଳାଷ ହେଉ ପୂର୍ଣ୍ଣ ॥୨॥

•••

# ପ୍ରଭୁ ଯା'ର ବିରାଜିତ

ପ୍ରଭା ଯାର ବିରାଜିତ ଏ ସାରା ବିଶ୍ୱେ,
କି ଭାଷାରେ ରୂପଦେବ ତାକୁ କିଏ ସେ ॥୦॥

ଜୀବନର ପ୍ରିୟତମ ଅନୁରାଗେ ଅନୁପମ
ମନ କଳସୀରେ ସିଏ ମଧୁ ବରଷେ ॥୧॥

ଅନ୍ତରର ସିଂହାସନେ ବିଜେ ସେ ରାଜସମ୍ମାନେ
ଅମଉଳା ଫୁଲ ସିଏ ମଧୁରେ ବାସେ ॥୨॥

ସବୁକିଛି ତାର ଲୀଳା ଭକତର ଭାବେ ଭୋଳା
ଯାହାକିଛି ଘଟେ ସବୁ ତାର ଆଦେଶେ ॥୩॥

ଆନନ୍ଦର ଅବତାର ମମତାର ପାରାବାର
ତା ମହିମା ବୀଣା ବାଜେ ଗଗନ ଦେଶେ ॥୪॥

●●●

# ତୁମେ ମୋର ପ୍ରାଣପ୍ରଭୁ

ତୁମେ ମୋର ପ୍ରାଣପ୍ରଭୁ ଥରେ ଦିଅ ଦେଖା,
ମୋ ଅନ୍ଧାର ଆକାଶରେ ଆସୁ ଇନ୍ଦୁରେଖା ॥୦॥

ଚରାଚରେ ଅଛ ତୁମେ ଶୁଣିଛି ମୁଁ କାନେ,
ତୁମ କଥା ବସିବସି ଭାବିଛି ମୁଁ ମନେ,
ତୁମରି କରୁଣା ବିନା ନାହିଁ ତୁମ ଦେଖା ॥୧॥

ତୁମେ ଘୁଞ୍ଚି ଯାଇନାହଁ ଆସିଛି ମୁଁ ଘୁଞ୍ଚି,
ସଂସାର ଜଞ୍ଜାଳ ଜଳେ ବୁଡ଼ି ମୁଁ ଯାଉଛି,
ଅଧମେ ଉଦ୍ଧାର କର, ଦୀନଜନ ସଖା ॥୨॥

ତୁମେ ଦୟା କଲେ ହେବି ତୁମ ପ୍ରେମେ ପ୍ରେମୀ,
ଦୋଷ ମୋର କ୍ଷମା କର ମୋ ଜୀବନ ସ୍ୱାମୀ,
ତୁମ ନାମ ତୁଣ୍ଡେ ଥାଉ, ଦିଅ ପ୍ରେମ ଦୀକ୍ଷା ॥୩॥

ମୋର ଯାହା ଅଛି ପ୍ରଭୁ ସବୁ ତୁମ ଦାନ,
ତୁମର ଏ ଦେହ, ମନ, ତୁମର ଜୀବନ,
ଚରଣେ ଦିଅ ଶରଣ, ଏଇ ଶେଷ ଭିକ୍ଷା ॥୪॥

●●●

# ବାଟ ଚାହିଁଚାହିଁ

ବାଟ ଚାହିଁ ଚାହିଁ ଦିନ ଗଲା ବିତି
ତୁମ ଦରଶନ ନାହିଁ,
ସାନ ବୋଲି ଯଦି ହୀନିମାନ କଲ
ବଡ଼ ପଣ ତୁମ କାହିଁ ? ||୦||

ବାସି ହେଲା ମୋର ସୁବାସ ଚନ୍ଦନ
ଜଳି ଜଳି ଯାଏ ଧୂପ,
ଫୁଲହାର ଯାଏ ମଉଳି ମଉଳି
ଲିଭିଲିଭି ଆସେ ଦୀପ
ସତେ କିବା ପ୍ରଭୁ କଲ ସାତପର
କିବା ଦୋଷ କଲି ମୁହିଁ। ||୧||

ମନେ ଭାବିଥିଲି ତୁମ ପାଦତଳେ
ନିଜକୁ ଅରପି ଦେଇ,
ପାଇବି ବୋଲି ମୁଁ ସରଗର ସୁଖ
ମହିମା ତୁମର ଗାଇ।
ଆଶା ମୋର ପ୍ରଭୁ ରହିଗଲା ସବୁ
ଆକାଶ କୁସୁମ ହୋଇ। ||୨||

•••

# କି ଦେବି ତୁମକୁ

କି ଦେବି ତୁମକୁ ପ୍ରଭୁ ମୁଁ ଯେ ଅକିଞ୍ଚନ,
ତୁମ ଫୁଲ, ତୁମ ଧୂପ, ତୁମରି ଚନ୍ଦନ। ॥୦॥

ଅନାଦି ଅନନ୍ତ ପ୍ରଭୁ ନିରାକାର ହରି,
ସଗୁଣ ନିର୍ଗୁଣ ପୁଣି ଚକ୍ରୀ ଚକ୍ରଧାରୀ,
ଅଖିଳ ଆକାଶେ ତୁମେ ପୂର୍ଣ୍ଣିମାର ଜହ୍ନ ॥୧॥

ତୁମ ମୁରଲୀ ବାଜୁଛି ଭୁବନେ ଭୁବନେ,
ତୁମ ରୂପ ବିରାଜୁଛି ଗଗନେ ପବନେ,
ହେ ସତ୍ୟ ଶିବ ସୁନ୍ଦର ! ନିଅ ମୋ ପ୍ରଣାମ ॥୨॥

ତୁମେତ ମହାସାଗର ମୁହିଁ ଜଳଧାରା,
ତୁମେ ଅନନ୍ତ ଆକାଶ ମୁହିଁ ମେଘମାଳା,
ତୁମ ଚରଣରେ ରହୁ ମନ ନିଶିଦିନ। ॥୩॥

●●●

# ଆଖି ଯାହା ଦେଖେ

ଆଖି ଯାହା ଦେଖେ ସବୁ ତ ତୁମର
ସବୁଠାରେ ତୁମ ବାସ,
ତୁମରି ଆଦେଶ ନହେଲେ ହେ ପ୍ରଭୁ
ହଲେ ନାହିଁ ଦୂବଘାସ । ।।୦।।

ସାଗରରେ ନାଚେ ମାଳ ମାଳ ବୀଚି,
ଉଷାଲୋକେ ଯାଏ ଘୋର ତମ ଘୁଞ୍ଚି
ତୁମରି ମହିମା, ନାହିଁ ତାର ସୀମା
କଥାରେ ନହେବ ଶେଷ । ।।୧।।

ଭାବକୁ ନିକଟ ଅଭାବକୁ ଦୂର,
ଅଖିଳ ଭୁବନ ରାଜ ରାଜେଶ୍ୱର,
ତୁମକୁ ଖୋଜିବି ଦିଅ ମତେ ଭାବ
ଆନନ୍ଦେ ନିଶି ଦିବସ । ।।୨।।

ଅଭାବରେ ମାତା ବିପଦରେ ବନ୍ଧୁ
ତୁମରି ତୁଳନା ତୁମେ କୃପାସିନ୍ଧୁ
ମନ ମୋର ରହୁ ତୁମ ପାଦ ତଳେ
ଏତିକି ମୋ ଅଭିଳାଷ । ।।୩।।

•••

# ତୁମ ରୂପ ମୋର

ତୁମ ରୂପ ମୋର ନୟନେ ନାଚିବ
ଯେଣିକି ଚାହିଁଲେ ତେଣେ
ମନ ଗହନର ମୋହନ ମୁରଲୀ
ଶୁଭୁଥିବ ମୋର କାନେ । ।।୦।।

ତୁମ ଲୀଳା ପ୍ରଭୁ ଚରାଚରେ ସବୁ
କିଏ ତା ପାରିବ ଜାଣି,
ତୁମରି ଇଛାରେ ସବୁ କିଛି ହୁଏ
ତୁମେ ତ ପରଶମଣି
ମୋର ଯାହା ଅଛି ଅରପିବି ସବୁ
ପ୍ରଭୁ ତୁମରି ଚରଣେ ।।୧।।

ଝରି ଯାଉଥିବ ନୟନରୁ ନୀର
ତୁମ ଯଶ ଗୀତି ଗାଇ,
ଭରି ଯାଉଥିବ ଦେହରେ ରୋମାଞ୍ଚ
ଭାବି ତୁମ କଥା ସାଇଁ ।
ତୁମେ ହେବ ମୋର ରଥର ସାରଥି
ଜୀବନର ରଣଭୂମେ । ।।୨।।

# ସାତରଙ୍ଗ କମଳରେ

ସାତରଙ୍ଗ କମଳରେ ପୂର୍ଣ୍ଣ ମନ ସରସୀ,
ତୁମେ ତ ଆସିବ ପ୍ରଭୁ ତହିଁ ମଧୁ ବରଷି । ।।୦।।

ଅରୁଣ କିରଣେ ପରା ନୂଆ ଉଷା ଆସିବ,
ନିରାଶାରେ ଆଶା ଆସି ହସି ମତେ ତୋଷିବ,
କଣ୍ଟକିତ ପଥେ ଯିବ ସଜ ଫୁଲ ବରଷି । ।।୧।।

ଆଖି ଥିବ ଏକଲୟେ ଚାହିଁ ତୁମ ସୁଷମା,
ଭାଷାରୁ ଅତୀତ ଯାହା ନାହିଁ ତାର ଉପମା,
ତୁମରି କରୁଣା ଦେବ ସଂଜୀବନୀ ପରଶି । ।।୨।।

ଧନ୍ୟ ହେବ ମୋ ଜୀବନ ପୁଣ୍ୟ ବୀଣା ଝଙ୍କାରେ
ଶୂନ୍ୟଥାଳ ଭରିଯିବ ହୀରାନୀଳା ଆଭାରେ,
ମୋ ହୃଦୟେ ବାଜୁଥିବ ପ୍ରଭୁ ତୁମ ବଇଁଶୀ । ।।୩।।

***

# ଜୀବନ ବୀଣାର ତାରେ

ଜୀବନ ବୀଣାର ତାରେ
ତୁମେ ମଧୁ ମୂର୍ଚ୍ଛନା,
ପରାଣ ବସନ୍ତ କୁଞ୍ଜେ
ସଉରଭ ସୁଷମା ॥୦॥

ଆଶାର ଅରୁଣ ଲେଖା
ତୁମେ ପ୍ରାଚୀ ଗଗନେ,
ଆନନ୍ଦର ଚଇତାଳି
ତୁମେ ଶୁଭ ଲଗନେ,
ସ୍ମିତହାସେ ମଧୁରିମା
ସୁଧାରେଖା ରଚନା ॥୧॥

ମଧୁର ଭାଷାର ତୁମେ
ମୃଦୁ ଧ୍ୱନି ସଞ୍ଚାର
ପ୍ରଶାନ୍ତିର ପଦ୍ମବନେ
ପ୍ରୀତିଅଳି ଝଙ୍କାର ।
ହୃଦୟ ନୀଳ ଆକାଶେ
ସୁଧାଝରା ଜୋଛନା । ॥୨॥

●●●

# ଶାନ୍ତ ବିଜନବେଳା

(ତୁମେ) ଶାନ୍ତ ବିଜନ ବେଳାବୁକେ ପରା
ଝଲମଲ ଜହ୍ନରାତି
(ତୁମେ) ଉଷାର ଅରୁଣ କିରଣ କୁଞ୍ଜରେ
ସଞ୍ଚରିତ ଶୁଭକାନ୍ତି ।।୦।।

ତୁମ ବାହୁ ଛାଇ ନାହିଁ କରେ ନାହିଁ
କାହାକୁ ମରତ ଭୂମେ
ସାହାହେବା ପାଇଁ ଆଉ କେହି ନାହିଁ
ତୁମ ପରି ଏକା ତୁମେ ।
ଅଭାବରେ ମାତା ବିପଦରେ ବନ୍ଧୁ
ଜୀବନେ ମରଣେ ସାଥି ।।୧।।

ସବୁ ନାଟକରେ ଅଭିନେତା ତୁମେ
ତୁମେ ପୁଣି ଅଭିନୟ,
ତୁମେ ତ ସାଧକ ତୁମେ ତ ସାଧନା
ତୁମେ ଜୟ ପରାଜୟ ।
ଭକତ ମାନସ ଗହନ ବନରେ
ତୁମେ ତ ମୁରଲୀ ଗୀତି ।।୨।।

# ପୂଜାଫୁଲ

ପୂଜା ଫୁଲ ଗଲା ମଉଳି ମଉଳି
ଦୀପ ଗଲା ଜଳି ଜଳି
ଡାକି ଡାକି କଣ୍ଠ ଶୁଖିଗଲା ମୋର
ଧୂପ ଗଲା ଝରି ଝରି
ତୁମ୍ଭ ଦରଶନ ନାହିଁ
ବେଳ ଗଲା ଚାହିଁ ଚାହିଁ । ॥୦॥

ଭୁଲାଇ ଦେଲ କି ସାନ ବୋଲି ମତେ,
ଅବହେଳା କଲ ହୀନ ବୋଲି ଏତେ
ମୁଁ କି ନୁହେଁ ତୁମ୍ଭ ଜଗତରେ
ଜଣେ ତୁମେ ଯେ ଜଗତ ସାଇଁ । ॥୧॥

ମୋପରି ଅଧମ ଜନରେ ମମତା
ଢାଳିଥିଲେ ବଡ଼ପଣ ବଢ଼ିଥାନ୍ତା
ତୁମ୍ଭ ଯଶବାନା ଉଡ଼ିଥାନ୍ତା
ପ୍ରଭୁ ନୀଳ ଗଗନକୁ ଛୁଇଁ । ॥୨॥

•••

# କର୍ମଫଳ ଯେବେ

କର୍ମଫଳ ଯେବେ ଭୋଗିବାକୁ ହେବ
ତୁମକୁ ଡାକିବି କିଆଁ ?
ତୁମକୁ ଡାକିଲେ କର୍ମଫଳ ପରା
ଊଣାହୁଏ ଚଉବାହା । ॥୦॥

ଅବାଟରେ ତୁମେ ବାଟ କରିଦିଅ,
ଅଭାବରେ ତୁମେ ଭାବ ଭରିଦିଅ,
ସୁଦର୍ଶନ ଚକ୍ର ହେଲା କିବା ବକ୍ର
ମୋ ବେଳକୁ ଲକ୍ଷ୍ମୀନାହା । ॥୧॥

ଦାରୁଣ ଦୁଃଖରେ ହେଲି କଲବଲ,
ଦୁଃଖହାରୀ ହୋଇ ଦୁଃଖ ନ ହରିଲ,
ଛଟପଟ ହୋଇ ବାଟ ମୁଁ ଭୁଲିଲି
ହଟହଟା ହେଲି ଆହା । ॥୨॥

# ଆଖି ଦେଖୁଥିବ

ଆଖି ଦେଖୁଥିବ ତୁମ ରୂପ ଶୋଭା
କାନ ଶୁଣୁଥିବ ଗୀତ,
ହାତ କରୁଥିବ ତୁମ ସେବା କାମ
ପାଦ ଚାଲୁଥିବ ତୀର୍ଥ । ।।୦।।

ଚିତ୍ତ କହୁଥିବ ବିତ୍ତ ଲୋଡ଼ା ନାହିଁ
ଲୋଡ଼ା ନାହିଁ ଯଶମାନ,
ତୁଣ୍ଡ ଚାହୁଁଥିବ ଆନ କଥା ଛାଡ଼ି
ଗାଇବାକୁ ତୁମ ନାମ ।
ମୋହର ହୃଦୟ ସିଂହାସନେ ତୁମେ
ବସିଥିବ ପ୍ରାଣନାଥ । ।।୧।।

ତୁମ ଅଙ୍ଗବାସ ଆନନ୍ଦ ଉଲ୍ଲାସ
ଭରିଦେବ ପ୍ରାଣେ ମୋର,
ନାସା ଚାହୁଁଥିବ ଦିବାନିଶି ଆହା
ସେ ସୁବାସ ପରିମଳ ।
ତୁମରି ପ୍ରେମରେ ପ୍ରେମୀ କର ମୋତେ
ପୂରୁ ମୋର ମନୋରଥ । ।।୨।।

•••

# ନିଖିଳ ନିଦାନ

ନିଖିଳ ନିଦାନ ପ୍ରଭୁ ଭଗବାନ
ଚରାଚର ବନ୍ଦନୀୟ
ସୁନ୍ଦର ତମେ ହେ ଚିର ସୁନ୍ଦର !
ପ୍ରେମର ପ୍ରଣତି ନିଅ । ॥୦॥

କଳକଳ ନାଦେ ନଈ ଯାଏ ବହି,
ତୁମରି ମହିମା ମୁଖେ ଗାଇ ଗାଇ,
ସାଗର ଲହରୀ ଗରଜନେ ବାଜେ
ତୁମ ଶୁଭଶଙ୍ଖ ପ୍ରିୟ ॥୧॥

ବନ ଉପବନେ ସଜଫୁଟା ଫୁଲ,
ଫୁଟି ଗାଏ ତୁମ ମହିମା ଅପାର,
ଭ୍ରମର ଗୁଞ୍ଜନ କିବା ବୀଣାତାନ
ଗାଏ ତୁମ ଜୟ ଜୟ । ॥୨॥

ସବୁଠାରେ ତୁମେ ସବୁ ତୁମ ଲୀଳା,
ଦିଗେ ଦିଗେ ତୁମ କରୁଣାର ଧାରା,
ସେ କରୁଣା ସୁଧା ପରଶେ ଜୀବନ
ହେଉ ମୋର ମଧୁମୟ । ॥୩॥

# ସବୁ କିଛି ଦେଲ ମତେ

ସବୁ କିଛି ଦେଲ ମତେ ତୁମେ ମହାବାହୁ
କିଛି ଦେଲ ନାହିଁ ବୋଲି କହିବି କି ଆଉ ।୦।

ତୁମେ ଫୁଟାଇଛ ଫୁଲ
ତୁମକୁ ପୂଜିବି
ଆଶାର ଆଲୋକ ଦେଲ
ତୁମକୁ ଖୋଜିବି
କାହିଁ କାହାକୁ ଲୋଡ଼ିବି ତୁମେ ଥାଉ ଥାଉ ? ॥୧॥

ଦେଇଛ ଶକତି ତୁମ
ନାମକୁ ଭଜିବି
ପ୍ରାଣରେ ପୁଲକ ଦେଲ
ପ୍ରେମରେ ମଜ୍ଜିବି
ତୁମେ ମୋର ମୁଁ ତୁମର ଆହେ ମହାବାହୁ । ॥୨॥

ସକଳ ସମ୍ପଦ ପୁଣି
ଗଉରବ, ମାନ
ସବୁ ତୁମ ଦାନ ପ୍ରଭୁ
ହେ ମହାମହିମ,
ମୋ ଜୀବନ ତୁମ ପୂଜା ପାଇଁ ଧୂପ ହେଉ । ॥୩॥

●●●

# ପରମ ପୁରୁଷ

ପରମ ପୁରୁଷ ହେ ନିରଞ୍ଜନ,
ତୁମେ ପ୍ରଭୁ ସନ୍ତାପିତ ହୃଦୟ ଚନ୍ଦନ। ॥୦॥

ତୁମେ ବିରାଜିତ ପ୍ରଭୁ ସସାଗରା ଧରାରେ,
ଆକାଶେ ବତାସେ ପୁଣି ସୂର୍ଯ୍ୟ ଚନ୍ଦ୍ର ତାରାରେ,
ତୁମ ବିନା କିଛି ନାହିଁ ନିଖିଳ ନିଦାନ। ॥୧॥

ଚରାଚର ଗାଏ ତୁମର ମହିମା ଅପାର,
ମୁଁ କିବା ବୁଝିବି ପ୍ରଭୁ କ୍ଷୁଦ୍ର ବୁଦ୍ଧି ନର,
କରୁଣା ସାଗର ତୁମେ ବିପଦ ଭଂଜନ। ॥୨॥

ଯାହା ମୋର ଅଛି ପ୍ରଭୁ ସବୁ ତୁମ ଦାନ,
ଜୀବନ ବୀଣାରେ ତୁମେ ମୂର୍ଚ୍ଛନା ମୋହନ,
ଅହଂକାର କର ଦୂର ସତ୍ୟ ସନାତନ। ॥୩॥

ପ୍ରାଣରେ ପୁଲକ ଦିଅ, ତୁଣ୍ଡେ ତୁମ ନାମ,
ଜୀବନରେ ଦିଅ ଭରି ପ୍ରଭୁ ତୁମ ପ୍ରେମ,
ତୁମ ଯଶ ଗୀତି ଗାଇ ଯାଉ ଏ ଜୀବନ ॥୪॥

●●●

# ତୁମେ ଆଶାର ଅମୃତ ଧାରା

ତୁମେ ଆଶାର ଅମୃତ ଧାରା
ଭାଷା ନାହିଁ ତୁମ ଗୁଣ ଗାଇବାକୁ
ଭାବକୁ ନିକଟ ପରା ॥୦॥

ଲୋଭୀ ହୋଇନାହିଁ ମୋ ନୟନ ଦୁଇ
କେବେ ତୁମ ରୂପ ଦେଖିବା ପାଇଁ
ଲୋଡ଼ି ନାହିଁ କାନ ଶୁଣିବା ପାଇଁ କି
ତୁମରି ମହିମା ଜଗତ ସାଇଁ ।
ସୁଖ ବେଳେ ଭୁଲି ଦୁଃଖେ ଡାକେ ବୋଲି
କ୍ଷମାକର ଏଇ ଅଧମେ ପରା ॥୧॥

ହେବିନି ନିରାଶ ଏଇ ମୋ ବିଶ୍ୱାସ
ରଖିଛି ମନରେ ଅଖିଳ ସାଇଁ,
ପତିତ ପାବନ ବାନା ଉଡ଼ାଉଛ
ମୋ ପରି ପତିତେ ତାରିବା ପାଇଁ ।
ଏ ଭବ ଦୁଃଖରୁ ପାରିକର ମୋତେ
ଅଧମେ ବରଷି କରୁଣା ଧାରା । ॥୨॥

❀❀❀

# ଦାରୁଣ ଦୁଃଖରୁ

ଦାରୁଣ ଦୁଃଖରୁ ସତେ କିବା ପ୍ରଭୁ
କରିବ ନାହିଁ ଉଦ୍ଧାର,
ତୁମେ ଇଚ୍ଛା କଲେ ତୁମ ପାଇଁ ପ୍ରଭୁ
ଏହା କେତେକ ମାତର । ।।୦।।

ଦୂବ କର ଦାରୁ ତୁମେ ମେରୁ ଗିରି ଫୁଲ,
ଅକର୍ମ କର୍ମଦାୟକ କିଏ ତୁମ ତୁଲ,
ଅନ୍ଧାର ପଥରେ ତୁମେ ଆଲୋକ ମିନାର । ।।୧।

ଗଙ୍ଗା କୂଳେ ବସି ମୁହିଁ ହେଲି ଚିର ଶୋଷୀ,
କଳ୍ପବୃକ୍ଷେ ମୂଳେ ବସି ସଦା ଉପବାସୀ,
ଏ କଥା କି ଶୋଭା ପାଏ ବ୍ରହ୍ମାଣ୍ଡ ଠାକୁର । ।।୨।।

ଦୁଃଖହାରୀ ହୋଇ ଯେବେ ଦୁଃଖ ନ ହରିବ
କା’ ଆଗେ ଗୁହାରି ଆଉ ଏ ଅଧମ କରିବ,
ଦିନନାଥ ଥାଉ କିବା ଘୋଟିବ ଅନ୍ଧାର । ।।୩।।

•••

# ହରିନାମ କେଡ଼େ ମଧୁର

ହରି ନାମ କେଡ଼େ ମଧୁର
କିଣି ହୁଏ ମନ ତା ଶୁଣୁ ଶୁଣୁ ॥୦॥
ହରି ନାମ ସୁଧା ସାଗର
ଲହରୀ ତା ପ୍ରୀତି ମଧୁର
ମନ ବେଳାଭୂମି ଛୁଇଁ ଛୁଇଁ ଯାଏ
ସିଏ ତ ବଜାଇ ମୋହନ ବେଣୁ । ॥୧॥

ଅନୁପମ ସ୍ୱାଦ ମାଧୁରୀ,
ନାମେ ପରା ରହିଛି ପୂରି,
ସରଗର ସୁଧା ପରଶି ବସୁଧା
ଝରାଇ ଦିଏ ସେ ଆନନ୍ଦ ରେଣୁ । ॥୨॥

ଅବସାଦ, ତାପମୋଚନ,
ହରିନାମ ଚାରୁ ଚନ୍ଦନ,
ପୁଲକିତ ହୁଏ ପରାଣ ପସରା
ଶତ ଶିହରଣେ ପୂରଇ ତନୁ । ॥୩॥

ସିଏ ଗତି, ମୁକତି ରାହା
ସରି କିଏ ତା ସାଥେ ଆହା,
ଜୀବନେ ମରଣେ ଭକତର ସାଥି
ଆଉ କେହି ନାହିଁ, ନାହିଁ ତା ବିନୁ । ॥୪॥

●●●

# ନିରାଶାରେ ଆଶା

ନିରାଶାରେ ଆଶା ଝଲକ ହୋଇ
ମଣିଷ ମନର ବେଦନାକୁ ଦୂର
ତୁମେ କରିପାର ମାଆ ମମତାମୟୀ । ॥୦॥

କପାଳ ଲିଖନ ହୋଇଯାଏ ଆନ
ଯଦି ହୁଏ ମାଆ ତୁମ କରୁଣା,
ଦୁଃଖ ମରୁବାଲି ବୁକୁ ଚିରି ମା' ଗୋ
ଝରି ଝରି ଯାଏ ସୁଖ ଝରଣା ।
ତୁମରି ଆଦେଶ ନ ହେଲେ ମାଆଗୋ
ଘାସ ଫୁଲଟିଏ କାହିଁ ଫୁଟଇ ନାହିଁ । ॥୧॥

ଦିବ୍ୟ ଚେତନାର ମୂର୍ତ୍ତିମତୀ ତୁମେ
ତୁମରି ତୁଳନା ନାହିଁ ତ ନାହିଁ,
ଶକ୍ତିମୟୀ ଦେବୀ ଶାନ୍ତି ପ୍ରଦାୟିନୀ
ସତ୍ୟମୟୀ ତୁମେ କଲ୍ୟାଣମୟୀ ।
ଆନନ୍ଦମୟି ମା' ! କର ଦୋଷ କ୍ଷମା,
ଏତିକି ମାଗୁଣି ଆଜି ମାଗୁଛି ମୁହିଁ । ॥୨॥

●●●

# ମତେ ଦେ' ତୋର

ମତେ ଦେ' ତୋର ଚରଣର ଧୂଳି
ଦେହେ ହେବି ମୋର ବୋଲି,
ଦୁନିଆ ଦାଣ୍ଡରେ ତୋ ନାମ ଗାଇବି
ଆନନ୍ଦରେ ମାରି ତାଳି । ॥୦॥

ଜୀବନରେ ଅଛି ଯେତେ ଦୁଃଖ ମୋର,
ହେଲେ ତୋ କରୁଣା ହେବ ସବୁ ଦୂର,
ଗାନ କରୁଥିବି ମହିମା ତୋହରି,
ମନରେ ଆନନ୍ଦ ଭରି । ॥୧॥

ଆଲୋକେ ଅନ୍ଧାରେ ଦିଗ ବିଦିଗରେ,
ଦେଖୁଥିବି ତୋତେ ମୋ ନେତ୍ର ପଥରେ,
କରୁଣା ତୋହର ମୋ ଜୀବନ ପାତ୍ରେ,
ଦେବ ଛଣା ସୁଧା ଢାଳି । ॥୨॥

ତୋ'ପାଦ ଶୋଭାରେ ସଜଫୁଟାଫୁଲ
ମଉଳି ଝରିବ ନୋହି ସମତୁଲ,
ନଖକାନ୍ତି ତୋର ଆହାକି ସୁନ୍ଦର,
ଆଲୋକର ଫୁଲଝରି । ॥୩॥

ଆଶା ଭରସାର ସକଳ ସଂପଦ,
ଧରି ରଖିଅଛି ତୋର ଦୁଇପାଦ,
ତୋର ନାମ ଥାଉ ମୋର ତୁଣ୍ଡେ ସଦା,
ଏତିକି ତୋ ପାଦେ ଅଳି । ॥୪॥

●●●

# ଏତିକି ପ୍ରାର୍ଥନା

ତୁମରି ରୂପକୁ ନିରେଖି ଦେଖିବି
ଗାଉଥିବି ତୁମଗୀତ
ପାଦ ଚାଲୁଥିବ ତୁମ ପଥେ ପ୍ରଭୁ
ସେଇ ହେବ ମୋର ତୀର୍ଥ ॥୦॥

ଆସୁଥିବ ଧୀର ମଳୟସମୀର
ବାସୁଥିବ ମିଠାମିଠା
ସେ ବାସରେ ଥିବ ତୁମ ଅଙ୍ଗବାସ
ମଧୁରତା ମାଦକତା
ଆସିବ ମୋ ଦେହେ ଶତଶିହରଣ, ଚିତ୍ତପ୍ରୀତି ପୁଲକିତ ।୧।

ଧନଜନ ମାନ ଯଶ ଗଉରବ
ସବୁ ଦେବି ତୁମପାଦେ
ମୋ ଆଖିର ଲୁହ ତୁମ ଚରଣରେ
ଢାଳି ଦେବି ଅପ୍ରମାଦେ
ପାଇବି ତୁମକୁ ବାହାରେ ଭିତରେ ସପନ ହେବ ମୋ ସତ ।୨।

ତୁମ ହାତ ଧରି ବାଟ ଚାଲୁଥିବି
ଜୀବନ ଚଲାପଥେ
ଆରପାରେ ହୋଇ ଆଲୋକର ରେଖା
ବାଟ ଦେଖାଇବ ମତେ
ତୁମରି ଚରଣେ ଏତିକି ମାଗୁଣି, ମାଗେ କରି ପ୍ରଣିପାତ ।୩।

●●●

# ଦିନୁ ଦିନ ଜଳିଯାଏ

ଦିନୁ ଦିନ ଜଳିଯାଏ ଜୀବନର ସଳିତା
ତୁମ ପାଇଁ ହେଲା ନାହିଁ ସିଏ ସଞ୍ଜ ସଳିତା । ।।୦।

ଭକତି ପ୍ରଦୀପ ନାହିଁ ଜଳାଇ ରଖିବା ପାଇଁ
ମନରେ ମୋ ଭାବ ନାହିଁ ତୁମକୁ ଭଜିବା ପାଇଁ
ହାହାକାର କରି କରି ଅନ୍ତରେ ନିରାଶା ଭରି
ଭିଜିଯାଏ ମୋର ଆଖି ପତା । ।।୧।।

ଦିନ ଯାଇ ହେଲା ରାତି ରାତି ହୋଇଲା ପାହାନ୍ତି
ମୋ ଅନ୍ତରେ ତୁମ ବୀଣା ନ ବାଜିଲା ମନ କିଣା
ମୋହମାୟା ଇନ୍ଦ୍ରଜାଲେ ମନ ହୋଇଗଲା ବାନ୍ଧି
ଭୁଲିଗଲି ପ୍ରଭୁ ତୁମ କଥା । ।।୨।।

ମୁଁ ଯେ ହୀନ ଅକିଞ୍ଚନ ତୁମେ ପତିତତାରଣ
ଦିଅ ତୁମରି କରୁଣା ଅବସାଦ ହେଉ ଊଣା
ତୁମ ପାଦେ ରହୁ ମନ ଦିବାନିଶି ଅବିରାମ
କର ଦୟା ହେ ବିଶ୍ୱକରତା । ।।୩।।

•••

# ତୁମ କରୁଣାର

ତୁମ କରୁଣାରଧାରା ଝରିଯାଏ
ଏ ସାରା ଅଖିଳ ଧାମେ,
ତୁମେ ଏ ବିଶ୍ୱର ରାଜ ରାଜେଶ୍ୱର
ତୁମର ତୁଳନା ତୁମେ । ॥୦॥

ତୁମ ହସ ଫୁଟେ ଫୁଲ ହୋଇ ନିତି,
ଚରାଚରେ ରାଜେ ତୁମ ରୂପକାନ୍ତି,
ଆଶାର ଅରୁଣ କିରଣର ଛଟା ବିରାଜିତ ତୁମ ନାମେ । ॥୧॥

କ୍ଷମାର ସାଗର ହେ ମହା ମହିମ !
ବିଶ୍ୱଜନ ସଖା ଗୁରୁ ଗରୀୟାନ,
ତୁମେ ଆନନ୍ଦର ଶୁଭ ଅନୁଭବ ମନ କୋଣେ ଅନୁକୋଣେ । ॥୨॥

# ତୁମ ପାଦ କମଳରେ

ତୁମ ପାଦ କମଳରେ ରହୁ ମୋର ମନ
ତୁମେ ପିତା ତୁମେ ମାତା ଗୁରୁ ଗରୀୟାନ ॥୦॥

ଆଲୋକରେ ଅନ୍ଧାରରେ ଜୀବନ ଚଲାପଥରେ
ପ୍ରଭୁ ତୁମେ ଦିଗନ୍ତ ଦିଶାରୀ,
ହେ ଚିର ମଙ୍ଗଳମୟ ଦିଅ ବାରେ ବରାଭୟ
ଏ ଭବ ସାଗରୁ କର ପାରି ।
ମୋ ହୃଦୟ ବୃନ୍ଦାବନେ ଲଳିତ ମଧୁର ତାନେ
ବାଜୁ ତୁମ ମୁରଲୀ ମୋହନ । ॥୧॥

ତୁମେ ଜୀବନର ମୂଳ ତୁମେ ଆଶାର ମିନାର
ବିପଦରେ ସାନ୍ତ୍ୱନାର ଭାଷା,
ତାପିତ ହୃଦ ଚନ୍ଦନ ଦରିଦ୍ର ଗଳା ରତନ
ଜଡ଼ତା ଅନ୍ଧାରେ ତୁମେ ଉଷା ।
ତୁମ ଚିନ୍ତା ଅନୁପମ ମରୁଭୂମି ବାଲି ବୁକେ
ସରଜେ ଆନନ୍ଦ ପଦ୍ମବନ । ॥୨॥

•••

# କାହିଁକି ଡାକିବି ?

କାହିଁକି ଡାକିବି ମହାପ୍ରଭୁ ବୋଲି
　　　　　　　　କାହିଁ ତୁମ ପ୍ରଭୁ ପଣ ?
ଆତୁରେ ଡାକିଲି ଭାସି ଭାସିଗଲି
　　　　　　　　ଅକୂଳରେ ନାରାୟଣ । ॥୦॥

ମନେ ଭାବିଥିଲି ଦୁଃଖ କି କରିବ
　　　　　　　　ସାହା ହେବେ ମହାବାହୁ,
ଆଶା ମୋର ସବୁ ଆଶାରେ ରହିଲା
　　　　　　　　ଗ୍ରାସ କଲା ଦୁଃଖରାହୁ ।
ବଡ଼ ବୋଲାଉଛ କାହା ପାଇଁ ପ୍ରଭୁ
　　　　　　　　ସବୁ ମିଛ ଅକାରଣ । ॥୧॥

ଯାହା ପାଇଁ ତୁମେ ଉଡ଼ାଇ ଦେଇଛ
　　　　　　　　ପତିତ ପାବନ ବାନା,
ସିଏ ତ ଝରୁଛି ଅକାଳରେ ଦେଖ
　　　　　　　　କରୁଣା କଣାଏ ବିନା,
ନିରାଶା ଅନ୍ଧାର ଆସୁଅଛି ଘେରି
　　　　　　　　ଦିଶୁଛି ସବୁ ମଳିନ । ॥୨॥

❀❀❀

# ମୁଁ ତୁମର ଆପଣାର

ମୁଁ ତୁମର ଆପଣାର ତୁମେ ମୋର ପ୍ରିୟ
ମୋ ଠାରେ କର କରୁଣା କରି ଅନୁଗ୍ରହ । ।।୦।।

ତୁମେ ପରା ସର୍ବନାମ କେଉଁ ନାମେ ଭଜିବି,
ତୁମେ ପରା ସର୍ବରୂପ କେଉଁ ରୂପେ ପୂଜିବି,
ମୁଁ ଯେ ବଣଫୁଲ ତୁମେ ମଧୁର ମଳୟ । ।।୧।।

କେବେ ଲାଗେ ତୁମେ ଅଛ ଦୂରେ ବହୁଦୂରେ,
ପୁଣି କେବେ ଲାଗେ ଅଛ ହୃଦୟ ଭିତରେ,
ଏ ସଂସାର ତୁମ ଲୀଳା ତୁମେ ଲୀଳାମୟ । ।।୨।।

ମୁଁ ତୁମର ତୁମେ ମୋର ଆହେ ମୋର ପ୍ରଭୁ
ମୋ ହୃଦୟ ଅଧୀଶ୍ୱର ତୁମେ ମୋର ସବୁ,
ତୁମର ଆଶିଷ ଦେବ ମତେ ବରାଭୟ । ।।୩।।

# ଧନ୍ୟ ହେଉ ମୋ ଜୀବନ

ଧନ୍ୟ ହେଉ ମୋ ଜୀବନ
ପୂର୍ଣ୍ଣ ହେଉ ଅଭିଳାଷ
ତୁମକୁ ଖୋଜିବା ପାଇଁ
ମିଳୁ ଶୁଭ ଅବକାଶ । ॥୦॥

ମୋ ମନେ ଚେତନା ସୂର୍ଯ୍ୟ
ହସି ହସି ଆସୁ ଉଇଁ,
ଆଶା କିରଣେ ହତାଶା
ଯାଉ ଧୀରେ ଦୂରହୋଇ
ଏ ଜୀବନ ହେବ ମୋର ଆନନ୍ଦର ମଧୁମାସ । ॥୧॥

ଶୀତଳ ହେଉ ହେ ପ୍ରଭୁ
ତାପିତ ହୃଦୟ ମୋର
ତୁମ ପାଦ କମଳରେ
ମନ ରହୁ ନିରନ୍ତର
ଚରାଚରେ ତୁମ ଲୀଳା ହୋଇଅଛି ପରକାଶ । ॥୨॥

•••

# ତୁମେ ଅଛ ବୋଲି

ତୁମେ ଅଛ ବୋଲି ଧୂଳିର ଏ ଧରା
ଲାଗେ ମତେ ଭାରି ଭଲ
ନ ଦେଖିଲେ ନାହିଁ ତୁମ ପଥ ଚାହିଁ
ବିତି ଯାଉ ଦିନ ମୋର। ॥୦॥

ଏ ଜୀବନେ ଯେତେ ସୁଖ ଦୁଃଖ ମୋର
ସବୁ ତୁମ ଇଛା ସବୁ ତୁମ ଖେଳ
ଏକଥା ଭାବିଲେ ଭାବାନ୍ତର ଆସେ
ହଜିଯାଏ ଅହଙ୍କାର। ॥୧॥

ଆଶା ବୀଣା ବାଜୁ ଅନ୍ତରେ ଗହନେ
ପାହିଯାଉ ନିଶା ଉଷା ଆଗମନେ
ବାଜୁ ଶୁଭଶଙ୍ଖ ମନର ମନ୍ଦିରେ
ତୋଳି ନୂଆ ନୂଆ ସୁର। ॥୨॥

ଜୀବନର ସାଥୀ, ସଖା ସହୋଦର
ବଣା ନାବିକର ଆଶା ବତୀଘର
ଜୀବନ ଅଞ୍ଜଳି ପୂରଣ ପାଇଁ କି
ତୁମେ ଆନନ୍ଦର ମୂଳ। ॥୩॥

●●●

# ତୁମରି ଆଲୋକେ

ତୁମରି ଆଲୋକେ ଆଲୋକିତ ପ୍ରଭୁ
ନଭେ ଶଶି ଦିବାକର
ଅଶେଷ ପୁଲକେ ନାଚେ ସାଗରରେ
ଲହରୀ ମାଳକୁ ମାଳ । ॥୦॥

ଆସିଲେ ବସନ୍ତ ତୁମ ପ୍ରେମ ଗୀତ
ଗାଏ ପିକ ତରୁ ଡାଳେ
ତୁମରି ସୁବାସ ଆଣି ଆନନ୍ଦରେ
ମଳୟ ବହଇ ଧୀରେ
ନରମ ଫୁଲର ମରମ ଭାଷାରେ
ଶୁଭେ ତୁମ ମଧୁ ସୁର । ॥୧॥

ତୁମରି କରୁଣା ବରଷିବା ପାଇଁ
ନଭେ ଆସେ ମେଘମାଳ
ବିଜୁଳି ଝଲକ ହସି କହିଯାଏ
ତୁମ ମହିମା ଅପାର
ତୁମରି କରୁଣା ନାହିଁ ତାର ସୀମା
ସିଏ ଅନନ୍ତ ଅପାର । ॥୨॥

# ତୁମ ଅଙ୍ଗ ଲାଗି

ତୁମ ଅଙ୍ଗ ଲାଗି ଚନ୍ଦନ ପ୍ରଭୁ ହେ
ମୋ ଲାଗି ଅମୂଲ ମୂଲ
ତୁମ ଅଙ୍ଗ ଝରା ଫୁଲର ପାଖୁଡ଼ା
ନନ୍ଦନ ମନ୍ଦାର ତୁଲ । ॥୦॥

ତୁମ କରୁଣାରେ ହେବ ଭବ ଦୁଃଖ ଦୂର
ତୁମେ ମୋର ହୃଦୟର ରାଜରାଜେଶ୍ୱର
ତୁମରି ଚରିତ ଶୁଣିବାରେ ଚିତ୍ତ
ହେବ ଆନନ୍ଦେ ବିଭୋର । ॥୧॥

ତୁମ ପ୍ରେମ ଭରିଦେବ ମନେ ମାଦକତା
ନୀରବରେ ଭିଜିଯିବ ମୋର ଆଖିପତା
ତୁମ ସେବା ଦାସ ହେବା ପାଇଁ ଆଶା
ଥିବ ମନେ ନିରନ୍ତର । ॥୨॥

# ହେ ଶୂନ୍ୟ ସ୍ୱରୂପ !

ହେ ଶୂନ୍ୟ ସ୍ୱରୂପ ! ତୁମେ ବିଶ୍ୱରୂପ
ତୁମେ ପୁଣି ଅବତାର
ଏ ସାରା ସଂସାର ତୁମ ସରଜନା
ଇଏ ତୁମ ଖେଳଘର । ॥୦॥

ନିରାଶା ଅନ୍ଧାରେ ଆଶାର ଆଲୋକ
ତୁମେ ପରା ଦିଅ ଭରି
ଜୀବନ ପଥରେ ହାତ ଧରି ନିଅ
ଅତି ଆପଣାର କରି
କରୁଣା ସାଗର ତୁମ କରୁଣାର
ନାହିଁ କାହିଁ ପଟାନ୍ତର ॥୧॥

କରମ କଷଣ ଦୂର କରିବାକୁ
ତୁମରି ଆଶିଷ ସାହା
ସବୁ ଦୋଷ ମୋର କ୍ଷମାକର ପ୍ରଭୁ
କ୍ଷମାନିଧି ଚଉବାହା
ଘଟେ ଘଟେ ତୁମେ ବିରାଜିତ ପ୍ରଭୁ
ଜଗତର ଅଧୀଶ୍ୱର । ॥୨॥

•••

# ଅନ୍ଧାର ଆସେ ଘେରି

ଅନ୍ଧାର ଆସେ ଘେରି
ହାତ ଧରି ମୋର ନିଅ ମହାବାହୁ
ଘାଟ କରିଦିଅ ପାରି । ॥୦॥

ଏକା ଏକା ଲାଗେ ବଡ଼ ଅସହାୟ
ପ୍ରତି ପାଦେ ପାଦେ ମାଡ଼ି ଆସେ ଭୟ
ଏତେବେଳେ ସାହା ନହେଲେ ହେ ପ୍ରଭୁ
ବିପଦ ହେବ ଭଗାରି । ॥୧॥

ରବି ଅସ୍ତେ କ୍ଷତ ମୃଗ ମନୋଭାବ
କହିବି କାହାକୁ କିଏ ବା ଶୁଣିବ ?
ସାଥୀ ହେବା ପାଇଁ କେହି ନାହିଁ ନାହିଁ
ସାଥୀ ଏକା ତୁମେ ହରି । ॥୨॥

'ମୋର' 'ମୋର' ବୋଲି କହୁଛି ମୁଁ ଯାହା
ଅନ୍ଧାର ପଥରେ କେହି ନୁହେଁ ସାହା
ତୁମେ ଏକା ସାହା ରାହା ଚଉବାହା
ଦୀନବନ୍ଧୁ ଦଇତାରି ! ॥୩॥

# ଆସିବା ବାଟକୁ

ଆସିବା ବାଟକୁ ଚାହିଁ ଚାହିଁ ପ୍ରଭୁ
ଦିନ କାଳ କି ମୋ ସରିବ !
ତୁମ ପାଇଁ ଗୁନ୍ଥା ଗଜରା ହାରରୁ
ଫୁଲ କି ମଉଳି ଝରିବ ! ॥୦॥

ଶୁଭିବନି କିବା ମୁରଲୀର ତାନ
ମୋ ମନ ଯମୁନା କୂଳେ
ବାଜିବନି କିବା ତୁମରି ନୂପୁର
ମୋ ପରାଣ କୁଞ୍ଜ କୋଳେ
ମୋର ଚେତନାର କମଳ କଳିକା
ନ ଫୁଟି ଜଳେ କି ସଢ଼ିବ ? ॥୧॥

ଜୀବନ ଜଞ୍ଜାଳ ଆକାଶ ଦେଶରେ
ଅମା ଅନ୍ଧକାର ରାଶି
ଅପସରି ଯାଇ ଆସିବ ନାହିଁ କି
ନବ ଉଷା ହସି ହସି
ଆଶା ଝୁଲି ମୋର ରହିଯିବ ଖାଲି
ନୟନୁ ଲୋତକ ଝରିବ। ॥୨॥

❀❀❀

# ତୁମ ରୂପ ବିଭା

ତୁମ ରୂପ ବିଭା ନ ଦେଖିଲେ ନାହିଁ,
ତୁମ ସ୍ୱର ସୁଧା ନ ଶୁଣିଲେ ନାହିଁ
ଏତିକି କର ହେ ସାଇଁ,
ତୁମେ ଅଛ ବୋଲି    ପାଶେ ପାଶେ ମୋର
ମୋ ଚେତନା ଯାଉ କହି । ॥୦॥

ନିରନ୍ତର ମୋର    ତୁଣ୍ଡେ ରହିଥାଉ
ତୁମରି ପବିତ୍ର ନାମ
ଅନ୍ତର ଭିତରୁ    ଚଳାଇ ନିଅହେ
ପରଷି ଅମୃତ ପ୍ରେମ ।
ହାତ ମୋର କରୁ    ତୁମ ସେବା କାମ
ସଂସାର ଭିତରେ ରହି । ॥୧॥

ଏଇ ଦୁନିଆଁରେ    ଚାଲିବାକୁ ଅଛି
ଯେତେ ଯେତେ ମୋର ପଥ
ପଥ ନୁହେଁ ସେତ    ପରିକ୍ରମା ହେଉ
ତୁମରି ପବିତ୍ର ତୀର୍ଥ ।
ମୋ ଶୟନ ହେଉ    ତୁମ ଚରଣରେ
ପ୍ରଣିପାତ ପ୍ରାଣ ସାଇଁ । ॥୨॥

କରୁଣା ତୁମର    ରହିଥାଉ ସଦା
ଜୀବନେ ମରଣେ ମୋର
ତୁଟିଯାଉ ମୋର    ଦୁଃଖ ଶୋକ ବାଧା
ଅବସାଦ ହାହାକାର ।
ତୁମ କଥା ଭାବି    ମୋ ବେନି ନୟନୁ
ଅଶ୍ରୁଧାର ଯାଉ ବହି । ॥୩॥

# ଅନ୍ତର୍ଯ୍ୟାମୀ ହୋଇ

ଅନ୍ତର୍ଯ୍ୟାମୀ ହୋଇ ବୁଝିଲ ତ ନାହିଁ
ଅନ୍ତର ବେଦନା ମୋର
ବୁଝାଇ କହିବି ଭାଷା ପାଉନାହିଁ
ମୁଁ ଯେ ଅକିଞ୍ଚନ ଛାର । ।।୦।।

ଏଇ ଚରାଚର ଏ ସାରା ସଂସାର
ତୁମ ହାତେ ସବୁ ଗଢ଼ା
ଆକାଶ ବତାସ ଦୂର ଅନ୍ତରୀକ୍ଷ
ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା ।
ତୁମରି ଇଙ୍ଗିତେ ସବୁକିଛି ହୁଏ
ତୁମେ ବଡ଼ କଳାକାର । ।।୧।।

କରମ ଲିଖନ ହୋଇଯିବ ଆନ
ତୁମରି କରୁଣା ବଳେ
ଇଛାମୟ ତୁମେ ତୁମରି ଇଛାରେ
ପଥର ଭାସଇ ଜଳେ ।
କ୍ଷମାକର ଦୋଷ ହୁଅବାରେ ତୋଷ
ଏମିତି ମିନତି ମୋର । ।।୨।।

●●●

# ମୋହରି ହୃଦୟ

ମୋହରି ହୃଦୟ ରାଜ ସିଂହାସନେ
ତୁମେ ରାଜ ରାଜେଶ୍ୱର
ନିଃଶ୍ୱାସରେ ମୋର ତୁମ ପାଇଁ ବାଜେ
ଶୁଭଶଙ୍ଖ ନିରନ୍ତର । ॥୦॥

ଆଶା ନୀଳକଇଁ ମନେ ମନେ ଫୁଟେ
ହୋଇ ତୁମ ପୂଜାଫୁଲ
ପରାଣ କୁଞ୍ଜରେ ପ୍ରୀତିର ଚନ୍ଦନ
ଗନ୍ଧ ତା ଅମୂଲ ମୂଲ ।
ମରମ ତଳରେ ଗହନ ଦେଶରେ
ବାଜେ ମୁରଲୀ ମଧୁର । ॥୧॥

ନମନୀୟତାର ତୁଳସୀ ସ୍ତବକେ
ତୁମ ପୂଜାଡ଼ାଲା ସାଜେ
ବିଶ୍ୱାସର ନାଲି ଗୋଲାପ ପାଖୁଡ଼ା
ଭକତି ଶିଶିରେ ଭିଜେ
ତୁମ ପାଦ ଦୁଇ ଧୋଇଦେବା ପାଇଁ
ଝରେ ମୋ ନୟନୁ ନୀର । ॥୨॥

# ଦୂର ଅନନ୍ତ ଆକାଶ

ଦୂର ଅନନ୍ତ ଆକାଶ ନୀଳିମା ଯାହାର କେଶ
ବିଶ୍ୱମୋହନ ମାଧୁରୀ ଯାର ମୃଦୁ ମଧୁହାସ
ଆଦିଶକ୍ତି ସେ କଲ୍ୟାଣମୟୀ,
ସାଗର ଲହରୀମାଳା ଦିବାନିଶି ଅବିରାମ
ପ୍ରଣମୁଛି ତା' ଚରଣ ଛୁଇଁ। ॥୧॥

ଯା'ର ଭାଲେ ଚନ୍ଦନର ବିନ୍ଦୁ ପୂର୍ଣ୍ଣିମାର ଇନ୍ଦୁ
ଅରୁଣ ଯା' ଭାଲପଟେ ଶୋଭନ ସିନ୍ଦୂର ବିନ୍ଦୁ
ଆଦିମାତା ସେହି ସନାତନୀ,
ଆକାଶର ଗ୍ରହତାରା ଯା କବରୀ ହୀରାଫୁଲ
ପାରିବ କେ ତା ମହିମା ଜାଣି। ॥୨॥

ବନାନୀର ସବୁଜିମା ଯା'ର ପଣତ ସୁଷମା
ଫୁଟାଫୁଲ ସେ ପଣତେ ହୀରାନୀଳାମଧୁରିମା
ଆଦିଗୁରୁ ସେ ମମତାମୟୀ,
ତା'ର ଦଣ୍ଡ ବି ପ୍ରସାଦ ହରଇ ଭବପ୍ରମାଦ
ତୁଳନା ତାହାର ନାହିଁ ନାହିଁ। ॥୩॥

●●●

# ସକଳ ତୀର୍ଥ

ସକଳ ତୀର୍ଥ ମୋ ତୁମ ଚରଣରେ
କରୁଣାମୟୀ ଗୋ ମାଆ !
ବିପଦେ ଆପଦେ ଜୀବନେ ମରଣେ
ତୁମେ ଏକା ମୋର ସାହା । ।।୦।।

ଗଗନ ପବନ ବନ ଉପବନ
ତୁମ ଯଶଗାନେ ଆନନ୍ଦେ ମଗନ
ତୁମରି କରୁଣା ପରଶେ ସୁନ୍ଦର ଏ ଭବ ଭବନ ଆହା । ।।୧।।

ତୁମ ପାଦରେଣୁ ପରଶେ ଏ ଧରା
ସୁଷମା ମଣ୍ଡିତ ହୁଏ ମଧୁଭରା
ତୁମରି ଆଶିଷ ବଳରେ ମାଆଗୋ ଅପସରେ ଦୁଃଖ ଛାୟା । ।।୨।।

ଇଛାମୟୀ ତୁମେ ନିଜ ଇଛାବଳେ
ଅବତରି ଆସ ଏହି ମହୀତଳେ
ଭାଷା ନାହିଁ ମୋର ତୁମରି ମହିମା ଗାଇବାକୁ ମହାମାୟା । ।।୩।।

# ଆନନ୍ଦରେ ନାଚ ମନ

ଆନନ୍ଦରେ ନାଚ ମନ ମାଆ ନାମ ଗାଇରେ
ଦୁଃଖେ ସୁଖେ ସାହା ସିଏ ଆଉ କେହି ନାହିଁରେ ।।୦।।

ତା ଆଖିରେ ଭରା ପରା କରୁଣାର ପୀୟୂଷ
ସେ ପୀୟୂଷେ ଭରିଯାଏ ଜୀବନର କଳସ
ସ୍ନେହମୟୀ କ୍ଷମାମୟୀ ତା ତୁଳନା ନାହିଁ ରେ । ।।୧।।

ଯାହା ମାଗିବାର କଥା ସବୁ ତାକୁ ମାଗିଲେ
ଯାହା ଭଲ ହେବ ତାହା ଦବ ସିଏ ଅଚିରେ
ଅଶେଷ ମହିମା ତାର, କେ ପାରିବ କହିରେ । ।।୨।।

ସବୁ ତାର ଖେଳଘର ସବୁ ତାର କରଣି
ଚରାଚରେ ବିଜେସିଏ ଟାଣି ମୁଖେ ଓଢ଼ଣି
ଏ ଜୀବନ ହେଉ ଧନ୍ୟ ତା ଚରଣ ଧ୍ୟାୟିରେ । ।।୩।।

# ମାଆ ତୁମ ଚରଣରେ

ମାଆ ତୁମ ଚରଣରେ ମନରହୁ ମୋର
ଏତିକି ମାଗୁଣି ମାଗେ ଯୋଡ଼ି ବେନି କର। ॥୦॥

ଅଭାବରେ ମାତା ତୁମେ ବିପଦରେ ବନ୍ଧୁ
ନିରାଶାର ଅନ୍ଧାରକୁ ପୂର୍ଣ୍ଣିମାର ଇନ୍ଦୁ
ମୋ ଜୀବନ ତୁମ ପାଇଁ ହେଉ ପୂଜାଫୁଲ। ॥୧॥

ତୁଣ୍ଡେ ମୋର ତୁମ ନାମ ରହୁ ଅନୁକ୍ଷଣ
ମୋ ଭ୍ରମଣ ହେଉ ତୁମ ତୀର୍ଥ ପ୍ରଦକ୍ଷିଣ
ମୋ ନିଃଶ୍ୱାସେ ତୁମ ପାଇଁ ବାଜୁ ଶଙ୍ଖ ସ୍ୱର। ॥୨॥

ମୋ ଶ୍ରବଣେ ବାଜୁ ନିତି ତୁମ ଜୟ ଗୀତି
ମୋ ବିଶ୍ରାମ ହେଉ ତୁମ ଚରଣେ ପ୍ରଣତି
ମୋ ବଚନ ହେଉ ତୁମ ଜୟ ଜୟକାର। ॥୩॥

# ମାଆ ତୁମ ଯଶ ଗାନ

ମାଆ ତୁମ ଯଶଗାନ ଲାଗେ ଭାରି ଭଲ
ମୋ ଜୀବନ ଲତାକୁଞ୍ଜେ ତୁମେ ଫୁଟାଫୁଲ । ॥୦॥

ସାଗରେ ତରଙ୍ଗ ତୁମେ ପୁଣି ବେଳାଭୂମି
ସୁନୀଳ ଆକାଶ ଆଉ ସବୁଜ ବନାନୀ
ତୁମେ ନଦ, ତୁମେ ନଦୀ ଗିରି ମାଳମାଳ ॥୧॥

ଦୟା କ୍ଷମା ମମତାର ମୂର୍ତ୍ତିମତୀ ଦେବୀ
ମୋ ନୟନୁ ନୀରଝରେ ତୁମ କଥାଭାବି
ସ୍ନେହମୟୀ ମାଆ ନିଅ ପ୍ରଣାମ ମୋହର । ॥୨॥

ଚରାଚରେ ତୁମ ଲୀଳା ଲାଗିଛି ନିରତେ
ତୁମେ ସତ୍ୟ, ତୁମେ ଶାନ୍ତି, ମୁକ୍ତି ଏ ଜଗତେ
ନିରାଶାର ଅନ୍ଧକାରେ ଆଶାର ମିନାର । ॥ ୩ ॥

# ମାଆ ଗୋ କରୁଣାମୟୀ

ମାଆ ଗୋ କରୁଣାମୟୀ ସ୍ନେହମୟୀ କ୍ଷମାମୟୀ
ମମତାର ମୂର୍ତ୍ତିମତୀ ବିଶ୍ୱ ଜନନୀ
ଆଦିଶକ୍ତି ସନାତନୀ ଗତି ମୁକ୍ତି ପ୍ରଦାୟିନୀ
ଆଶିଷ ଦାୟିନୀ ଦେବୀ ଦିବ୍ୟବାସିନୀ
ମଧୁମୟୀ ଦିବ୍ୟଜନନୀ
କରୁଣାକର ଅଧମେ ଏଇ ମାଗୁଣି । ॥୧॥

ବିଶ୍ୱମାତା ମହାମାୟା ଏ ବିଶ୍ୱ ତୁମର କାୟା
ଆକାଶ ତୁମ କବରୀ ତାରକା ଫୁଲ
ମଥାର ମଣି ସବିତା ଚନ୍ଦ୍ରମା ଚନ୍ଦନ ଚିତା
ପଣତ ତୁମ ସୁନ୍ଦର ବନ ଶ୍ୟାମଳ
ନିଃଶ୍ୱାସ ତ ଧୀର ପବନ
ଫୁଲ କୁଞ୍ଜେ କୁଞ୍ଜେ ତୁମ ହସ ଶୋଭନ । ॥୨॥

ପାଦର ନଖର କାନ୍ତି ଘାସଫୁଲେ ଝଟକନ୍ତି
ନଦୀର ପ୍ରବାହ ସେତ ଆଶିଷ ଧାରା
ନୀଳ ସାଗର ଲହରୀ ମନରେ ମମତା ଭରି
ଗାଏ ମହିମା ସଙ୍ଗୀତ ପୀୟୂଷ ଭରା
ବନ ଶୋଭା ବନ୍ଦନା ଗାଏ
ଅଳି ତାର ଗୁଞ୍ଜରଣେ ଶଙ୍ଖ ବଜାଏ । ॥୩॥

●●●

# ମାଆ ଆସିଛିରେ

ମାଆ ଆସିଛି ରେ ବିଜୟ ବାନାକୁ
ଉଡ଼ାଇ ଉଡ଼ାଇ ତାର
ଶରତ ସକାଳ ତା' ପାଇଁ ରଖିଛି
ସଜାଡ଼ି ଫୁଲର ହାର । ।।୦।।

ଭ୍ରମର ଗୁଞ୍ଜନ କିବା ଶଙ୍ଖତାନ
ମାଆ ନିରାଜନା ପାଇଁ
ନୀଳ ଆକାଶରେ ବଉଦ ଭାସୁଛି
ମାଆର ମହିମା ଗାଇ
ବନ ନୀଳିମାରେ ଆନମନା ହୋଇ
ଆନନ୍ଦେ ନାଚେ ମୟୂର । ।।୧।।

ମାଆ ପାଦ ଲାଗି ଫୁଟି ଯାଉଛିରେ
ଚେତନାର ନୀଳକଇଁ
ଅସୁର ନାଶିବ ମଧୁ ବରଷିବ
ଦଶଭୁଜା ଦୟାମୟୀ
କରୁଣାରେ ତାର ଉଲ୍ଲସି ହସିବ
ମରତର ବାଲିଘର । ।।୨।।

●●●

# ମାଆ ଗୋ ପ୍ରଣାମ

ମାଆ ଗୋ ପ୍ରଣାମ ତୁମରି ପାଦେ
ଶରଣ ଦାୟିନୀ ଶରଣ ଦିଅ ମା'
ତୁମରି ପଦାରବିନ୍ଦେ । ॥୦॥

ବନ ଉପବନେ ଫୁଲ ଫୁଟେ ମାଆ
ତୁମ ପୂଜାଫୁଲ ହୋଇ
ଶୀତଳ ପବନ ଢାଳଇ ଚାମର
ତୁମ ନିରାଜନା ପାଇଁ ।
ଝରଝର ହୋଇ ଝରଣା ଝରଇ
ଭରିପ୍ରାଣ ନୂଆ ଛନ୍ଦେ । ॥୧॥

ଅସୁର ନାଶିନୀ ତ୍ରିଶୂଳ ଧାରିଣୀ
ତୁମେ ଗତି ମୁକ୍ତି ରାହା
ଏତିକି ମାଗୁଣି ଦିଅ ମା' ଶକତି
ଜପିବାକୁ ତୁମ ନାଆଁ
କ୍ଷମାଦିଅ ମାଆ କ୍ଷମାମୟୀ ଦୁର୍ଗା
ସାହା ହୁଅ ପଦେ ପଦେ । ॥୨॥

# ମାଆର ମମତା

ମାଆର ମମତା ନେଇ ଏ ଧରାକୁ
ଆସିଅଛ ଦଶଭୂଜା
ଭକତିହୀନ ମୁଁ ଶକତି ନାହିଁ ମୋ
କରିବାକୁ ତୁମ ପୂଜା । ॥୦॥

କାନି ପଣତରେ ପୋଛି ଦିଅ ତୁମେ
ସନ୍ତାନର ଦେହୁ ଧୂଳି
ତା' ଶୁଖିଲା ମୁହେଁ ହସ ଦିଅ ଭରି
ଅଶେଷ ସେନେହ ଢାଳି
ତୁମ କରୁଣାରୁ ଦୂବ ହୁଏ ଦାରୁ
ରଙ୍କ ହୁଏ ପରା ରାଜା । ॥୧॥

ଜଗତଜନନୀ ତ୍ରିଶୂଳଧାରିଣୀ
ଅଭୟଦାୟିନୀ ଦୁର୍ଗା
ଅସୁରନାଶିନୀ କଲୁଷହାରିଣୀ
ଶୁଭ ବିଳାସିନୀ ଶିବା
ତୁମ ଆଗମନେ ବାଜେ ଏ ମରତେ
ଦେବତା ଦୁନ୍ଦୁଭି ବାଜା । ॥୨॥

❖❖❖

# ଏଇ ଶୁଭ ଶରତେ

ମାଆ ମୋର ଆସିଛି ରେ ଏଇ ଶୁଭ ଶରତେ
ସ୍ୱର୍ଗସୁଧା ଢାଳିଦେବ ଏଇ ମର ମରତେ । ।।୦।।

ଆକାଶରେ ଭସାମେଘ ଗାଏ ତାର ମହିମା
ବନେ ଉପବନେ ରାଜେ ମନଲାଖି ସୁଷମା
ଲତା କୁଞ୍ଜେକୁଞ୍ଜେ ଫୁଲ ଫୁଟି ହସେ ଲଳିତେ । ।।୧।।

ସରସୀରେ କଇଁଫୁଲ ଫୁଟି ଲୋଟେ ଅଳସେ
ମାଆ ଆଗମନୀ ଗୀତ ଗାଏ ମନ ହରଷେ
ଦିଗେ ଦିଗେ ଭରିଯାଏ ମଧୁରିମା ତୁରିତେ । ।।୨।।

ଅସୁର ନାଶିବ ମାଆ କଳୁଷ ବିନାଶିନୀ
ହସାଇବ ମଧୁହାସେ ଏଇ ସାରା ମେଦିନୀ
ଆଶାର ମିନାର ସିଏ ଦିଗହରା ବୋଇତେ । ।।୩।।

●●●

# ଦନୁଜ ଦଳିନୀ

ଦନୁଜଦଳିନି ମାଗୋ ! ଦୁର୍ଗତିନାଶିନୀ
ତ୍ରିଶୂଳଧାରିଣୀ ଦେବୀ ସୌଭାଗ୍ୟଦାୟିନୀ । ॥୦॥

ଶୁମ୍ଭ ନିଶୁମ୍ଭ ନାଶିନୀ ମହିଷାସୁର ମର୍ଦ୍ଦିନୀ
ମହୀଭାରା ନିବାରିଣୀ ଭବତାପ ବିନାଶିନୀ
ତ୍ରିନୟନା ଦେବୀ ଦୁର୍ଗା ଶାକମ୍ଭରୀ ଶିବାନୀ । ॥୧॥

ଦଶଦୁଃଖହରା ଦେବୀ ତିନି ଜଗତ ଜନନୀ
କରଯୋଡ଼ି ପାଦେପଡ଼ି କରଇ ଏହି ମାଗୁଣି
ଦୁଃଖ ମୋର ଦୂରକର ମାଆ ଦୁଃଖହାରିଣୀ । ॥୨॥

ମୁକ୍ତ ଘନକେଶା ମାଗୋ ଶୁଦ୍ଧ ସୁବର୍ଣ୍ଣ ବରଣା
ଦଶଭୂଜା ଦୟାମୟୀ ମମତା ମଧୁଝରଣା
ଦିଅ ଗତି ଦିଅ ମୁକ୍ତି ଦେବୀ ସିଂହବାହିନୀ । ॥୩॥

# ସବୁ ଦୋଷକର କ୍ଷମା

ସବୁ ଦୋଷ କର କ୍ଷମା,
କ୍ଷମାମୟୀ ଭବାନି !
ଭବ ଦୁଃଖ ଦୂର କର,
ଏଇ ମୋର ମାଗୁଣି । ॥୦॥

ଅଶାନ୍ତ ସାଗର କୋଳେ,
ଜୀବନ ନଉକା ଟଳେ
କର ଦୟା ଦୟାମୟି, ଜନନି !
ଗୋ ଏତେବେଳେ
ତୁମେ ଏକ ବତୀଘର, ଗତି ମୁକ୍ତି ସରଣୀ ॥୧॥

ନିରାଶାରେ ଦେଲେ ଆଶା,
ତୁମର ଯଶ କେତନ
ଉଡୁଥିବ କାଳ କାଳ
ପରଶି ନୀଳ ଗଗନ
ବାଜୁଥିବ ତୁମ ନାମେ ବିଜୟର ବାଜେଣି । ॥୨॥

ଦୂବ ହୁଏ ଦାରୁପରା
ତୁମରି ମହିମା ବଳେ
ମୂକ ହୁଅଇ ବାଚାଳ
ପଙ୍ଗୁ ଲଙ୍ଘେ ଗିରି ହେଳେ
ଶରଣ ଦିଅ ଚରଣେ ମାଆ ଶୁଭଦାୟିନି ! ॥୩॥

●●●

# ହେବି ସାନ ଘାସଫୁଲ

ହେବି ସାନ ଘାସଫୁଲ
ମାଆ ମୁଁ ତୁମର ମହିମା ଗାଇବି
ପାଇବି ଜୀବନ ମୂଳ । ।।୦।।

ବଇକୁଣ୍ଠ ଭୁବନରୁ ଅବତରି ଆସି
ମରତେ ଭରିଛ ମାଆ ପ୍ରୀତିପ୍ରଭାରାଶି
ତୁମରି ପାଦର ଧୀର ଲଳିତ ପରଶେ
ନାଚିବ ମୋ ପ୍ରାଣସିନ୍ଧୁ ବିମଳ ବିଳାସେ
ଏତିକି ମୁଁ ଅଳି କରେ ମାଆ ତୁମ କରୁଣାରେ
ଏ ଜୀବନ ହେବ ପୂର୍ଣ୍ଣଆନନ୍ଦେ ମଧୁର । ।।୧।।

ବିରାଜିତ ତୁମେ ପରା ଏ ସାରା ଜଗତେ
ଆକାଶେ ବତାସେ ପୁଣି ଦୂର ଛାୟାପଥେ
ମାହେଶ୍ୱରୀ, ମହାମାୟା ଦେବୀ ମହାଶକ୍ତି
ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ
ଚଲାପଥେ ମୋର ମାଆ ହେବ ପ୍ରତି ପଦେ ସାହା
ନିରାଶାରେ ଭରିଦେବ ଆଶାର ମୁକୁଳ । ।।୨।।

# ବିପଦରେ ପଦେ ପଦେ

ବିପଦରେ ପଦେ ପଦେ ହୋଇଛ ସାହା
ନିରାଶାରେ ଆଶା ତୁମେ ଦେଇଛ ମାଆ । ॥୦॥

ଅଶାନ୍ତିର ଅଗ୍ନିଜଳେ
ଜୀବନରେ ଯେତେବେଳେ
ଶୀତଳ ସଲିଳ ସିଞ୍ଚି ଲିଭାଇ ଦେଇଛ ନିଆଁ ॥୧॥

ମୋ ଦେହରୁ ଝାଡ଼ି ଧୂଳି
ସହି ଅଛ କେତେ ଅଳି
ବାଟରେ ପଡ଼ିଲେ ଝୁଣ୍ଟି ତମେ ତ କରିଛ ଆହା ॥୨॥

ତୁମେ କୃପା ପାରାବାର
ନାହିଁ କଳନା ତୁମର
ତୁମେତ ମମତାମୟୀ ଗତି ମୁକତିର ରାହା ॥୩॥

ତୁମ ମହିମା ଅପାର
ନାହିଁ ତାର ପଟାନ୍ତର
ତୁମେ ସତ୍ୟ, ତୁମେ ଶାନ୍ତି, ଇଛାମୟୀ ସର୍ବଂସହା ॥୪॥

•••

# ସିନ୍ଦୂର ବିନ୍ଦୁ

ସିନ୍ଦୂରବିନ୍ଦୁ ତୋ ଭାଲେ ଝଲସେ
ନବରବି ଛବି ଧରି
ତୋ ମୁକୁଳା କେଶ ଛଳରେ ତିମିର
ଯାଏ ମା' ଗୋ ଅପସରି । ।।୦।।

ପଦ୍ମ-ପଳାଶ-ରଙ୍ଗା ଲୋଚନରେ ତୋର
ଖେଳେ ରଣରଙ୍ଗ ଭାବ ଉଚ୍ଛୁଳା ଜୁଆର
ଲହଲହ ଜିହ୍ୱା, ଟହଟହ ହସ
ଶ୍ୟାମାଭୀମା ଭୟଙ୍କରୀ ।।୧।।

ଗଳେ ନର ମୁଣ୍ଡମାଳା ଭୂଷିତା ଶିବାନୀ
ଖଣ୍ଡା ଖର୍ପର ଧାରିଣୀ ଦେବୀ କାତ୍ୟାୟନୀ
କଳୁଷ ନାଶନେ ତୋ ପୟର ଲାକ୍ଷା,
ଦିଶେ ଅଗ୍ନିଶିଖା ପରି । ।।୨।।

ସନ୍ଥ ଜନ ପାଳିନୀ ମାଆ ଅଭୟ ଦାୟିନୀ
କାଳିକେ କରାଳମୟୀ ଅସୁର ନାଶିନୀ
କରୁଣା କର ମା' କରି ଦୋଷ କ୍ଷମା,
ଶରଣାଗତେ ଶଙ୍କରୀ । ।।୩।।

●●●

# ପ୍ରଭାମୟୀ ଦେବି !

ପ୍ରଭାମୟି ଦେବି ! ବିଦ୍ୟାଦାୟିନୀ
ମରାଳବାହିନୀ ବିଷ୍ଣୁମୋହିନୀ
ମାଆ ଭଗବତୀ ଦେବୀଭାରତୀ
ତୁମ ଚରଣରେ କରେ ମିନତି
ଦୟାକର ଦୟାମୟି ଗୋ !
ଜ୍ଞାନର ଆଲୋକ ମାଗୁଛି ମାଆ ମୁଁ
ତୁମ ପାଦପଦ୍ମ ଧ୍ୟାୟିଗୋ ॥୧॥

ଚେତନାମୟୀ ଗୋ ଦିବ୍ୟବାସିନୀ
ଶୁଭଦା ବରଦା ସ୍ମିତହାସିନୀ
ଶ୍ୱେତ ପଦ୍ମାସନା ବୀଣା ଧାରିଣୀ
ମାଆ ଗୋ ସାରଦା ସାର ଦାୟିନୀ
ତୁମରି କରୁଣା ବଳେ ଯେ
ମୂକ ମୁଖେ ଫୁଟେ କାହିଁ କେତେ ଭାଷା
ପଙ୍ଗୁ ଲଙ୍ଘେ ଗିରି ହେଳେ ଯେ । ॥୨॥

ବୀଣାପାଣି ତୁମେ ଶ୍ୱେତ ବସନା
ଶ୍ୱେତ ଚନ୍ଦନରେ ତନୁ ଅର୍ଚ୍ଚନା
ସୁର ନାଗନରେ ସଦା ପୂଜିତା
କର୍ମ କଉଶଳେ ଅପରାଜିତା
ନିଅ ମୋର ପୁଷ୍ପାଞ୍ଜଳି ମାଆ
ଦିଅ ସଦ୍‌ବୁଦ୍ଧି ଦିଅ ସର୍ବସିଦ୍ଧି
ଏତିକି ଚରଣେ ଅଳି ମାଆ । ॥୩॥

●●●

# ଭାରତୀ କରୁଣାମୟୀ

ଭାରତି କରୁଣାମୟୀ, ଘେନ ମୋର ଆରତି
କରୁଣା ବହି ଜନନି !
ହର ଦୁଃଖ ଦୁର୍ଗତି । ।।୦।।

ଜ୍ୟୋତ୍ସ୍ନାଜାଲ ବିଳାସିନୀ ଶ୍ୱେତ କମଳ ବାସିନୀ
ଚରାଚରେ ଝରେ ତୁମ ଚେତନା ଆଲୋକ ଜ୍ୟୋତି । ।।୧।।

ଅବିଦ୍ୟା ଅନ୍ଧାର ନାଶି ଦିଅ ଆଲୋକ ବରଷି
ଆନନ୍ଦର ଫୁଲ କଢ଼ି ଫୁଟୁ ମନକୁଞ୍ଜେ ନିତି । ।।୨।।

ଜଡ଼ବୁକେ ଜାଗରଣ ଆସୁ ମାଆ ନିଶିଦିନ
ହସିଉଠୁ ଧରାଧାମ ଗାଇ ତୁମ ଜୟଗୀତି । ।।୩।।

ବୀଣା ପୁସ୍ତକ ଧାରିଣୀ ଦେବୀ ମରାଳ ବାହିନୀ
ଶୁଭଦାୟିନୀ ସାରଦେ ! ତୁମ ପାଦେ ରହୁ ମତି । ।।୪।।

# କୃଷ୍ଣ ହେ ଦିଅ କୃପାବରଷି

କୃଷ୍ଣ ହେ, ଦିଅ କୃପା ବରଷି
ଶ୍ରୀଛାମୁରେ କରେ ଗୁହାରି ଆସି । ॥୦॥

କମଳ ନୟନ କଟାକ୍ଷେ ଚାହିଁ
ଦେଲେ ଦୁଃଖ ମୋର ଯିବ ଉଭାଇ
ତୁମ ଯଶବାନା ଜଗତେ ଉଡ଼ିବ ନୀଳ
ଆକାଶର ଶିଖା ପରଶି । ॥୧॥

ଆନନ୍ଦ ଭାବର ଶୁଭ ପ୍ରତୀକ
ମଧୁ ମମତାର ଶୁଭ ଆଲୋକ
ରାଜରାଜେଶ୍ୱର ଜଗତ ଈଶ୍ୱର ଶୁଣ
ମୋ ଗୁହାରି ନୁହ ଉଦାସୀ । ॥୨॥

ଅରକ୍ଷ ରକ୍ଷଣ ତୁମରି ବାନା
ଅରକ୍ଷ ଗୁହାରି ନକଲେ ଘେନା
ତୁମେ ଥାଉ ଥାଉ ଅନ୍ଧାର ଘୋଟିବ ଶୁଣି
କି କହିବେ ଜଗତବାସୀ ? ॥୩॥

ବରଷିଲେ ମରୁବାଲିରେ ଜଳ
କଥା ରହିଥିବ କାଳକୁ କାଳ
ଏତିକି ମୋ ଅଳି ଆହେ ବନମାଳି !
ପୂରୁ ତବ ପ୍ରେମେ ମନକଳସୀ । ॥୪॥

●●●

# ନୂପୁର ମୁଁ ହେବି

ନୂପୁର ମୁଁ ହେବି ନିତି ବାଜୁଥିବି
ତୁମପାଦେ ହୋଇ ବନ୍ଧା
ଜୀବନ ଆକାଶେ ତୁମେ ପୂର୍ଣ୍ଣ ଶଶୀ
ଆଉ ସବୁ ଅଧା ଅଧା । ॥୦॥

ମଧୁର ମୋହନ ମୁରଲୀର ତାନ
ଶୁଣୁଥିବି କାନେ ମୋର ।
କଟିର କିଙ୍କିଣୀ ପାରୁଥିବି ଶୁଣି
ସତେ କେଡ଼େ ଭାଗ୍ୟ ମୋର
ତୁମରି ମହିମା ଗାଇ ମହାପ୍ରଭୁ ଭୁଲିଯିବି ସବୁ ବାଧା । ॥୧॥

ତୁମ ଧୀର ଧୀର ମଧୁର ଚାଲିରେ
ଫୁଟୁଥିବ ନୀଳକଇଁ
ପାଟ ପୀତାମ୍ବରୀ ଯାଉଥିବ ଝୁଲି
ଛୁଇଁ ଚଲାବାଟ ଭୂଇଁ
ସେଇ ଚଲାବାଟ ଧୂଳିହୋଇ ବୋଲି ଲଭିବି ସରଗସୁଧା । ॥୨॥

ଅପୂର୍ବ ସୁଷମା ନାହିଁ ଯାର ସୀମା
ତୁମ ପାଦେ ତାହା ରାଜେ
ଚଉଦ ଭୁବନ କମନୀୟ କାନ୍ତି
ମୂର୍ତ୍ତି ଧରି କିବା ବିଜେ
ସେ ପାଦ ପରଶେ ମୋ ଜୀବନ ପାତ୍ରେ ଭରିଯିବ ଛଣାସୁଧା । ॥୩॥

# ସୁନ୍ଦର ତୁମେ ଚିରସୁନ୍ଦର

ସୁନ୍ଦର ତୁମେ ଚିର ସୁନ୍ଦର
ମୋହନ ମୁରଲୀଧାରୀ
ରଙ୍ଗ ଅଧରେ ଫୁଟେ ପାରିଜାତ
ଆଉ କିଏ ତୁମ ସରି ? ॥୦॥

ନବଘନ ଜିଣା ଅପଘନ ତମ
ଲଳିତ ଲାବଣ୍ୟପୁରୀ !
ଅତୁଳ ସୁଷମା ନାହିଁ ତାର ସୀମା
କାମଦେବ ଯିବେ ହାରି ।
ସୁନ୍ଦର ମଧୁର ତୁମ ନଖଶିରୀ
ଚନ୍ଦ୍ର ପ୍ରଭା କିବା ସରି ? ॥୧॥

ନନ୍ଦ ଯଶୋଦାର ପ୍ରାଣଧନ ତୁମେ
ଗୋବର୍ଦ୍ଧନ ଗିରି ଧରା
ଭକତ ପରାଣ କୁଞ୍ଜବନେ ତୁମେ
ଫୁଟାଫୁଲ ମଧୁଭରା
ଦିନ ମୋର ଯାଉ ତୁମରି ଚରଣେ
ଅଶେଷ ପ୍ରଣତି ଢାଳି ॥୨॥

# ତୁମେ ପରା ପ୍ରଭୁ

ତୁମେ ପରା ପ୍ରଭୁ ମୋ ପ୍ରାଣ ବାନ୍ଧବ
ବାସରେ ବସନ୍ତ ଫୁଲ
ମୋ ମନ ରାଧାର ତୁମେ ତ ମାଧବ
ଗଳାର ରତନ ହାର । ।।୦।।

ତୁମେ ମୋ ଆଶାର ଆଷାଢ଼ କଦମ୍ବ
ପ୍ରୀତିର ଯମୁନାଧାରା
କରୁଣାର ତୁମେ ସୁନୀଳ ସାଗର
ଭରସାର ଧ୍ରୁବତାରା ।
ମୋ ହୃଦ ଆସନେ ରାଜରାଜେଶ୍ୱର
ମୋ ଜୀବନ ଗୀତିସୁର । ।।୧।।

ପ୍ରଭୁ ତୁମେ ମୋର ଲଉଡ଼ି ଅନ୍ଧର
ଚିତ୍ତ ଚାତକର ଘନ
କିବା ଅଛି ମୋର ଦେବି ଉପହାର
ସବୁତ ତୁମରି ଦାନ ।
ତୁମ ନାମ ଥାଉ ତୁଣ୍ଡେ ମୋର ସଦା
ଏତିକି କରୁଣା କର । ।।୨।।

●●●

# ଦିବ୍ୟଗନ୍ଧେ ସୁବାସିତ

ଦିବ୍ୟ ଗନ୍ଧେ ସୁବାସିତ ତୁମ ତନୁ
ସର୍ବମୟ ବାସୁଦେବ
ମୁଁ କିବା ବୁଝିବି ତୁମକୁ ହେ ପ୍ରଭୁ
କାହିଁ ମୋର ଏତେ ଭାବ ? ||୦||

ମାନସହଂସ ମୁଁ ମାନ ସରସୀରେ
ରହିଅଛି ବନ୍ଦୀହୋଇ
ପାରୁନାହିଁ ଶୁଣି ତୁମ ବଂଶୀ ସ୍ୱନ
ଦିନ ଯାଉଅଛି ବହି ।
ଯୋଗ୍ୟ କି କରିବ ନାହିଁ ମହାବାହୁ
ଅଧୀନ ହେବାକୁ ତବ ? ||୧||

ଅଧିମାନସର ଅଧୀଶ୍ୱର ତୁମେ
ଆନନ୍ଦର ଅବତାର
ପ୍ରୀତିପ୍ରବଣତା ନନ୍ଦନବନର
ସୁନ୍ଦର ମନ୍ଦାର ଫୁଲ ।
ଲଳିତ ଛନ୍ଦର ଲାବଣ୍ୟବିଳାସ
ତବ ଲୀଳା ଅଭିନବ । ||୨||

ବିଶ୍ୱଚେତନାର ଅଧୀଶ୍ୱର ତୁମେ
ତୁମେ ପୁଣି ବିଶ୍ୱାତୀତ
ଅନ୍ଧାର ପଥରେ ଆଲୋକର ରେଖା
ତୁମେହିଁ ପରମ ସତ୍ୟ ।
ମଣିଷ ମନରେ ତୁମେହିଁ ମମତା
ପ୍ରତି ମୁଗ୍ଧ ଅନୁଭବ । ।।୩।।

ତୁମେହିଁ ନାବିକ ତୁମେହିଁ ନଉକା
ତୁମେ ପୁଣି ନଦୀଧାରା
ତୁମେ ପ୍ରାଣଶକ୍ତି ମନର ନିଷ୍ପତ୍ତି
ଭରସାର ଧ୍ରୁବତାରା
କି ଭାଷାରେ ତୁମ ମହିମା ଗାଇବି
ମୁଁ ଯେ ଅକିଞ୍ଚନ ମନ୍ଦ । ।।୪।।

●●●

# ପ୍ରଭୁ ମୋର

ପ୍ରଭୁ ମୋର ପ୍ରଭୁ ମୋର
ମୋର ପ୍ରାଣ ବାନ୍ଧବ
ତୁମ ପାଦେ ମନ ମୋର
ବନ୍ଧାରଖ ମାଧବ । ।।୦।।

କିଛି ନାହିଁ ନେବା ପାଇଁ
ଗଲାବେଳେ ସାଥିରେ
ତୁମ ନାମ ହେବ ସାଥି
ଚଲାପଥ ବୀଥିରେ ।
ଦୁଃଖ ନଇ ପାରି ପାଇଁ ସିଏ ସେତୁ ବାନ୍ଧିବ । ।।୧।।

ଘନ ଘୋର ଅନ୍ଧାରରେ
ତୁମ ପ୍ରେମ ଆଲୋକ
ନିରାଶାରେ ଭରିଦେବ
ଆଶା ମଧୁ ମହକ
ମରୁଭୂମି ବାଲିବୁକେ ଜଳବେଣୀ ସାଜିବ । ।।୨।।

ଚଉଦିଗ ମହାଶୂନ୍ୟ
ପୂର୍ଣ୍ଣ ତୁମ ପରଶ
ଅକିଞ୍ଚନେ ସିଞ୍ଚିଦେବ
ଆନନ୍ଦର ପୀୟୂଷ
ପ୍ରାଣବନେ ଫୁଟିଯିବ ଚାରୁ କେଳିକଦମ୍ବ । ।।୩।।

●●●

# ତୁମେ ମନ୍ଦର ଗିରିଧାରୀ

ତୁମେ ମନ୍ଦର ଗିରିଧାରୀ
ତୁମରି ମୁରଲୀ ସୁରରେ ସୁରରେ
ସୁଧା ଧାରା ଯାଏ ଝରି । ॥୦॥

ଏଇ ଦେହ ତୁମ ଗୁପ୍ତ ବୃନ୍ଦାବନ
ବାଜୁଛି ମୁରଲୀ ତହିଁ ନିଶିଦିନ
ସେ ମୁରଲୀ ସ୍ୱର ଶୁଣିବାକୁ କାନ
ଦିଅ ହେ ମୁରଲୀ ଧାରୀ । ॥୧॥

ଏଇ ପ୍ରାଣେ ତୁମ ଆନନ୍ଦ କୁସୁମ
ଫୁଟି ଲୋଟୁଅଛି ଆହେ ଘନଶ୍ୟାମ
ତୁମ ଛନ୍ଦାପାଦେ ବନ୍ଧା ରଖ ମୋତେ
ଏତିକି କରେ ଗୁହାରି । ॥୨॥

ପାହିଯାଉ ଜଡ଼ତାର ଅମାନିଶା
ଆସୁ ଚେତନାର ପ୍ରଭୁ ନୂଆ ଉଷା
ନୂତନ ଆଶାର ନୀଳକଇଁ ଫୁଟୁ
ପାଖୁଡ଼ା ପାଖୁଡ଼ା ମେଲି । ॥୩॥

●●●

# ଘୁଞ୍ଚିଘୁଞ୍ଚି ଆସିଛି ମୁଁ

ଘୁଞ୍ଚି ଘୁଞ୍ଚି ଆସିଛି ମୁଁ ତୁମଠାରୁ ବହୁଦୂରେ
ଦୁଃଖପାଇ ଗାଳିଦେଲି ତୁମକୁ କେତେ ପ୍ରକାରେ । ॥୦॥

ଶୁଣିଲିନି ତୁମ ଡାକ ଚାଲିଲି ମୁଁ ବାଟ ବାଙ୍କ
କଣ୍ଟା ଫୁଟିଗଲା ପାଦେ ଆଖି ଭିଜିଲା ଲୁହରେ । ॥୧॥

ତୁମ ମୁରଲୀର ତାନ ନ ଶୁଣିଲା ମୋର କାନ
ତୁମ କଥା ଶୁଣିବାକୁ ଇଛା ହେଲା ନାହିଁ ଥରେ । ॥୨॥

ଭକ୍ତି ନାହିଁ, ଭାବ ନାହିଁ, ଜ୍ଞାନ ନାହିଁ, ଧ୍ୟାନ ନାହିଁ
ତୁମ ନାମ ଜପିବାକୁ ଇଛା ନହେଲା ମନରେ । ॥୩॥

ଅହଂକାର ଯେତେ ମୋର କର ଏବେ ପ୍ରଭୁ ଦୂର
ତବାଧୀନ କର ମୋତେ ଏତିକି ମିନତି କରେ । ॥୪॥

# ନାଗର ରସସାଗର

ନାଗର ରସସାଗର ମୁରଲୀଧରା
ରଙ୍ଗ ଅଧର ତୁମର ମନ୍ଦାର ଝରା
କେଳି କନ୍ଦର୍ପ କୁଶଳ
ଗଳେ ଝୁଲେ ବନମାଳ
କଟିରେ କିଙ୍କଣୀ ବାଜେ
ପାଦେ ବାଜେଣି ନୂପୁର
ତୁମେ ଧୀର, ତୁମେ ବୀର, ତୁମେ ସୁଠାମ ସୁନ୍ଦର,
ଗୋପୀ ମନ ଚୋର ପୁଣି ମନ୍ଦର ଧରା । ॥୧॥

ଚନ୍ଦନ ଚର୍ଚ୍ଚିତ ତନୁ
ଗୋପ ଗଗନର ଚାନ୍ଦ
ଆନନ୍ଦର ଅବତାର
ନନ୍ଦନନ୍ଦନ ଗୋବିନ୍ଦ
ଇନ୍ଦ୍ରନୀଳମଣି ଆଭା ମାଦକ ଲଳିତପ୍ରଭା
ମନ କିଣି ନିଏ ତୁମ ଚାହାଣି ଚୋରା ॥୨॥

ତିଳଫୁଲ ଜିଣା ନାସା
ମଥାରେ ମୟୂର ଚୂଳ
ପ୍ରୀତିର ଲଳିତ ଗୀତ
କି ଦେବା ଉପମା ତା'ର ।
ତୁମେ ଜ୍ଞାନ, ତୁମେ ପ୍ରେମ, ଅତସୀ କୁସୁମ ଶ୍ୟାମ
ଅଧିମାନସ ଦେବତା ଶୋକ ପାଶୋରା । ॥୩॥

●●●

# ତୁମେ ସୁନ୍ଦର ଯୋଗେଶ୍ୱର

ତୁମେ ସୁନ୍ଦର ଯୋଗେଶ୍ୱର
ଆନନ୍ଦ-ଲଳିତ- କଳପ-ଲତାର
ଅମଳିନ ଫୁଟାଫୁଲ । ।।୦।।

ତୁମ ରୂପ ବିଭା କେତେ ମନଲୋଭା
ଆଖି ଯାଏ ଲାଖି ତହିଁ
ତୁମ ମୃଦୁ ହସ ଝରାଏ ପୀୟୂଷ
ମୁନି ମନ ନିଏ ମୋହି
ତୁମରି ବଇଁଶୀ ଗାଏ ଗୀତ ହସି
ଭୁବନଭୁଲା ସେ ସୁର । ।।୧।।

ପ୍ରୀତି ଭାବନାର ତୁମେ ତ ପ୍ରତୀକ
ଧୀର ଧୀର ତୁମ ଚାଲି
ମରୁ ବାଲି ବୁକେ ଫୁଟାଏ ଆନନ୍ଦ
କମଳ-ସୁନ୍ଦର-ନାଲି
ଚାହାଣିରୁ ତୁମ ଝରେ ସୁଧାଧାରା
ନାହିଁ ତ ଉପମା ତାର । ।।୨।।

ଅଧିମାନସର ଈଶ୍ୱର ହେ ତୁମେ
ପରାପର ତୁମ ନାହିଁ
ଅନ୍ତର୍ଯ୍ୟାମୀ ହରି, ଭକ୍ତ ପ୍ରାଣଧନ
ତୁମର ତୁଳନା ନାହିଁ ।
ତୁମ ଯଶଗୀତି ଗାଏ ଚରାଚର
ଦିବାନିଶି ନିରନ୍ତର । ।।୩।।

❁❁❁

# ତୁମେ କୁଞ୍ଜ କାନନଚାରୀ

ତୁମେ କୁଞ୍ଜ-କାନନ-ଚାରୀ
ତୁମେ ମୋହନ ବଂଶୀଧାରୀ
ଭରା ଆନନ୍ଦର ଅବତାର ତୁମେ
ପ୍ରେମର ଶୋଭନ-ଶିରୀ ॥୦॥

ନିରାଶାର ଝାଞ୍ଜି ପବନ ପ୍ରବାହେ
ଜୀବନ ଅଧୀର ଅତି
ଶୀତଳ ଚନ୍ଦନ ଚାରୁ ପରଶରେ
ଭରି ଦିଅ ପ୍ରାଣେ ଶାନ୍ତି
ଆଉ କେହିନାହିଁ ହେବ ତୁମ ସରି ଦୀନବନ୍ଧୁ ଦୁଃଖହାରୀ। ॥୧॥

ତୁମେ କଳ୍ପବଟ ମୁଁ ଛାର ପଥିକ
ଛାଇକୁ ଆଶ୍ରୟ କରି
ବସିଛି ହରି ହେ, କରିଛି ଭରସା
ଦୁଃଖ ମୋର ଯିବ ଚାଲି
କରହେ ତାରଣ, ହେ ଛନ୍ଦା ଚରଣ ! ବିପଦ ବାରଣ ହରି। ॥୨॥

# ବଦ୍ରିନାଥ ଗଲି

ବଦ୍ରିନାଥ ଗଲି ଦ୍ୱାରକା ମୁଁ ଗଲି
ସେତୁବନ୍ଧ ରାମେଶ୍ୱର
ସବୁ ବୁଲି ବୁଲି ଶେଷରେ ଆସିଲି
ଶ୍ରୀକ୍ଷେତ୍ର ଶ୍ରୀନୀଳାଚଳ । ।।୦।।

ଦେଖିଲି ବସିଛି କ୍ଷେତ୍ରବାସୀ ହୋଇ
ଅନ୍ଧର ଲଉଡ଼ି ମୋର
କାଉଁରି ଲଗାଇ କିଣିନେଲା ମତେ
ମିଠା ମିଠା ହସ ତାର ।
ମନହେଲା ମୋର ସେହିଠାରେ ରହି ଭକତ ମେଳରେ
ଖଞ୍ଜଣି ବଜାଇ ଦିଅନ୍ତି ମୁଁ ହରିବୋଲ । ।।୧।।

କଳପ ବଟରେ ମାନସିକ କରି
ମନର କଥା କହିଲି
କଳପେ କଳପେ ଜଗା କାଳିଆର
ସେବା ଦାସ ହେବି ବୋଲି
ଯେଉଁକାମ ଦେବ ସେ କାମ କରିବି, ଦିବାନିଶି ତାର
ନାମ ଜପୁଥିବି, ତାକୁ କରି ଗଳାହାର ।।୨।।

●●●

# କାଳିଆ ବସିଛି

କାଳିଆ ବସିଛି ବଡ଼ ଦେଉଳରେ
ପତିତ ତାରିବ ବୋଲି
ରଙ୍ଗ ଅଧରରେ ମୁରୁକି ହସୁଛି
ବାହୁକୁ ଦେଇଛି ମେଲି । ।।୦।।

ଚକାଚକା ଆଖି ଆହାକି ସୁନ୍ଦର
ପଲକ ପଡୁନି ତାର
ସାରା ମୂଲକର ମାଲିକ ବୋଲାଏ
ସେ ତ ରାଜରାଜେଶ୍ୱର
କରୁଣା ରତନେ ଭରି ଦେଉଛିରେ
ଭକତର ଭିକ୍ଷାଝୁଲି । ।।୧।।

କରମା ବାଈର ଭକତିରେ ବନ୍ଧା
ଭୁଞ୍ଜିଛି ତା ରନ୍ଧା ଅନ୍ନ
ବଳରାମ ଦାସ ବାଲିରଥେ ଉଭା
ଭକତର ଭଗବାନ
ବନ୍ଧୁ ମହାନ୍ତିର ବନ୍ଧୁ ବୋଲାଇ ସେ
ଯାଚିଦେଲା ଭୋଗଥାଳି । ।।୨।।

## ତୋର ଦରଶନ ପାଇଁ

ତୋର ଦରଶନ ପାଇଁ
କେତେ ଦୂର ବାଟୁ ଆସିଛି କାଳିଆ
ଆଉ କିଛି ମାଗୁନାହିଁ । ।।୦।।

ବଇକୁଣ୍ଠ ପରି ତୋ ବେଢ଼ା ଲାଗୁଛି
କଳପ ବଟକୁ ନେଇ
ଶୀତଳ ପବନ ବହି ଯାଉଅଛି
ଭକତର ଦେହ ଛୁଇଁ
ଆନନ୍ଦର ଫୁଲ ଫୁଟି ଯାଉଅଛି ମନେ କେରିକେରି ହୋଇ । ।।୧।।

ଜନମେ ଜନମେ ସାତ ଜନମରେ
ଦରଶନ ମତେ ଦବୁ
ସେବା ଦାସ କରି ତୋ ପାଦ ତଳରେ
ସବୁଦିନେ ରଖିଥିବୁ
ଏତିକି ମାଗୁଣି ମାଗୁଛି କାଳିଆ ଗରୁଡ଼ ପଛରେ ରହି । ।।୨।।

●●●

# କାଳିଆ କାଳିଆ କହନ୍ତି ଯାହାକୁ

କାଳିଆ କାଳିଆ କହନ୍ତି ଯାହାକୁ
ସିଏ ମୋର ଗଳାମାଳାରେ
ବଡ଼ ଦେଉଳରେ ବଡ଼ ମଉଜରେ
ଲଗାଇଛି ବଡ଼ ଲୀଳାରେ । ॥୦॥

ଭକତ ମେଳିଆ କାଇଁଚ ମାଳିଆ
କଦମ୍ବ ମୂଳିଆ କାହ୍ନାରେ
ମୂରଲୀଅଧରା ରାଧା ପାଦଝରା
ଝୁଣ୍ଟିଆ ମୂଲରେ କିଣାରେ । ॥୧॥

ନୀଳ ସାଗରର କୂଳରେ ବସିଛି
ନାବିକ ସେ ଭାବ ଭୋଳାରେ
ପାରି କରିବାକୁ ପଝାରି ଭାଇକୁ
ନାହିଁ ତାର ଅବହେଳାରେ । ॥୨॥

ବାରମାସେ ତେର ଯାତ ଲଗାଇଛି
କଳାମୁହାଁ ଚକାଡୋଳାରେ
ଗାଇ ତାର ନାମ ପାଇ ତାର ପ୍ରେମ
ତୁଟି ଯାଉ ଭବଜ୍ବାଳାରେ । ॥୩॥

●●●

# ତୁମ ରୂପ ମୋର

ତୁମ ରୂପ ମୋର ଆଖିରେ ନାଚୁଛି
ପାରୁ ନାହିଁ ଭୁଲି ମୁହିଁ
ନୀଳାଦ୍ରିକେଶରୀ ହେ ଚକାନୟନ !
ତୁମେ ଜଗତର ସାଇଁ । ।।୦।।

ତୁମେ ତ ଦେଖାଅ ଅନ୍ଧାରରେ ପଥ
କରୁଣା ସାଗର ଆହେ ଜଗନ୍ନାଥ
ପତିତ ପାବନ ବାନା ଉଡ଼େ
ତୁମ ପତିତ ତାରିବା ପାଇଁ । ।।୧।।

ତୁମେତ ସୂରୁଯ ମୁଁ ଯେ ରଶ୍ମିରେଣୁ
ମୁଁ ଯେ ବେଣୁସ୍ୱର ତୁମେ ନିଜେ ବେଣୁ
ମୁହିଁ ଜୀବ ତୁମେ ପରମ ହେ ହରି
ମାଗେ ତୁମ ଭୁଜ ଛାଇ । ।।୨।।

ଅଛି ତୁମଠାରେ କୁହୁକ ପରଶ
ଲଗାଇ ଜୀବକୁ କରିଦିଅ ବଶ
ଅଖିଳ ଭୁବନ ରାଜରାଜେଶ୍ୱର
ତୁମର ତୁଳନା ନାହିଁ । ।।୩।।

●●●

# ଇଚ୍ଛା ହେଉନାହିଁ

ଇଚ୍ଛା ହେଉନାହିଁ ଛାଡ଼ିଯିବା ପାଇଁ
ଏଇ ତୋର ଶ୍ରୀମନ୍ଦିର
କି କାଉଁରି ମୋତେ ଲଗାଇ ଦେଇଛୁ
ସତ କହ ମାୟାଧର । ।।୦।।

ମୋ ଆଖି ଲୁହରେ ତୋ ଆଖି ଭାସୁଛି
କାଳିନ୍ଦୀ ତରଙ୍ଗ ତୋଳି
ତୋ ବିପୁଳ ଭୁଜେ କେତେ ଫୁଲମାଳ
ହସୁଅଛି ଝୁଲି ଝୁଲି ।
ମନ ମୋ କହୁଛି ଜନମେ ଜନମେ
ହୁଅନ୍ତି ସେବକ ତୋର । ।।୧।।

ସବୁ ତୋ ନିଜର ସରବେ ତୋହର
ବଡ଼ ସାନ କିଛି ନାହିଁ
ତୋ ମୁରୁକି ହସ ମୋହି ନେଉଅଛି
ଆକାଶ ବତାସ ଭୂଇଁ ।
ସରଗର ସୁଧା ପଡୁଅଛି ଝରି
ହୋଇ ଏଠି ଶତଧାର । ।।୨।।

•••

# ମୁଁ ତ ସତ୍ୟରେ କରିନି ତପ

ମୁଁ ତ ସତ୍ୟରେ କରିନି ତପ
ନୁହେଁ ତ୍ରେତାରେ ତୁମର ଭକ୍ତ
ମୁଁ ତ ଦ୍ୱାପରେ ରହିନି ଗୋପ
ମୁଁ ତ କଳିରେ ନୁହେଁ ସେବକ
ତଥାପି ଆସିଛି ଦୁଃଖ ଜଣାଇବି
ଶୁଣିବ ନାହିଁ କି କଳା ଶ୍ରୀମୁଖ ? ॥୧॥

ମୁଁ ତ ତୋଳିନି ସଜ ସୁମନ
କେବେ ଗୋଳିନି ବାସ ଚନ୍ଦନ
ବସି ଜାଳିନି ଜାଗର ଦୀପ
କରି ନାହିଁ ତୁମ ନାମ ଜପ
ତଥାପି ଆସିଛି ସିଂହ ଦୁଆରକୁ
ମାଗିବା ପାଇଁ କି କରୁଣା ଭିକ। ॥୨॥

କେବେ ସାଗରେ ସ୍ନାହାନ ସାରି
ଆସି ନାହିଁ ମୁଁ ଦର୍ଶନ କରି
ତୁମ ଭଜନ ପାରିନି ବୋଲି
ନିଜ ଝଞ୍ଜାଳେ ରହିଛି ଭୁଲି
ତଥାପି ରଖିଛି ବଡ଼ ଆଶା ମୁହିଁ
ନିରାଶ ହେବିନି ପଙ୍କଜ ମୁଖ। ॥୩॥

•••

# କାଳିଆ ଭାବଭୋଳିଆ

କାଳିଆ ! ଭାବ ଭୋଳିଆ
ବେଳ ହେଲା ଆସ ଝୁଲି ଝୁଲି
ଆଜି ଆନନ୍ଦେ ମଗନ ହୋଇ
ନାଚେ ନୀଳସିନ୍ଧୁ ଫୁଲି ଫୁଲି । ॥୦॥

ବଡ଼ ଦାଣ୍ଡେ ଆଜି ଆନନ୍ଦ ଲହରୀ
ବାଜେ ଘଣ୍ଟ, ଘଣ୍ଟା, ମଙ୍ଗଳ ମହୁରୀ
ବଡ଼ଦାଣ୍ଡ ସିନା ଫାଟି ପଡୁଅଛି
(ହେଲେ) ନନ୍ଦିଘୋଷ ଅଛି ଖାଲି । ॥୧॥

ଇନ୍ଦ୍ର, ବ୍ରହ୍ମା ଆଉ ସପ୍ତଋଷିଗଣ
ରଥ ପରେ ରହି ଆନନ୍ଦେ ମଗନ
ପ୍ରତିହାରୀ ତେଣେ ଡାକ ତ ଦେଲେଣି
(ଆସ) ଆଉ କର ନାହିଁ ଡେ଼ରି । ॥୨॥

ମଣିମା ମଣିମା ପଡୁଅଛି ଡାକ
ଦରଶନ ପାଇଁ ଚାହିଁଛନ୍ତି ଭକ୍ତ
ଭକତ ଆଖିରୁ ଝରେ ଲୁହଧାର
ତୁମରି ଭଜନ ବୋଲି । ॥୩॥

•••

# ଫୁଲ କହୁଛି ମୁଁ

ଫୁଲ କହୁଛି ମୁଁ କାଳିଆ ପାଇଁ
ସିଏ ତ ମୋହର ପରାଣ ସାଇଁ
ଭକତକୁ ହାତ ଯୋଡ଼ିସେ କହୁଛି
(ମତେ) କାଳିଆକୁ ଦେବୁ ନେଇ । ॥୦॥

ପଶୁପାଳକ ସେ ଲାଗି କରିଦେବେ
ମହାବାହୁ ମହାବାହୁରେ
କାଳିଆ ପାଦରେ ଝରି ପଡୁଥିବି
ସଜାଡ଼ି ସେ ଦେଉଦେଉରେ ।
ଜୀବନର ମୂଳ ମିଳିଯିବ ମତେ
ଶ୍ରୀଚରଣ ଦେଲେ ଛୁଇଁ । ॥୧॥

ବନଫୁଲ ହୋଇ ଫୁଟିଥିଲି ମୁହିଁ
ଯମୁନାର କୂଳେ କୂଳେ
ଫୁଲରସିଆ ସେ ମନ ମୋହିନେଲା
ମୁରଲୀର ତାଳେ ତାଳେ
ଏବେ ନୀଳାଚଳେ ମଉନେ ବସିଛି
ଜଗତର ନାଥ ହୋଇ । ॥୨॥

●●●

# ତତେ କିଏ ବା ପାଇଛି ରଥରେ

ତତେ କିଏ ବା ପାଇଛି ରଥରେ
ତତେ କିଏ ବା ପାଇଛି ପଥରେ
ତତେ କିଏ ବା ପାଇଛି ଗୀତିରେ
ତତେ କିଏ ବା ପାଇଛି ପ୍ରୀତିରେ
(ଆରେ) ମୁଁ ତ ବାଉଳା କାହିଁ ପାଇନାହିଁ
ରହି ଏ ସଂସାର ଭିତରେ । ॥୧॥

କିଏ ଦେଲା ଖୁଦଭଜା ବଡ଼ିଆ
ଆଉ କିଏ ଦେଲା ଆଣି ନଡ଼ିଆ
କିଏ ମନର ମମତା ଅଜାଡ଼ି
ହାତେ ରାନ୍ଧି ପରଷିଲା ଖେଚେଡ଼ି
(ଆରେ) ମୁଁ ବଡ଼ଲୋଭୀ କିଛି ଆଣି ନାହିଁ
ଆସି ଅଛି ଖାଲି ହାତରେ । ॥୨॥

କିଏ ଲଗାଇଲା ଚାରୁ ଚନ୍ଦନ
କିଏ ସଜାଇଲା ସଜ ସୁମନ
କିଏ ବଜାଇଲା ଶଙ୍ଖ ମହୁରୀ
କିଏ ଜାଳିଲା ଜାଗର ଦୀପାଳି
(ଆରେ) ମୁଁ ବେରସିକ କିଛି ବୁଝିନାହିଁ
କ୍ଷମା ଦେବୁ ଏ ଅନାଥରେ । ॥୩॥

# ତୋ କଳାବଦନ

ତୋ କଳା ବଦନ କଳା ମେଘମାଳା
ମୁଁ ଏକ ଚାତକ ପକ୍ଷୀ
ତୋର ବିନା ମୋର ନାହିଁ ଆନଗତି
ନ ଜାଣୁକି ଚକାଆଖି । ॥୦॥

ଭବ ନଦୀ କୂଳେ ବସିଛି ବିକଳେ
ଶୋଷ ମୋର ଯାଉନାହିଁ
ତୋ କରୁଣା ବିନ୍ଦୁ ଲଭି ଦୟାନିଧି
ତୃପତ ହୋଇବି ମୁହିଁ
କରିବୁନି ପର ଏତିକି ମାଗୁଛି
ତୋର ପାଦେ ହାତରଖି । ॥୧॥

ତୁ ଯେ ମୋର ରାଜା ହୃଦୟର ସ୍ୱାମୀ
ତୁ ମୋ ରାଜରାଜେଶ୍ୱର
ତୋ ପାଦତଳର କିଣାକିଙ୍କର ମୁଁ
ପୂରୁ ମୋର ଭିକ୍ଷାଥାଳ
ମୋ ଜୀବ ଜୀବନ ମୋ ରଙ୍କ ରତନ
ଦୁଃଖର ସୁଖର ସାକ୍ଷୀ । ॥୨॥

# ତୁମେ ଫୁଲ କେଶରରେ ମଧୁ

ତୁମେ ଫୁଲ କେଶରରେ ମଧୁ
କେଉଁ ନାମ ଧରି ଡାକିବି ତୁମକୁ
ତୁମେ ମୋ ପରାଣ ବନ୍ଧୁ । ॥୦॥

ନାଉରିଆ ହୋଇ ପାରି କରିଦିଅ
ତମେ ପରା ଭବସିନ୍ଧୁ
ଯିଏ ଯାହା ଦେଲା ମନା କରନାହିଁ
ହସ ଖାଲି ମୃଦୁମୃଦୁ
ଏଣିକି ଚାହିଁଲେ ତେଣେ ଦିଶୁଥାଅ
କେତେବେଳେ ତୁମେ କେଉଁ ରୂପ ନିଅ
ପ୍ରୀତିର ପୂର୍ଣ୍ଣିମା ଇନ୍ଦୁ । ॥୧॥

ଭଲପାଅ ତୁମେ ସଭିଙ୍କୁ ସମାନ
ସବୁ ସରଜନା ତମ
ତୁମରି ମହିମା କି ବୁଝିବି ପ୍ରଭୁ
କାହିଁ ମୋର ଏଡ଼େ ମନ ।
ଯାହା ମୋର ଅଛି ସବୁ ତୁମ ଦାନ
ତୁମେ ମହାଦାନୀ ହେ ମହାମହିମ
ତୁମେ ତ କରୁଣାସିନ୍ଧୁ ! ॥୨॥

❀❀❀

# ତୁମଯଶ ଗୀତି

ତୁମ ଯଶଗୀତି ଗାଇବା ପାଇଁକି
 ମୋ ପାଖରେ ଭାଷା ନାହିଁ
ତୁମ ରୂପ ସୁଧା ପିଇବା ପାଇଁକି
 ମୋ ଆଖିରେ ବଳ ନାହିଁ । ॥୦॥

ଶୁଣିବାକୁ ତୁମ ସୁଧାମୟ ସୁର
ସମରଥ ନୁହେଁ ଏକ କାନ ମୋର
ତୁମରି କରୁଣା ବୁଝିବା ପାଇଁ କି
 ମନେ ମୋ ଭକତି ନାହିଁ । ॥୧॥

ତୁମ ତୀର୍ଥ ଭାବି ଚାଲିବାକୁ ପଥ
ମୋ ପାଦରେ ନାହିଁ ଶକତି ବହୁତ
ତୁମ ସେବା ଭାବି କାମ କରିବାକୁ
 ହାତ ମୋର ବୁଝି ନାହିଁ । ॥୨॥

ଆଦେଶ ତୁମର ଜାଣିବା ପାଇଁକି
ମୋ ଅନ୍ତର ନୁହେଁ ସଚେତ ତହିଁକି
କ୍ଷମାକରି ପ୍ରଭୁ ତୁମ ପାଦେ ମୋତେ
 ଚିର ନତ କର ସାଇଁ । ॥୩॥

•••

# ହେ ଦୟାସାଗର

ତୁମ୍ଭ ଚରଣେ ଶରଣ
କୃଷ୍ଣକେଶବ ହରି
କରୁଣାକଟାକ୍ଷେ ଚାହିଁ
ଯାଉଦୁଃଖ ଅପସରି ।୦।

ଆନନ୍ଦର ଅଧୀଶ୍ୱର
ପ୍ରୀତିମୟ ଈଶ୍ୱର
ନବୀନ ନୀରଦ ତନୁ
ପୀତବାସ ସୁନ୍ଦର
ବାଙ୍କ ବାଙ୍କ ଗତି ତୁମ୍ଭ ଆହେ ବାଙ୍କବିହାରୀ ।୧।

ଅଧରେ ମୁରଲୀ ଶୋଭ
ଚରଣରେ ନୂପୁର
ମଥାରେ ଶିଖଣ୍ଡ ଶୋହେ
ଶ୍ରବଣରେ କୁଣ୍ଡଳ
ରୂପଶୋଭ ମନଲୋଭ କରେ ମନ ଚୋରି। ।୨।

ବରଜ ସୁନ୍ଦର ପ୍ରଭୁ
ଦୟାର ସାଗର
କ୍ଷମାମୟ କର କ୍ଷମା
ଅପରାଧ ମୋହର
ତୁମ୍ଭଯଶ ବାନା ଉଡୁ ନିରନ୍ତର ଶ୍ରୀହରି ।୩।

# ମାଟି ମହକ




ଡକ୍ଟର ଶରତ ଚନ୍ଦ୍ର ରଥ

ପ୍ରକାଶ କାଳ : ୧୯୯୭

ପ୍ରଚ୍ଛଦ : ପ୍ରସନ୍ନ ଆଚାର୍ଯ୍ୟ

# ଭାରତ ଭାରତୀ

ଭାରତ ଆକାଶେ ପ୍ରଥମ ସକାଳେ
ସୂର୍ଯ୍ୟ ଆସିବ ଉଇଁ
ବିଜୟ ବାରତା ନେଇ
ଚେତନାର ଗୀତ ଗାଇ ।।୦।।

ବିଞ୍ଚି ବିଞ୍ଚି ଯିବ ଆଶାର କିରଣ
ଆକାଶେ ବତାସେ ଜଳେ
ଘୁଞ୍ଚି ଘୁଞ୍ଚି ଯିବ ହତାଶା ଅନ୍ଧାର
ଦୂରେ ଦୂରେ ବହୁ ଦୂରେ
ମୁକ୍ତ ବିହଙ୍ଗ ଉଡ଼ି ଉଡ଼ି ଯିବ
ବସୁଧାରେ ସୁଧା ଆଣି ବାଢ଼ିଦେବ
ନୂତନ ଜୀବନ ପାଇଁ ।।୧।।

ଅନେକ ହତାଶା ଅନେକ ବେଦନା
ମଳିନତା ଯିବ ଧୋଇ
ଫୁଲର ଫସଲେ ହସି ଉଠିବରେ
ଉଷର ଧୂଷର ଭୂଇଁ,
ମାନବିକତାର ଅଭିଷେକ ପାଇଁ
ମାନବଜାତିର ଜୟଗାନ ଗାଇ
ସ୍ୱର୍ଗ ଆସିବ ନଇଁ ।।୨।।

ପ୍ରତାଚୀ ଗଗନ ହେବ ଆଲୋକିତ
ହେବ ସବୁ ଏକାକାର
ପ୍ରତିଦିନ ହେବ ଜୈତ୍ରଯାତ୍ରାର
ଅନୁପମ ଅନୁକୂଳ
ନୂଆ ଭାବନାର ନୀଳ କଇଁଫୁଲ
ମନ ସରସୀରେ ହେବ ଝଲମଲ
ପ୍ରୀତିରେ ମଗନ ହୋଇ ।।୩।।

●●●

# ମୋ ମାଟି ଏଇ ମାଟି

ଏଇ ମାଟି ମୋର ସରଗରୁ ବଡ଼
ଶିଶୁଶଯ୍ୟା ଏଇ ମୋର ଶୈଶବର
ଅଶେଷ ମମତାମୟୀ
ମୋର ଅଳିଝଳି ଅଛି ସେ ସମ୍ଭାଳି ତୁଳନା ତାହାର ନାହିଁ ॥ ୧ ॥

ଯଉବନେ ମୋର ଏଇ ଫୁଲବନ
ସରି ନୁହେଁ ତାରେ ନନ୍ଦନ କାନନ
ମନ୍ଦମନ୍ଦ ହୋଇ ମଳୟ ବହଇ ମୋ ପାଇଁକି ନିରନ୍ତର ॥ ୨ ॥

ବାରାଣସୀ ଏଇ ମୋର ବାର୍ଦ୍ଧକ୍ୟରେ
ଆଲୋକର ରେଖା ମୁକତି ପଥରେ
ସେନେହ ଯାଏ ବରଷି
ଜୀବନ ସଞ୍ଜରେ ଶାନ୍ତି ଧୂପବାସ ଯତନେ ଦିଏ ପରଷି ॥ ୩ ॥

ଶେଷ ସ୍ମୃତି ପାଇଁ ଏ ହେବ ସମାଧି
ରଖିବ ସାଇତି ସ୍ମୃତି ନିରବଧି
ଭାରତ ଜନନୀ ମୋର
ତା'ଚରଣ ତଳେ ପ୍ରଣତି ଢ଼ାଳେ ମୁଁ ଢାଳି ଅଶ୍ରୁ ଦୁଇ ଧାର ॥ ୪ ॥

•••

# ଏଇ ଆମ ଦେଶ

ଆମର ଏଇ ଦେଶ ଆମର ଏଇ ମାଟି
ଚରଣେ ତା'ର ଢ଼ାଳୁ ପ୍ରଣତି ଆମେ କୋଟି
ଭକତି ସଜ ରଜନୀଗନ୍ଧା ଗଜରା ଦେଇ ଭେଟି । ॥ ୦ ॥

ନୂତନ ଦିଗର ସନ୍ଧାନୀ ଆମେ
ନୂତନର ଆଶା ନେଇ
ସବିତାବରଣୀ ଉଷା ଆଗମନୀ
ପଥ ରହି ଅଛୁ ଚାହିଁ
(ପୁଅ) ଜାଗ୍ରତ ଆମେ ଦୀପ୍ତ ପ୍ରହରୀ
(ଝିଅ) ଶାନ୍ତ ସାଗର ସୁନୀଳ ଲହରୀ
ଆମେ ଭରି ଦେବୁ ବିଶ୍ୱପ୍ରାଣରେ ମୈତ୍ରୀ ମମତା ପ୍ରୀତି ॥ ୧ ॥

ସରବେ ରହନ୍ତୁ ସୁଖରେ ଶାନ୍ତିରେ
ଏଇ ଆମ ଅଭିଳାଷ
ମଧୁଭରା ହେଉ ମାନବ ମାନସ
ମମତାର ମଧୁମାସ
(ପୁଅ) ଅନ୍ଧକାର ଯାଉ ଧୀରେ ଅବସରି
(ଝିଅ) ହସୁ ଆକାଶରେ ଶତ ଫୁଲଝରି
ଜଗତ ଜନର କଲ୍ୟାଣ ହେଉ, ଏଇ ତ ଆମର ନୀତି ॥୨॥

●●●

## ଜନମ ଭୂଇଁ

ଜନନୀ ଆମ ଜନମ ଭୂଇଁ
ଏଇ ଯେ ଆମର ଭାରତ ବର୍ଷ
ସରଗଶିରୀ ପଡ଼ଇ ଝରି
ଏ ଦେଶ କୋଳେ ନିଶି ଦିବସ ॥୦॥

ଅନେକ ପ୍ରାନ୍ତରେ ଅନେକ ଭାଷା
କୋଟି କୋଟି ମନେ ଗୋଟିଏ ଆଶା
ଆମେ ଆଣି ଦେବୁ ଆଗାମୀ ଦିନରେ
ନୂଆ ଚେତନାର ଧାରା ପୀୟୂଷ ॥୧॥

ଅନେକ ଚଳଣି ଅନେକ ବିଧି
ଅନେକ ଧର୍ମ ଏକଇ ସିଦ୍ଧି
ଜଗତ ଜନର ଜୀବନ କୁଞ୍ଜେ
ଆମେ ଭରି ଦେବୁ ଫୁଲସୁବାସ ॥୨॥

ଆମ ପାଇଁ ମନ୍ତ୍ର ତା'ଯଶ ଗାନ
ତାର ପାଦ ଧୂଳି ବାସ ଚନ୍ଦନ
ସୁଖେ ଦୁଃଖେ ସାହା ଆମ ମାଟି ମାଆ,
ମାନବିକତାର ଲଳିତ ଭାଷ୍ୟ ॥୩॥

●●●

# ମୋ ଦେଶ

ଗଙ୍ଗା ମୋ ଦେଶେ ଆସିଛି ଓହ୍ଲାଇ
ସରଗ ଭୂବନ ଛାଡ଼ି
କଳପବଟ ସେ ଆସିଛି ଓହ୍ଲାଇ
ନନ୍ଦନବନ ଭୁଲି ॥୦॥

ସଜ ସକାଳରେ ମୋ ଦେଶ କୋଳରେ
ସୁନାର ଲହରୀ ଶୋଭା
ରାଜା ରଜନୀରେ ମୃଦୁ ମୃଦୁ ହସେ
କ୍ଷୀର ସିନ୍ଧୁ ଜିଣାପ୍ରଭା
ଅଳକା ଗରବ ମଉଳି ଝରିବ
ଦେଖି ମୋ ଦେଶର ଶିରୀ ॥୧॥

ଋଷି କୁଳକଣ୍ଠେ ଏ ଦେଶେ ଶୁଭିଛି
ପ୍ରଥମ ପ୍ରଣବ ତାନ
ମଧୁ ମମତାର କରୁଣା ପ୍ରେମର
ମନଲାଖି ଆବାହନ
ପାଦଧୂଳି ତା'ର ସୁବାସ ଚନ୍ଦନ
ଶିରେ ମୁଁ ଦେଉଛି ବୋଳି ॥୨॥

•••

## ପଞ୍ଚଜନ୍ୟ

ଏ ଦେଶେ ବାଜିଛି ଗୁରୁ ଗଉରବେ
ପଞ୍ଚଜନ୍ୟ ଶୁଭଶଙ୍ଖ
ଧର୍ମନୀତିର ଭକ୍ତି ମୁକ୍ତିର
ହୋଇଅଛି ଅଭିଷେକ ॥୦॥

ଜୀବନ ଏଇଠି ଯୋଗର ସାଧନା
ମନ ଏଠି ପୂଜାଫୁଲ
ଏ ମାଟିର ନାହିଁ କଳନା ତୁଳନା
ସିଏ ତା'ର ସମତୁଲ
ଏ ଭାରତ ଭୂଇଁ ଆମର ଜନନୀ
ଜଗତେ ଅଛି ତା ଟେକ ॥୧॥

ମାନବବାଦର ଶୁଭ ନିରାଜନା
ଏଇ ତ ଏ ଦେଶ ନୀତି
ଗଗନ ପବନ କେଦାର କାନନ
ଗାଏ ଅହିଂସାର ଗୀତି
ଏ ଦେଶ କୋଳରେ ଜନମି ପାଇଛି
ମୁହିଁ ତ ସରଗ ସୁଖ ॥୨॥

●●●

# ପ୍ରଣାମ

ଶାନ୍ତି ଅହିଂସା ପ୍ରୀତିର ଝରଣା
ଯେ ଦେଶ ମାଟିରେ ଝରେ
ଏଇ ସେଇ ଦେଶ ଏ ଭାରତ ବର୍ଷ
ତା' ପାଦେ ପ୍ରଣାମ କରେ ॥୦॥

ମୋ ଜନମ ଭୂଇଁ ମୋ କରମ ଭୂଇଁ
ଏଇ ମୋ ସାଧନା ଭୂଇଁ
ଏ ମାଟିରେ ଅଛି କାଉଁରୀ ପରଶ
ତୁଳନା ତାହାର ନାହିଁ
ଏ ଦେଶ ଆଗରେ ସରଗ ସୁଷମା
ମଉଳି ନୀରବେ ଝରେ ॥୧॥

ଜୀବନ ଆମର ସୁରଭିତ ହେଉ
ଆନନ୍ଦେ ମଗନ ହୋଇ
ପ୍ରଗତିର ପଥ ହେଉ କୁସୁମିତ
ଏ ସାରା ଜଗତ ପାଇଁ
ମାନବିକତାର ଅଭିଷେକ ପାଇଁ
ଏ ଦେଶ କାମନା କରେ ॥୨॥

●●●

# ମୋ ଦେଶର ମହିମା

ମୋ ଦେଶର ନଦୀ ଗଙ୍ଗା
ପରବତ ହିମାଳୟ
ତୁଳନା ନାହିଁ ତାହାର
ସବୁ ଏଠି ସୁଧାମୟ ॥୦॥

ମୋ ଦେଶ ପବନ ଆନନ୍ଦେ ମଗନ
ଧିରେ ଧିରେ ଯାଏ ବହି
ନୂଆ ଚେତନାର କେତେ ଯେ ବାରତା
କାନେ କାନେ ଯାଏ କହି
ମୋ ଦେଶ ଆଗରେ ଅଳକା ପୁରୀର
ମୁହଁ ପଡ଼ିଯାଏ ରଙ୍ଗା
ମୋ ଦେଶର ନଦୀ ଗଙ୍ଗା ॥୧॥

ମୋ ଦେଶର ଲତା ସବୁଜ ସୁନ୍ଦର
କଳପ ଲତାର ସମ
ଫୁଲ ମୋ ଦେଶର ପାରିଜାତ ପରା
ମଧୁଭରା ଅନୁପମ
ମାନବିକତାର ମଧୁଲହରୀରେ
ମନ ତୁଠ ପାଏ ଶୋଭା
ମୋ ଦେଶର ନଦୀ ଗଙ୍ଗା ॥୨॥

●●●

# ପ୍ରଣବ ଝଙ୍କାର

ଆର୍ଯ୍ୟ ଋଷିର ଏଇ ଆମ ଦେଶ
ମୁଠାଟିଏ ମାଟି ତୋଳି
ପଚାରିଲେ ତା'ର ଇତିହାସ ତାକୁ
କହିବ ସେ ମନଖୋଲି ॥୦॥

ଜଡ଼ରେ ଏ ଦେଶ ଜୀବନ ଖୋଜିଛି
ବିନ୍ଦୁରେ ଖୋଜିଛି ସିନ୍ଧୁ
ଚେତନା ଦୀପାଳି ଜଳାଇ ଲୋଡ଼ିଛି
ବିଭୂପ୍ରୀତି-ପଦ୍ମ-ମଧୁ
ଶୁଭ ସାଧନାର ସୁର ସଜାଡ଼ିଛି
ପ୍ରଣବ ଝଙ୍କାର ତୋଳି ॥୧॥

ଦିଗ ଦିଗନ୍ତରେ ମାନବିକତାର
ଉଡ଼ାଇ ବିଜୟ ବାନା
ନୂଆ ଚେତନାର ନୂତନ ଆଶାର
କରିଅଛି ନିରାଜନା
ଜଗତ ଜନର ଶୁଭ ମନାସିଛି
ମନରେ ମମତା ଭରି ॥୨॥

●●●

## ସରଗଠୁ ବଡ଼

ଧୂଳି ନୁହେଁ ମାଟି ନୁହେଁ ଜାଗ୍ରତ ଚେତନା ସିଏ
ସରଗରୁ ବଡ଼ ଆମ ଭାରତ ଭୂଇଁ
ମଧୁ ମମତା ବନ୍ଧନ ବାନ୍ଧେ କୋଟି ଜନମନ
ଏ ଦେଶ ଯଶ ଭାଷାରେ ନ ହେବ କହି
ସ୍ନେହ ଭାବ ସୁଧା ଝରଣା
ଝରି ଆସେ ଆମ ଦେଶେ ପରାଣ ଘେନା ॥୧॥

ବହୁ ଭାଷା ବହୁଧର୍ମ ଚଳଣି ସେ ଭିନ୍ନ ଭିନ୍ନ
ଆକୁମାରୀ ହିମାଚଳେ ଦୃଷ୍ଟି ଗୋଚର
କଳା ସାହିତ୍ୟ ସୁନ୍ଦର ଶିଳ୍ପ ଚାତୁରୀ ମଧୁର
ଆନନ୍ଦ ନନ୍ଦନବନ ଦେଶ ଆମର
ଶୁଚିସ୍ମିତ ପ୍ରୀତିର ବାଣୀ
ଗଗନେ ପବନେ ତା'ର ରହିଛି ଭରି ॥୨॥

ସତ୍ୟଶାନ୍ତି ଦୟା କ୍ଷମା ମମତାର ନାହିଁ ସୀମା
ଆମ ଦେଶ ମର୍ମବାଣୀ ପ୍ରାଣଚେତନା
ବିଶ୍ୱ କଲ୍ୟାଣ କାମନା ଭାରତର ନୀତି ସିନା
ତ୍ୟାଗ ତପସ୍ୟାରେ ଆମ ସ୍ୱର୍ଗ ରଚନା
ଆନ ସୁଖେ ଆମେ ତ ସୁଖୀ
ଆନର ଦୁଃଖରେ ହେଉ ନିରତେ ଦୁଃଖୀ ॥୩॥

ଜନନୀ ମହିମାମୟୀ ତା' ସମାନ କେହି ନାହିଁ
ଆଗାମୀ ଦିନରେ ହେବ ଜଗତ ଗୁରୁ
ସରଗର ଶୋଭା ଶିରୀ ଲାଜରେ ଯିବ ମଉଳି
ଏ ଦେଶକୁ ଦେଖି କରି ଅନେକ ଦୂରୁ
ପ୍ରଣାମ ତା ଚରଣେ ତଳେ
କରୁ ଆମେ ଭକ୍ତି ଭରେ ଆନତ ଶିରେ ॥୪॥

•••

# ପବିତ୍ର ଏ ମାଟି

ମୋ ଦେଶ ମାଟିରେ ଝରି ଝରି ଯାଏ
ମାନବିକତାର ଧାରା,
ଜନମାନସର କୁଞ୍ଜେକୁଞ୍ଜେ ଫୁଟେ
ମମତା ମନ୍ଦାର ଝରା ॥୦॥

ଆଶାର ମଳୟ ଆଣେ ପ୍ରାଣେ ଶିହରଣ
ଅନ୍ଧାରରୁ ଆଲୋକକୁ କରେ ନିମନ୍ତ୍ରଣ
ଅମୃତ ସନ୍ଧାନ ପାଇଁ ଆମ ମନେ ଦିଏ ଭରି
ଶତ ଅନୁରାଗ ପରା ॥୧॥

ସାଧନାର ଅଭିଷେକ ହୁଏ ଜୀବନରେ
ଚେତନାର ଶଙ୍ଖବାଜେ ମନ ମନ୍ଦିରରେ
ଆନର କଲ୍ୟାଣ ପାଇଁ ଆମ ମନେମନେ ଥାଏ
ଶୁଭ କାମନା ଅସରା ॥୨॥

ଆମ ପ୍ରାଣ ବିଶ୍ୱପ୍ରାଣେ ହେଉ ସଞ୍ଚରିତ
ଆମମନେ ବିଶ୍ୱମନ ହେଉ ବିକଶିତ
ଏଇ ଅନୁଚିନ୍ତା ଆଜି ଏ ଆମ ବାରତା
ଖେଳି ଯାଉ ବିଶ୍ୱସାରା ॥୩॥

•••

# ଭାରତ ଆକାଶେ

ଭାରତ ଆକାଶେ ନୀଳ ମେଘମାଳା
ଗାଏ ତା'ର ଜୟଗୀତି
ସୁଜଳା ସୁଫଳା ଶସ୍ୟ ଶ୍ୟାମଳା
ଏଇ ଦେଶ ଏଇ ମାଟି ॥୦॥

ବିଭୁ ଚେତନାର ତରଙ୍ଗିଣୀ ଧାରା
ବହିଯାଏ ହସି ଏଇ ଦେଶେ ପରା
ଶାନ୍ତିର କପୋତ ଉଡ଼ି ଉଡ଼ିଯାଏ
ଗାଇ ବିଶ୍ୱ ପ୍ରେମଗୀତି ॥୧॥

ମାନବିକତାର ମଧୁର ପରଶ
ଆଣିଦିଏ କୋଟି ଜନମୁଖେ ହସ
ସରବେ ସମାନ ଏ ଦେଶ ମାଟିରେ
ନାହିଁ ଭେଦାଭେଦ ନୀତି ॥୨॥

ଆହା ଏ ମାଟିର ନାହିଁ ପଟାନ୍ତର
ସରଗ ଶୋଭା କି ମରତେ ଗୋଚର
ଆର୍ଯ୍ୟ ଋଷିର ପାଦ ଧୂଳିପଡ଼ି
ପବିତ୍ର ଏ ଦେଶ ମାଟି ॥୩॥

•••

# ଧନ୍ୟ ଆମେ

ମମତାମୟୀ ଜନନୀ ମୋର
କଲ୍ୟାଣମୟୀ ଦେବି !
ଜୀବନ ଆମର ଧନ୍ୟ ହେଉ
ଚରଣ ତୋର ସେବି ॥୦॥

ସୁଜଳା ସୁଫଳା ଶସ୍ୟ ଶ୍ୟାମଳା
ଲଳିତ ହାସ୍ୟମୟୀ
କାରୁକଳାରେ ବିମଣ୍ଡିତା
ସଂଗୀତ ସୁଧାମୟୀ
ମାନବବାଦର ପୂଜାରିଣୀ ପରା କରୁଣାକୋମଳ ଛବି ॥୧॥

ବନାନୀ ତୋର ଶ୍ୟାମଳ ପାଟ
କୁସୁମ ମଧୁ ହାସ
ଭଅଁର ଆସେ ଭାଟର ବେଶେ
ଗାଇବ ତୋର ଯଶ
ଶିଳାବନ୍ଧୁର ଶେଯରେ ତୋର ଝରଣା ନାଚେ କୁଦି ॥୨॥

ସିନ୍ଧୁ ଧୂଅଇ ଚରଣେ ତଳ
ମଧୁ ଝରାଏ ଜହ୍ନ
ଚାମର ଢ଼ାଳେ ପବନ ଧିରେ
ପୁଲକେ ଭରିମନ
ସରବେ ଏଠି ଭଉଣୀ ଭାଇ ମମତା ପାଶେ ବନ୍ଦୀ ॥୩॥

●●●

# ଏଇ ମାଟି

ଏଇ ଦେଶ ଏଇ ମାଟି
ଆମରି ଜନନୀ
ଚରଣେ ପ୍ରଣାମ ତା'ର
ଦିବସ ରଜନୀ ।।୦।।

ଧୂଳି ବାଲି ପଥରରେ
ଗଢ଼ା ତନୁ ତାହାର
ଦେବୀ ସିଏ ସ୍ନେହମୟୀ
ମମତାର ସାଗର
ତା'ର ମାନ ଯଶ ଆମରି ଜୀବନ, ସେ ଆମ ମଥାର ମଣି ।।୧।।

ତା'ର ପାଣି ପବନରେ
ଭରା ସୁଧା ଝରଣା
ସରଗରୁ ବଡ଼ସିଏ
ନାହିଁ ତା'ର ତୁଳନା
ଯୁଗ ଯୁଗ ଧରି ଜାଳି ଅଛି ସିଏ ଚେତନାର ନୂଆ ରୋଷଣି ।।୨।।

# ଆଶା କିରଣ

ସଭିଙ୍କର ଶୁଭକାମନା
ଆମ ଜୀବନର ବାସନା
ଆମେ ଭାରତୀୟ ଏଇ ପରିଚୟ ଏ ଆମ ମନର ଭାବନା ।।୦।।

ଅନ୍ଧକାରର ସୀମାରେଖା ଡ଼େଇଁ
ଆମେରେ ଆଲୋକ ଯାତ୍ରୀ
ସମତାର ସୁରେ ଆମେ ଗୀତଗାଉ
ଭରି ଅନୁରାଗ ମୈତ୍ରୀ
ସମନ୍ୱୟ ଆମ ପବିତ୍ର ପ୍ରୟାସ
ଯୁଗେ ଯୁଗେ ଆମ ସାଧନା ।।୧।।

ଶାନ୍ତି କପୋତ ଉଡ଼ି ଉଡ଼ି ଯାଏ
ଆମରି ଆକାଶ କୋଳେ
ହତାଶା ଅନ୍ଧାର ଘୁଞ୍ଚି ଘୁଞ୍ଚି ଯାଏ
ଆଶାର କିରଣ ଜାଳେ
ମାନବିକତାର ଲହରୀ ପରଶେ
ମଧୁସିକ୍ତ ଆମ ଚେତନା ।।୨।।

# ମାଗେ ଶୁଭାଶିଷ

ସୁନାର ଭାରତ ବର୍ଷ
ଏଇତ ଆମର ଦେଶ
ମହିମା ଏହାର ଅନନ୍ତ ଅପାର
କଥାରେ ହେବନି ଶେଷ ॥୦॥

ଧ୍ୟାନ ମଗ୍ନ ଏଠି ମାଟି, ଗୋଡ଼ି ପୁଣି
ଝରଣା ନୀଳଆକାଶ
ଏଦେଶେ ରହିଛି ବିଭୁ ଚେତନାର
ସୁଧାଝରା ସ୍ମିତହାସ
କଳା କାରିଗରୀ ବିମଳ ବିଳାସେ
ଝରିଯାଏ ମଧୁହାସ ॥୧॥

ସ୍ନେହ, ମମତାର ଫଗୁଣ ଫୁଲରେ
ମୋ ଦେଶ ମହକି ଉଠେ
ତ୍ୟାଗ, ତପସ୍ୟାର କରୁଣା, କ୍ଷମାର
ମଧୁମନ୍ଦାକିନୀ ଛୁଟେ
ଚରଣରେ ତା'ର
ପ୍ରଣାମ ଢ଼ାଳେ ମୁଁ
ମାଗେ ତା'ର ଶୁଭାଶିଷ ॥୨॥

# ପବିତ୍ର ଭାରତ ଭୂଇଁ

ଏଇ ତ ଆମରି ଦେଶ
ପବିତ୍ର ଭାରତ ଭୂଇଁ
ଦିବ୍ୟ ଚେତନାର ବଇକୁଣ୍ଠପୁର
ଯହିଁ ଆସିଅଛି ନଇଁ ॥୦॥

ଋଷିପାଦରଜେ ପୂତ ଏଇ ମାଟି
ଗଗନେ ପବନେ ପ୍ରଣବର ଗୀତି
ବିଭୁଚେତନାର ନନ୍ଦନ ମନ୍ଦାର
ଫୁଟିଅଛି ଏହି ଭୂଇଁ ॥୧॥

ସୁନ୍ଦର ତାହାର ତରୁଲତାମାଳ
ସୁନ୍ଦର ତା' ନଦୀ ଝରଣା ପାହାଡ଼
ସାଗରରେ ବୀଚି ଯାଏ ନାଚି ନାଚି
ମହିମା ଏହାର ଗାଇ ॥୨॥

ମଧୁର ମମତା ବିଶ୍ୱଜନ ପ୍ରୀତି
କାଳେ କାଳେ ପରା ଏଇ ଦେଶ ନୀତି
ତ୍ରିରଙ୍ଗା ଗାଉଛି ବିଶ୍ୱ ପ୍ରେମ ଗୀତି
ନୀଳ ଗଗନକୁ ଛୁଇଁ ॥୩॥

ଓଁଓଁଓଁ

# ଅଶ୍ରୁଝା ରଣ

ସଜସକାଳର ଶୀତଳ ପବନ
କାହିଁ କେତେ ଦୂରୁ ଆସି
ଭାରତ ଜନନୀ କୀରତି କାହାଣୀ
କହି ଯାଏ ହସି ହସି ॥୦॥

ଦେବ ନିକେତନ ଏଇ ଆମ ମାଟି
ମହିମା ଯାହାର କହି ନୁହଇ ଟି
ଭେଦାଭେଦ ନାହିଁ ସବୁ ଭାଇଭାଇ
ରହୁ ଆମେ ମିଳିମିଶି ॥୧॥

ମାନବିକତାର ମଧୁର ସୁବାସେ
କୋଟି ଜନତାର ମନଫୁଲ ବାସେ
ଶାନ୍ତି କପୋତ ଉଡ଼ି ଉଡ଼ି ଯାଏ
ଢାଳି ଶାନ୍ତି ସୁଧାରାଶି ॥୨॥

ତା'ପାଣି ପବନେ ଗଢ଼ା ଆମ ଦେହ
ଅଭୁଲା ଆଦର ଅଶେଷ ସେନେହ
ତା' ଅଶ୍ରୁଝାରଣେ ରଣୀ ଆମେ ସବୁ
ଯେତେକ ଭାରତବାସୀ ॥୩॥

●●●

# ପ୍ରଣାମ ଚରଣେ

ଏଇ ଦେଶ ମାଟି ସରଗରୁ ବଡ଼
ସୁନ୍ଦର ମଧୁର ତା'ର ଫୁଲ ଫଳ
ପ୍ରଣାମ ମୁଁ ତାକୁ କରେ ॥୦॥

ଦେବଭୂମି ବୋଲି ଦେବତା ଆସନ୍ତି
ସରଗରୁ ଅବତରି
ଅମା ଅନ୍ଧକାରେ ଜଳାଇ ଦିଅନ୍ତି
ଆଲୋକର ଫୁଲଝରି
ମୋ ଦେଶ ପବନ ଗାଉ ଅଛି ଗୀତ
ମଧୁ ମମତାର ସୁରେ
ପ୍ରଣାମ ମୁଁ ତାକୁ କରେ ॥୧॥

କଳକଳ ଗାନେ ଗାଉଅଛି ନଦୀ
କେତେ ଗଉରବ ଗାଥା
ଝରଝର ତାନେ ଝରୁଛି ଝରଣା
ଲଳିତ ଲବଙ୍ଗ ଲତା
ବନ ଉପବନ ମନବିମୋହନ
ମଗନ ଧ୍ୟାନ ଯୋଗରେ
ପ୍ରଣାମ ମୁଁ ତାକୁ କରେ ॥୨॥

ତ୍ରିରଙ୍ଗା ଗାଉଛି ଶାନ୍ତି ମୈତ୍ରୀ ଗୀତି
ନୀଳ ଆକାଶକୁ ଛୁଇଁ
ଏ ସାରା ସଂସାର ଏକ ପରିବାର
ବଡ଼ ସାନ କେହି ନାହିଁ
ଖୋଜିଲେ ବିଶ୍ୱରେ ଏପରି ଦେଶ ତ
ମିଳିବନି କେଉଁଠାରେ
ପ୍ରଣାମ ମୁଁ ତାକୁ କରେ ॥୩॥

•••

## ଦେବନିବାସ

ଧନ୍ୟ ସେହି ଦେଶ ଯହିଁ ଦେଖେ ଋଷି
ସାଧନାରେ ସାରା ବିଶ୍ୱ
କି ଭାଷାରେ ତା'ର ମହିମା ଗାଇବୁ
ଆମେ ତ ଅଜ୍ଞାନ ନିଃସ୍ୱ ॥୦॥

ମମତା ଉଚ୍ଛୁଳା ଗଙ୍ଗାତରଙ୍ଗ
ଧଉତ ଯା'ତନୁ କରେ
ହିମଗିରିମାଳା ହୋଇଅଛି ଯାର
ରଜତ ମୁକୁଟ ଶିରେ ।
ଏଇ ଆମ ଦେଶ ଏ ଭାରତବର୍ଷ
ଦେବତା ଲୀଳା ନିବାସ ॥୧॥

ମୈତ୍ରୀ, ମମତା ବନ୍ଧନେ ବନ୍ଧା
ଆମେ କୋଟି କୋଟି ଜନ
ବିଶ୍ୱ ପ୍ରେମର ଆଲୋକେ ଝଲସି
ପୁଲକିତ ଆମ ମନ
ବିଶ୍ୱ କଲ୍ୟାଣ କାମନା ଆମର
ଜୀବନର ମହାଭାଷ୍ୟ ॥୨॥

ଆନ୍ତରିକତାର ମୋହନ ମାଧୁରୀ
ଏଇ ଦେଶୁ ଝରି ଝରି
ଆଗାମୀ ଦିନରେ ଗଢ଼ି ଦେବ ପରା
ମରତେ ସରଗ ପୁରୀ
ଆମ ଦେଶ ହେବ ଜଗତର ଗୁରୁ
ପାଇବ ଆସନ ଶୀର୍ଷ ॥୩॥

## ସ୍ୱର୍ଗସୁଧା

ଆମେ ଭାରତର ପୁଅଝିଅ
ଆନସୁଖ ଦେଖି ଆମେ ହେଉ ସୁଖୀ
ଆନ ଦୁଃଖେ ଢ଼ାଳୁ ଲୁହ ॥୦॥

ମଧୁ ମମତାର ଚନ୍ଦନ ଗନ୍ଧରେ
ମହକେ ଆମର ମନ
ସରବେ ଆମର ଅତି ଆପଣାର
କେହି ନୁହେଁ ବଡ଼ ସାନ
ସରବେ ରହନ୍ତୁ ସୁଖରେ ଶାନ୍ତିରେ
ଝରୁ ସ୍ୱର୍ଗ ସୁଧା ମରତ ମାଟିରେ
ଅଶାନ୍ତିର ହେଉ କ୍ଷୟ ॥୧॥

ବିଭୁ ଚେତନାର ନୀଳକଇଁ ଫୁଲ
ପାଖୁଡ଼ା ପାଖୁଡ଼ା ମେଲି
ଆମମନେଫୁଟି ବାସ ଯିବ ଛୁଟି
ଚଉଦିଗେ ଝୁଲି ଝୁଲି
ପାହିଯିବ ଅମା ଅନ୍ଧକାର ନିଶା
ଭାରତ ଗଗନେ ଆସି ନବ ଉଷା
ନାଶି ଦେବ ଶୋକ ଭୟ ॥୨॥

ଆମେ ଲେଖିଯିବୁ ନୂଆ ଇତିହାସ
ଏହା ଅଛି ଆମ ମନେ
ବଇରୀକୁ ଆମେ ବନ୍ଧୁ କରିନେବୁ
ଆପଣାର ଭଲ ଗୁଣେ
ଆନନ୍ଦେ ହସିବ ଏ ସାରା ସଂସାର
ସାରା ବିଶ୍ୱ ହେବ ଏକ ପରିବାର
ତୁଟି ଯିବ ଯୁଦ୍ଧ ଭୟ ॥୩॥

●●●

# ମନୋହର

ଯହିଁ ଶିଳ୍ପକଳା ମନୋହର
ଯହିଁ ପଥରରେ ଫୁଟେ ଫୁଲ
କଳା ବିଳାସିନୀ ଉତ୍କଳ ଜନନୀ
ଚରଣେ କୋଟି ଜୁହାର ॥୦॥

ମମତାମୟୀ ସେ କଲ୍ୟାଣମୟୀ ସେ
ସିଏ ତ କରୁଣା ଧାରା
ଶକ୍ତିମୟୀ ଦେବୀ କୀର୍ତ୍ତି କିରୀଟିନୀ
ଉଦୟ ନିର୍ମଳ ତାରା
ଆମ ପୁଣ୍ୟ ଭୂମି ଆମ ଜନ୍ମ ଭୂମି
ଆମ ବଇକୁଣ୍ଠପୁର ॥୧॥

ପ୍ରୀତି ମନ୍ଦାକିନୀ ଜୁଆରେ ପ୍ଲାବିତ
ଆମରି ଜୀବନ ଭୂଇଁ
ନାହିଁ ଭେଦଭାବ ସରବେ ସମାନ
ସରବେ ଭଉଣୀ ଭାଇ
ଜଗତର ନାଥ ପ୍ରଭୁ ଜଗନ୍ନାଥ
ସାହା ଭରସା ଆମର ॥୨॥

•••

# ଉତ୍କଳ ଜନନୀ

ନମୋ ଉତ୍କଳ ଜନନୀ
କୀର୍ତ୍ତି ମାଳିନୀ ଜ୍ୟୋତିର୍ମୟୀ ମା'
ଅଶେଷ ଶକ୍ତି ଶାଳିନୀ ॥୦॥

ସାଗର ଗାଉଛି ତୋର ଜୟ ଗୀତି
ଅବିରାମ ଦିବାନିଶି
ତୋ' ମହିମା ଗାଇ ବନଉପବନେ
କେତେ ଫୁଲ ଫୁଟେ ହସି
ସୁନୀଳ ଆକାଶେ ଭସା ମେଘ ମାଳା
କହେ ତୋ' ଯଶ କାହାଣୀ ॥୧॥

ଚାରୁ କଳାମୟୀ ସ୍ନେହ ପ୍ରଦାୟିନୀ
ନବଉଷା ଆଲୋକର
ପଥର ବୁକୁରେ ତୋହରି ସନ୍ତାନ
ନିହଣେ ଫୁଟାଏ ଫୁଲ
ତୋ ପ୍ରାଣେ ବହଇ ଅହିଂସା ମୈତ୍ରୀ
ମମତାର ସୁରଧୂନୀ ॥୨॥

ବିଭୁ ଚେତନାର ମନ୍ଦାକିନୀ ଧାରା
ତୋ' ସନ୍ତାନ ମନେ ଛୁଟେ ।
ମାନବିକତାର ସୁଲଳିତ ସୁର
ରୂପପାଏ କୋଟି କଣ୍ଠେ
ପ୍ରଣାମ କରୁଛି ଚରଣେ ତୋର ମାଆ
କରି ତୋର ଜୟଧ୍ୱନି ॥୩॥

•••

# ଗା ଭୂଇଁ

ମତେ ଭାରି ଭଲ ଲାଗେ ଆମ ଗାଁ ଭୂଇଁ
ସରାଗ ପରାଗ ରେଣୁ ଝରି ପଡ଼େ ଯହିଁ ॥୦॥

ନାରୀକେଳ କୁଞ୍ଜ ଛୁଇଁ ଧୀର ଧୀର ପବନ
କାନେ ମୋର କହିଯାଏ ତା ମହିମା ଅସୀମ
ମୋ ଜନମ ଭୂଇଁ ସରଗରୁ ବଡ଼
ସରି ତା'ର କେହି ନାହିଁ ॥୧॥

ଦାଣ୍ଡ ଧୂଳି ତା'ର ବାସ ଚନ୍ଦନରୁ ବଳି
ଭାରି ଆପଣାର ଲାଗେ ସେହି ବାଲି ଧୂଳି
ମନେ ହୁଏ ମୋର ଅଳକାପୁରୀର
ରାଜଦାଣ୍ଡ କିବା ସେହି ॥୨॥

ମାଆ ମଣିନାଗ ଦୁର୍ଗା ଚରଣେ ଶରଣ
ବିପଦେ ଆପଦେ ସାହା ଜନନୀ ସମାନ
ସରବେ ରହନ୍ତୁ ସୁଖରେ ଶାନ୍ତିରେ
ତାଙ୍କରି ଆଶିଷ ପାଇ ॥୩॥

(ମୋର ଗାଁ ସାକ୍ଷୀଗୋପାଳ ନିକଟସ୍ଥ
ଶାସନ ଗ୍ରାମ ବୀରରାମଚନ୍ଦ୍ରପୁର ପାଇଁ ବିରଚିତ)

# ଏଇ ମୋର ଗାଁ ମାଟି

ଏଇ ମୋର ଗାଁ ମାଟି ସ୍ନେହମୟୀ ଜନନୀଟି
ଚରଣେ ପ୍ରଣାମ କରେ ଭକତି ଭରେ
ନାହିଁ ତା ମହିମା ସୀମା ଅନୁରାଗେ ଅନୁପମା
ନୟନ ଯାଉଛି ଭିଜି ଆନନ୍ଦନୀରେ
ଗ୍ରାମ ପଥ ଚନ୍ଦନ ରେଣୁ
ପରଶେ ବାଜେ ମନରେ ମୋହନ ବେଣୁ ॥୧॥

ବୃକ୍ଷତାର ମନୋରମ ସବୁ କଳ୍ପବୃକ୍ଷସମ
ପବନ ତା ସୁଖମୟ ବାସ ମଧୁର
ଲତା କୁଞ୍ଜେ କୁଞ୍ଜେ ଫୁଲ ଫୁଟି ଦିଶେ ଝଲମଲ
ସତେ କି ନନ୍ଦନବନ ଝରା ମନ୍ଦାର
ଜଳ ତା'ର ଅମୃତମୟ
ସତେ ଅବା ସଂଜୀବନୀ ସୁଧାନିଳୟ ॥୨॥

ମାଆ ମଣିନାଗ ଦୁର୍ଗା ଅଭୟ ଦାୟିନୀ ଶିବା
ଚରଣେ ପ୍ରଣାମ କରେ ଆନତଶିରେ
ଦୁଃଖେ ସୁଖେ ସିଏ ସାହା କାୟା ପାଖେ ପାଖେ ଛାୟା
ତାଙ୍କ ଆଶିଷ ମାଗେ ମୁଁ ଯୋଡ଼ ହସ୍ତରେ
ଧନ୍ୟ ମୁହିଁ ଜନମି ଏଠି
ସ୍ୱର୍ଗାଦପି ଗରୀୟସୀ ମୋ' ଗାଁ ମାଟି ॥୩॥

❀❀❀

(ମୋ ଗାଁ ବୀରରାମଚନ୍ଦ୍ରପୁର ପାଇଁ ବିରଚିତ)

# ଆରାଧନା




**ଡକ୍ଟର ଶରତ ଚନ୍ଦ୍ର ରଥ**

ଏମ୍.ଏ., ଏମ୍.ଫିଲ୍. ପିଏଚ.ଡ଼ି

ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀବିହାର

**ପ୍ରକାଶ କାଳ : ୧୯୯୮**

**ପ୍ରଚ୍ଛଦ : ବିଭୁ ପ୍ରସୂନ ଦାସ**

# ନିଜକଥା

ଜୀବନରେ ଏକ ଏକ ଦୁର୍ଲ୍ଲଭ ମୁହୂର୍ତ୍ତ ଆସେ, ଯେତେବେଳେ ଲୁହାକୁ ସୁନାରେ ପରିଣତ କରି କବିତ୍ୱ ଅବତରି ଆସେ ଏବଂ ତା'ର ପାଦଚିହ୍ନ ରଖି ସ୍ୱସ୍ଥାନକୁ ଫେରିଯାଏ। ସେହି ପାଦ ଚିହ୍ନ ହିଁ ଚିହ୍ନିତ ହୁଏ କାବ୍ୟ, କବିତା ରୂପରେ। ପ୍ରତ୍ୟେକ ସ୍ରଷ୍ଟା ପାଇଁ ଏପରି ମୁହୂର୍ତ୍ତମାନ ଆସିଥାଏ ଯାହାର ସୁକୁମାର ସ୍ପର୍ଶ ଅନୁଭବ୍ୟ, ମାତ୍ର ଅନିର୍ବଚନୀୟ। ସେତେବେଳେ ମଳିନତାର ସବୁ ବେଢ଼ଣ ଖସିପଡେ, ଅବସାଦର ରାହୁଛାୟା ଅପସରିଯାଏ। ଫୁଟିଯାଏ ପ୍ରାଣ କୁଞ୍ଜରେ ଶରତର ଭୁରୁଭୁରୁ ଗନ୍ଧଭରା ସଜ ଗଙ୍ଗଶିଉଳି ଫୁଲ। ତା ମହକରେ ପୁଲକି ଉଠେ ପରିବେଶ। ସେପରି ଭାବାବେଶ କେତେ ମଧୁମୟ, ଯିଏ ଜାଣେ ସିଏ ଜାଣେ। ତାହା ବୁଝିହୁଏ, ମାତ୍ର ବୁଝାଇହୁଏ ନାହିଁ।

ଆକାଶର ନୀଳିମା, ବନାନୀର ସବୁଜିମା, କେଦାରର ଶ୍ୟାମଳିମା, ଫଗୁଣ ଫୁଲର ମାଧୁରିମା, ସବୁ ମିଶି ଭିନ୍ନ ଏକ ସ୍ଥିତି ସୃଷ୍ଟି କରନ୍ତି, ଯାହା ପାଇଁ ପରିଭାଷା ନାହିଁ। ଏପରି ଏକ ସ୍ଥିତିରେ ଥାଇ ମୋ'ଦ୍ୱାରା ରଚିତ ହୋଇଛି ଏଇ ଭକ୍ତି ଗୀତିକା ଗୁଡ଼ିକ, ଅବଶ୍ୟ ଏଗୁଡ଼ିକ ସେହି ସ୍ଥିତିର ଅନୁପମ ଅନୁଭୂତିର ଛାୟାଛନ୍ନ ଅଭିବ୍ୟକ୍ତି ମାତ୍ର। ଏଥିପୂର୍ବରୁ 'ଧୂପବାସ' ନାମରେ ଆଉ ଏକ ଭକ୍ତି ଗୀତିଗୁଚ୍ଛ ଆତ୍ମପ୍ରକାଶ କରିଛି ଏବଂ ପାଠକ ମହଲରେ ଆଦୃତ ହୋଇଛି। 'ନବଚେତନା' ନାମରେ ଅନ୍ୟ ଏକ ଭକ୍ତି ଗୀତିଗୁଚ୍ଛ ପ୍ରକାଶିତ ହୋଇସାରିଛି। ଦେଶପ୍ରୀତିମୂଳକ କେତେକ ଗୀତିକବିତା 'ମାଟି ମହକ' ନାମରେ ପ୍ରକାଶିତ ହୋଇଛି। ଆଲୋଚ୍ୟ ଭକ୍ତି ଗୀତିଗୁଚ୍ଛର ନାମ ରହିଛି 'ଆରାଧନା'।

ସଙ୍ଗୀତର ଛନ୍ଦମୟ ଓ ମଧୁଗନ୍ଧରେ ସ୍ୱର୍ଗ ନଇଁ ଆସେ ବୋଲି ଶାସ୍ତ୍ର କହେ। ଏହାର ପ୍ରଭାବରେ ହୃଦୟ ତନ୍ତ୍ରୀ ଥରିଯାଏ ଓ ଅନ୍ତରରେ ଭରିଯାଏ ଅସୀମ ପ୍ରୀତିର ପୁଲକ। 'ଆରାଧନା'ରେ ସ୍ଥାନିତ ପ୍ରତ୍ୟେକ ଗୀତିକାରେ ଛନ୍ଦ ବିଳାସ ଓ ସାଙ୍ଗୀତିକତାର ଲଳିତ ସ୍ପର୍ଶ ଯଥାସମ୍ଭବ ସୁରକ୍ଷିତ ହୋଇଥିବାରୁ ପୁସ୍ତକଟି ବିଭିନ୍ନ ମହଲରେ ଆଦୃତ ହେବ ବୋଲି ଆଶା। ଭଜନଗୁଡ଼ିକର ଶବ୍ଦ ଯୋଜନା ଓ ଭାବମାଧୁର୍ଯ୍ୟରେ ମୁଗ୍ଧ ହୋଇ ସେଗୁଡ଼ିକୁ ଏକତ୍ରକରି ପୁସ୍ତକ ଆକାରରେ ପ୍ରକାଶ କରିବାକୁ ପ୍ରେରଣା ଦେଇଥିବାରୁ ଏହି ଅବକାଶରେ ସୁସାହିତ୍ୟିକ ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ, ଶ୍ରୀଯୁକ୍ତ ଭଗବାନ ନାକୟବର୍ମା, ଶ୍ରୀଯୁକ୍ତ ନାରାୟଣ ପ୍ରସାଦ ସିଂହଙ୍କୁ, କୃତଜ୍ଞତା ଜଣାଉଛି।

ପରିଶେଷରେ ପାଠକମାନଙ୍କର ସହୃଦୟତା କାମନା କରି ରହୁଛି।

। ଇତି ।

ବିନୀତ ଲେଖକ

# ତୁମେ କେତେ ମତେ

ତୁମେ କେତେ ମତେ ଦେଇଛ ହେ ପ୍ରଭୁ
ମୁଁ କିଛି ପାରିନି ଦେଇ
କିଛି ଦେବି ବୋଲି ଭାବିଲାବେଳକୁ
ମନ କରେ ନାହିଁ ନାହିଁ ॥୦॥
ମୋ ଜୀବନ ମରୁ ବାଲୁକା ଶେଯରେ
ତୁମେ ଫୁଟାଇଛ ଫୁଲ
ଜାଳି ଦେଇଅଛ ନିରାଶା ଅନ୍ଧାରେ
ଆଶା ଦୀପ ଝଲମଲ ।
ଭାବିଲେ ସେ କଥା ତୁମ ପାଦେ ମଥା
ଆପେ ମୋ ଯାଉଛି ନଇଁ ॥୧॥
ହାତଧରି ମୋର ପାରି କରିଅଛ
କେତେ ଗିରି, ନଦୀ, ବନ,
ଝଡ଼ ବେଳେ ମତେ ଘୋଡାଇ ରଖିଛ
ସତେ କି ଆଦର ଧନ ।
ଝୁଣ୍ଟି ପଡ଼ିଲେ ମୁଁ ଆଉଁସି ଦେଇଛ
କେତେ ଆଶ୍ୱାସନା ଦେଇ ॥୨॥
ଝରିଲେ ଆଖିରୁ ଲୁହ ଧାର ଧାର
ତୁମେ ତ ଦେଇଛ ପୋଛି
କେତେ ଦୋଷ ମୋର ଚଳାଇ ନେଇଛ
ରୋଷ କରିନାହିଁ କିଛି
ପାଖେ ପାଖେ ରହି ସାହା ହୋଇଅଛ
ଅତି ଆପଣାର ହୋଇ ॥୩॥

# ଫୁଲ ତ ତୁମର ଫଳ ତ ତୁମର

ଫୁଲ ତ ତୁମର ଫଳ ତ ତୁମର
ତୁମର ଏ ବନଗିରି
ତୁମରି ଆଦେଶେ ବହଇ ପବନ
ଫୁଲବାସ ସାଥେ ଧରି ॥୦॥

ନୀଳ ଆକାଶରେ ଯେତେକ ତାରକା
ସବୁ ତୁମ ସରଜନା
ସଜ ସକାଳର ଅରୁଣ କିରଣ
କରେ ତୁମ ନିରାଜନା ।
ଶିଶୁର ହସରେ କୁମାରୀ ଲାଜରେ ତୁମେ ଯାଅ ଝରିଝରି ॥୧॥

ମରଣ ସେପାରେ ଚଲାପଥଧାରେ
ତୁମେ ବନ୍ଧୁ ତୁମେ ସଖା
ତୁମ ପାଦତଳେ ମନ ମୋର ରହୁ
ଏତିକି କରୁଛି ଭିକ୍ଷା
ଯାଉ ମୋରଦିନ ହେ ମହାମହିମ ତୁମ ନାମ ମୁଖେ ଧରି ॥୨॥

●●●

# ଯାହା ପାଇଁ ଫୁଟାଫୁଲ

ଯାହାପାଇଁ ଫୁଟାଫୁଲ ବନେ ସଜଫୁଲ
ଧୂପବାସ ଯାହାପାଇଁ ବାସ ସେ ଫୁଲର
ମୁଁ କି ଦେବି ଉପହାର ।
ଯାହା ମୁଁ ଦେଖୁଛି ସବୁ ତ ତାଙ୍କର ସିଏ ରାଜରାଜେଶ୍ୱର ॥୧॥

ନୀଳ ସାଗରର ଲହରୀମାଳାରେ
ତାଙ୍କ ଗୀତି ବାଜେ ଜଳ ତରଙ୍ଗରେ
ଶୀତଳ ପବନ କାନେ କହିଯାଏ କଳନା ନାହିଁ ତାଙ୍କର ।
ମୁଁ କି ଦେବି ଉପହାର ॥୨॥

ଭାସେ ମେଘମାଳା ନୀଳ ଆକାଶରେ
ତାଙ୍କ ଯଶ ଗାଇ ମନ ହରଷରେ
ତାଙ୍କରି କରୁଣା, ଝରଣା ରୂପରେ ଝରିଯାଏ ନିରନ୍ତର
ମୁଁ କି ଦେବି ଉପହାର ॥୩॥

ସିଏତ ସୂରୁଯ ମୁଁ ଯେ ରଶ୍ମିରେଣୁ
ସିଏ ପରବତ ମୁଁ ଯେ ବାଲି ଅଣୁ
ସିଏ ତ ଆଲୋକ ପ୍ରେମର ପୁଲକ ମୁହିଁ ତ ଅଧମ ଛାର
ମୁଁ କି ଦେବି ଉପହାର ॥୪॥

•••

# ତୁମେ ଚନ୍ଦନେ ଦେଲ ଗନ୍ଧ

ତୁମେ ଚନ୍ଦନେ ଦେଲ ଗନ୍ଧ,
ସଜ ଫୁଟା ଫୁଲେ ମିଠାମିଠା ହସ
ମଳୟରେ ମଧୁଛନ୍ଦ ।।୦।।

ଝରଣାରେ ଦେଲ ଝରଝର ତାନ
ତଟିନୀ ଧାରାରେ କଳକଳ ଗାନ,
ବିହଗଗୀତିରେ ସଂଜସକାଳରେ ଝରାଇଲ ମକରନ୍ଦ ।।୧।।

କାନନରେ ଦେଲ ଶ୍ୟାମଳ ସୁଷମା
କେଦାରେ କେଦାରେ ଘନ ସବୁଜିମା
ସୁନୀଳ ସାଗରେ ରଖି ଦେଲ ପ୍ରଭୁ ଲହରୀନଚା ଆନନ୍ଦ ।।୨।।

ଅଳି ମୁଖେ ଦେଲ ଗୁଣୁଗୁଞ୍ଜରଣ
କଳି ମନେ ମନେ ଆଶା ଅକଳନ
ବନଗହନରେ ମୟୂର ପାଦରେ ଭରି ଦେଲ କେତେ ଛନ୍ଦ ।।୩।।

●●●

# ପ୍ରୀତିର କୁସୁମ ଫୁଟାଇ ଦେଇଛ

ପ୍ରୀତିର କୁସୁମ ଫୁଟାଇ ଦେଇଛ
ପ୍ରତି ଜୀବନର ବନାନୀରେ
ଶାନ୍ତିର ଝରଣା ଛୁଟାଇ ଦେଇଛ
ସେଇ ବନାନୀର ଧାରେ ଧାରେ ॥୦॥

ଆନନ୍ଦ ବଂଶୀ ବଜାଇ ଦେଇଛ
ହୃଦୟ କଦମ୍ବ କୁଞ୍ଜକୋଳେ
ମମତାର ଫଗୁ ମାଖି ଦେଇଅଛ
ପରାଣ ଯମୁନା ନୀଳ ଜଳେ ।
ଚିର ବସନ୍ତର ମଳୟ ପରଶ ଦେଇଛ ଭକତ ଅନ୍ତରରେ ॥୧॥

ଆଶା -ଦୀପଶିଖା ଜଳାଇଛ ପ୍ରଭୁ
ମନର ରତନ ବେଦୀପରେ
ହସର ପୀୟୂଷଭରିଅଛ ପ୍ରଭୁ
ସବୁରି ଅଧର ସୁମନରେ
ଶକତି ଦେଇଛ ଚାଲିବାକୁ ପଥ ସଂସାର ଗହନ ବୀଥିଧାରେ ॥୨॥

●●●

# ଅଖିଳ ଜୀବନ ଗଗନ ଦେଶରେ

ଅଖିଳ ଜୀବନ ଗଗନ ଦେଶରେ
ତୁମେ ତ ପୂର୍ଣ୍ଣିମାଇନ୍ଦୁ
ତୁମରି ନୟନେ ବିରାଜିତ ପ୍ରଭୁ
ଶାନ୍ତ ସୁନୀଳ ସିନ୍ଧୁ ।।୦।।

ତୁମରି ଆଦେଶେ ମେଘମାଳା ଭାସେ
ବରଷେ ବରଷାଧାରା
ବନେ ଉପବନେ ପ୍ରତି ପ୍ରଭାତରେ
ଫୁଲ ଫୁଟେ ମଧୁଭରା
ମଣିଷ ମନର କଳୁଷ ଧୂଅଇ
ପ୍ରଭୁତୁମ କୃପାବିନ୍ଦୁ ।।୧।।

ତୁମରି ମହିମା ଗାଆନ୍ତି ବିହଙ୍ଗେ
ଆନନ୍ଦେ ସକାଳେ ସଂଜେ
ଧୀର ପବନରେ ସୁମଧୁର ସୁରେ
ତୁମ ଯଶ ବୀଣାବାଜେ
ଦିଗେ ଦିଗେ ଝରେ ଆଲୋକ ଝରଣା
ଭରି ମନେ ପ୍ରୀତି ମଧୁ ।।୨।।

•••

# ପ୍ରଭୁ ତୁମେ ଆକାଶର

ପ୍ରଭୁ ତୁମେ ଆକାଶର ଶୋଭନ ନୀଳିମା
ସାଗରରେ କୁଞ୍ଜ କୁଞ୍ଜ ବୀଚି ମଧୁରିମା ।
ଅବାରିତ ନଦୀଧାରା ।
ତୁମ ଯଶଗୀତି ଗାଏ ଦିବାରାତି ଅନୁପମା ଅପାଶୋରା ॥୧॥

ଫୁଟାଫୁଲ ପାଖୁଡ଼ାରେ ତୁମେ ମାଦକତା
ପରାଣେ ପରାଣେ ତୁମେ ପ୍ରୀତି ପ୍ରବଣତା
ତୁମେ ଅଳିର ଗୁଞ୍ଜନ
ପ୍ରତି ପ୍ରଭାତରେ ପ୍ରାଚୀ ଧାରେଧାରେ ଲେଖା ଅରୁଣ କିରଣ ॥୨॥

ଝରା ଶିଶିରରେ ଶତ ଇନ୍ଦ୍ରଧନୁ ତୁମେ
କୋକିଳର ମଧୁଗୀତି କାନନ ବିତାନେ
ଗୋଧୂଳି ମଉଳାହସ
ରାକାରଜନୀରେ ଜୋଛନା ଜୁଆରେ ସୁଷମା ମଧୁବିଳାସ ॥୩॥

ମାନବ ମାନସେ ତୁମେ ଆଶା ପଦ୍ମମଧୁ
ମମତାର ଅଭିଷେକ ଆନନ୍ଦର ସିନ୍ଧୁ
ସୁଲଳିତ ଅନୁଭବ
ଜୀବନେ ଜୀବନେ ସବୁଜ ସପନ ପରିଭାଷା ଅଭିନବ ॥୪॥

•••

# ପଙ୍କ ହେଲି ବୋଲି

ପଙ୍କ ହେଲିବୋଲି ମନେ ଦୁଃଖ ନାହିଁ ମୋର
ମୁହିଁ ପଙ୍କ ବୋଲି ତୁମେ ପଙ୍କଜ ସୁନ୍ଦର ।।୦।।

ମୁଁ ନଥିଲେ ତୁମେ କାହିଁ ରହିବ ହେ ହରି
ଶାମୁକା ହେଲେ ମୁଁ ତୁମେ ମୁକୁତାର ସରି ।
ମୁହିଁ ନଦୀଧାର ତୁମେ ସୁନୀଳ ସାଗର ।।୧।।

ସିଂହ ସିନା ହେବ ତୁମେ ମୁହିଁ ହେଲେ ବନ
ମୁହିଁ ଜୀବ ଅଛି ବୋଲି ତୁମେ ତ ପରମ ।
ମୁହିଁ ତ ନୟନ, ତୁମେ ରେଖା ଆଲୋକର ।।୨।।

ତୁମେ ଚନ୍ଦନ ସୁବାସ ମୁଁ ମନ୍ଦ ସମୀର
ମୁହିଁ ପ୍ରଜା ବୋଲି ତୁମେ ରାଜରାଜେଶ୍ୱର
ମୁଁ ବଇଁଶୀ ତୁମେ ତାର ମନ ଭୁଲା ସୁର ।।୩।।

●●●

# ମୋ ଆଖି ଲୁହରେ

ମୋ ଆଖି ଲୁହରେ ଧୋଇଦେବି ପ୍ରଭୁ
  ତୁମରି ଚରଣକମଳ ଦଳ
ପ୍ରୀତିର କୁସୁମ ଅଞ୍ଜଳିରେ ଭରି
  ପୂଜିବି ମୁଁ ତୁମ ପାଦ ଯୁଗଳ ॥୦॥

ତୁମ ଦରଶନେ ସବୁ ପାପ ଯାଏ ଧୋଇ
  ତୁମ ପରଶରେ ପ୍ରଭୁ ସ୍ୱର୍ଗ ଆସେ ନଇଁ
ମୋ ଦେହ, ପରାଣ, ମନ, ସବୁ ତୁମ ଅବଦାନ
  ସିଏ ତୁମ ପୂଜାର ମନ୍ଦିର ॥୧॥

ଜାଣେନାହିଁ ପ୍ରଭୁ ମୁହିଁ ତୁମ ଆରାଧନା
  କରିବାକୁ ଶିଖିନାହିଁ ତୁମ ଉପାସନା
ତୁମ କାମ ଭାବିସବୁ କରିବାକୁ ନାହିଁ ପ୍ରଭୁ
  ଏତେ ବେଶି ଚେତନା ମୋହର ॥୨॥

ମୁଁ ଯେ ନତ ଦୂବଘାସ ତୁମ ଚଲାପଥେ
  ତୁମେ ଯେ ସାରଥି ପ୍ରଭୁ ମୋ ଜୀବନ ରଥେ
ତୁମେ ମହାମହୀୟାନ, ତୁମେ ଗୁରୁ ଗରୀୟାନ
  ନାହିଁ ପ୍ରଭୁ ତୁଳନା ତୁମର ॥୩॥

●●●

# ମୁଁ ଏକା ତୁମର ବୋଲି

ମୁଁ ଏକାତୁମର ବୋଲି         ଯେବେ ବସିବସି ଭାବେ
ନୟନୁ ଲୋତକ ଯାଏ ଝରି
ତୁମେ ତ ଦୂର ଆକାଶ         ମୁଁ ଏକ ଶିଶିର ବିନ୍ଦୁ
ତୁମେ ମୋର ଆପଣାର ଭାରି ||୦||

ମୁଁ ଯେ ଫୁଲ କଢ଼ି ଥାଏ ଲତା କୁଞ୍ଜେ ରହି
ତୁମେ ତ ମଧୁମଳୟ ତୁମ ପଥ ଚାହିଁ
ତୁମେ ଥରେ ଦେଲେ ଛୁଇଁ     ହରଷମନରେ ମୁହିଁ
ଫୁଟିବି ପାଖୁଡ଼ା ମେଲି ମେଲି ||୧||

ମୁଁ ଯେ ନଦୀଧାରା ଯାଏ ଆଗକୁ ଆଗକୁ
ତୁମେ ତ ନୀଳସାଗର ପାଇବି ତୁମକୁ
ଚଲାପଥେ ବାଧା ଯେତେ       ସବୁ ଦୂର ହେବ ସତେ
ଆଗକୁ ଆଗକୁ ଯିବି ଚାଲି ||୨||

●●●

# ତୁମେ ନିଖିଳ ବନ୍ଦନୀୟ

ତୁମେ ନିଖିଳ ବନ୍ଦନୀୟ
ପ୍ରଭୁ ଶତ ପ୍ରଣିପାତ ନିଅ ।
ତୁମ ଚଲାପଥେ ହାତ ଧରି ମତେ
ଆଗକୁ ଚଲାଇ ନିଅ ॥୦॥

କରୁଣା ତୁମର ହୋଇ ଶତଧାର
ବହିଯାଏ ଦଶଦିଶ
ମହିମା ତୁମର ଅନନ୍ତ ଅପାର
କହି କେ କରିବ ଶେଷ
କେହି ନାହିଁ ଯା'ର ତୁମେ ତ ତାହାରେ ଢାଳିଦିଅ ବରାଭୟ ॥୧॥

ଜଗତ ଜଞ୍ଜାଳେ ହତାଶା ଅନ୍ଧାରେ
ତୁମେ ତ ଆଲୋକ ରେଖା
ଜୀବନେ ଜୀବନେ ବିରାଜିତ ତୁମେ
ଅମଳିନ ଦୀପଶିଖା
ତୁମ ଲୀଳା ପ୍ରଭୁ ଗାଇବାକୁ ମୋର ଭାଷା ମାନେ ପରାଜୟ ॥୨॥

ଚରାଚର ପ୍ରଭୁ ତୁମ ସରଜନା
ଭିତରେ ବାହାରେ ତୁମେ
ତୁମେ ତ ସାକାର ତୁମେ ନିରାକାର
ବରଣୀୟ ଭବଭୂମେ
ଶରଣ ମାଗୁଛି ଚରଣକମଳେ ଗାଇ ତୁମ ଜୟ ଜୟ ॥୩॥

●●●

# ଧୂଳିର ଏ ଧରା

ଧୂଳିର ଏ ଧରା ସରଜନା ଯାର
ତା' ଚରଣେ ମୋର କୋଟିଏ ଜୁହାର
କିଏ ଅବା ତୁଳନା ତାହାର ।।୦।।

ଛନ୍ଦ ସେ ଦେଇଛି ଭରି ମଧୁମଳୟରେ
ଗନ୍ଧ ସେ ଦେଇଛି ଭରି ଚାରୁ ଚନ୍ଦନରେ
ଫୁଲରେ ଦେଇଛି ଭରି ସୁବାସ ମଧୁର ।।୧।।

ସରିତରେ ଦେଇଛି ସେ ଗତି ନିରନ୍ତର
ସାଗରେ ଦେଇଛି ରଖି ବୀଚି ମାଳ ମାଳ
ମେଘରେ ଦେଇଛି ଆଙ୍କି ଚପଳାର ଗାର ।।୨।।

ସୂରୁଜରେ ତେଜ ପୁଣି ଜହ୍ନରେ ଜୋଛନା
ବନଲତା କୁଞ୍ଜେ କୁଞ୍ଜେ ସୁଷମା ରଚନା
କଳାର ଠାକୁର ସିଏ ନିଜେ କଳାକାର ।।୩।।

# ତୁମେ ଅଛ ପୂରି

ତୁମେ ଅଛ ପୂରି ଦିଗ ଦିଗନ୍ତରେ
ଗଗନେ ପବନେ ଭୂମେ
ତୁମକୁ ପାଇଲେ ଆଉ କିଛି ନାହିଁ
ପାଇବାକୁ ଏ ଜୀବନେ ॥୦॥

ନବ ଚେତନାର ନାଆରେ ବସାଇ
ସତେ ଯିବ ତୁମେ ସେଇ ନାଆ ବାହି
ସୁବାସ କୁସୁମ ଫୁଟି ବାସୁଥିବ
ମୋହର ଦକ୍ଷିଣ ବାମେ ॥୧॥

କରୁଣା ଶୀତଳ ମଧୁର ପରଶ
ଭରିବ ପରାଣେ ଅଲିଭା ହରଷ ।
ତୁମ ଛବି ମୋର ଆଖିରେ ନାଚିବ
ଯେଣିକି ଚାହିଁଲେ ତେଣେ ॥୨॥

ଜୀବନରେ ଯିବ ପୀୟୂଷ ବରଷି
ତୁମ ମୃଦୁ ହସ ମଧୁରିମା ରାଶି
ମନ ଗହନରେ ମୋହନ ମୁରଲୀ
ବାଜୁଥିବ ନିଶି ଦିନେ ॥୩॥

●●●

# କୁହ ତୁମେ ପ୍ରଭୁ

କୁହ ତୁମେ ପ୍ରଭୁ କେଉଁଠି ରହିଛ
ମୁଁ ତ ଦେଖିପାରୁ ନାହିଁ
ଗାଏ ତୁମ ଗୀତି ଏ ବିଶ୍ୱ ଭାରତୀ
ମୁଁ ତ ଶୁଣିପାରୁ ନାହିଁ ॥୦॥

ରହିଛ କି ତୁମେ ନୀଳ ଆକାଶରେ
ନୀହାରିକା ପୁଞ୍ଜେ ପୁଞ୍ଜେ
ଅବା କି ରହିଛ ଧୂଳି ଧରଣୀର
ଶ୍ୟାମବନ କୁଞ୍ଜେ କୁଞ୍ଜେ
କାହିଁ କେତେଦୂରେ କ୍ଷୀରସାଗରରେ ତୁମେ କି ଯାଇଛ ଶୋଇ ? ॥୧॥

ଦୂର ପରବତ ଶିଖର ଦେଶରେ
ତୁମେ କି ମଉନେ ବସି
ନିଜ ଇଚ୍ଛାମତେ କରୁଅଛ ଅବା
ଭଙ୍ଗାଗଢ଼ା ଦିବାନିଶି
ତୁମେ ତ ଦେଖୁଛ ସଭିଙ୍କୁ ହେ ପ୍ରଭୁ ! ନିଜକୁ ଲୁଚାଇ ଦେଇ ॥୨॥

ଦେଖେ କି ନଦେଖେ ତୁମେ ନୀଳକଇଁ
ସଂସାର ସରସୀ ଜଳେ
ନନ୍ଦନ ମନ୍ଦାର ପରାଏ ସୁନ୍ଦର
ଏ ଜଗତ ବନ କୋଳେ
ତୁମେ ଦିଅ ଆଶା, ଜଗାଅ ଭରସା ତୁମକୁ ଦେଖିବା ପାଇଁ ॥୩॥

●●●

# କେଡେ ସୁନ୍ଦରରେ ଚକାଡୋଳା

କେଡେ ସୁନ୍ଦରରେ ଚକାଡୋଳା କଳାମୁଖ
ଦେଖିଲା ଲୋକର ଆଖି ଲାଖି ଯାଏ
ଦୂର ହୁଏ ମନୁ ଦୁଃଖ ॥୦॥

ବେଶ କି ମଧୁର ହସ କି ମଧୁର
ସିଏ ଏକାତାର ସରି
ମନେ ହୁଏ ମୋର ଆସିଛି ମରତେ
ସତେ କି ସରଗ ଶିରୀ
ରତ୍ନସିଂହାସନେ ବିଜେ ମହାବାହୁ, ଦେଖ ଦେଖ ପ୍ରାଣମିତ ॥୧॥

ଜଗତଜୀବନ କରୁଣାନିଦାନ
ସବୁ ପରା ତାଙ୍କ ଦାନ
ସବୁ ତାଙ୍କ ଲୀଳା ସବୁ ତାଙ୍କ ଖେଳା
ଭକତର ପ୍ରାଣଧନ
ପତିତପାବନ ବାନା ଉଡ଼େ ତାଙ୍କ ହରିବାକୁ ଦୁଃଖୀ ଦୁଃଖ ॥୨॥

ଚଉଦ ଭୁବନ ମନମୋହନ ସେ
ଦୁଃଖରେ ସୁଖରେ ସାହା
ଅଭାବରେ ମାତା ବିପଦରେ ବନ୍ଧୁ
ଜୀବନେ ଆଲୋକ ରାହା
ଲଳିତ ମଞ୍ଜୁଳ କଳାକମଳ ସେ ଏ ସଂସାର ପାପ ପଙ୍କ ॥୩॥

❀❀❀

# ଆସ ମାଆ ଦଶଭୁଜା

ଆସ ମାଆ ଦଶଭୁଜା ଆସ ଏ ମରତେ
ପରିମଳ ଦଶଦିଶ ଏ ଶୁଭ ଶରତେ
ଦିଅ ଶୁଭାଶିଷ ଢାଳି
ପୂଜାଫୁଲ ସାଜି ବନଲତା କୁଞ୍ଜେ
ଫୁଟେ ଫୁଲ ଭଳିଭଳି ॥୦॥

ବହୁଛି ଶୀତଳ ଧୀର ସମୀରଣ
କହୁଛି ମାଆ ଗୋ ତୁମ ଯଶମାନ
ନଦୀରେ ବହୁଛି କାଚକେନ୍ଦୁ ଜଳ
ତୁମ ନାମ ଗାନ କରି ॥୧॥

ନୀଳ ଆକାଶରେ ଧଳା ମେଘ ଭାସେ
ଅଖିଳଧାମର ହସ ରେଖା କିସେ ?
ସବୁଜ କେଦାର, ଶ୍ୟାମଳ ବନାନୀ
ନାଚନ୍ତି ହରଷେ ଝୁଲି ॥୨॥

# ତୁମେ ମୋ ପ୍ରାଣେଶ୍ୱର

ତୁମେ ମୋ ପ୍ରାଣେଶ୍ୱର ମୁଁ ଦୀନହୀନ
ମୋ ଦ୍ୱାରେ ପଡ଼ିବ କି ପାଦନଳିନ ?
ଯେ ପାଦ ଶୋଭା ତିନି ଭୁବନେ ନାହିଁ
ମୋ' ଲୁହଧାରେ ଦେବି ତାକୁ ମୁଁ ଧୋଇ ॥୦॥

ମଣ୍ଡାଇ ଦେବି ପାଦ ସଜ ସୁମନେ
ବସିବି ପାଦ ତଳେ ଆନନ୍ଦ ମନେ
ମନର ଦୁଃଖ ସବୁ କହିବି ମୁହିଁ
ହତାଶା ଅନ୍ଧାର ମୋ ଯିବ ଉଭାଇ ॥୧॥

ଏ ଭବ ମରୁପଥେ ଏକା ପଥିକ
ପାଦରେ ଫୁଟିଯାଏ କଣ୍ଟା ଅନେକ
ଅନ୍ଧାରେ ପଥ ପୁଣି ଦିଶଇ ନାହିଁ
ତୁମ କରୁଣା ଦେବ ଦିଗ ଦେଖାଇ ॥୨॥

ଜୀବନେ ସଞ୍ଜ ଯେବେ ନଇଁବ ଆସି
ତୁମେ ହୋଇବ ପ୍ରଭୁ ପୂର୍ଣ୍ଣିମା ଶଶି
ବିମଳ ସୁଧାଭରା ଚାରୁ କିରଣ
ଢାଳିବ ସେତେବେଳେ, ରହିଲା ରାଣ ॥୩॥

❀❀❀

# ଭିକାରୀ ସାଜି ମୁଁ

ଭିକାରୀ ସାଜି ମୁଁ ଆସିଅଛି ଆଜି
ତୁମେ ରାଜ ରାଜେଶ୍ୱରୀ
କରୁଣାର ଭିକ ମୁଠାଏ ଦିଅ ମାଆ
ପୂରି ଯାଉ ଭିକ୍ଷାଝୁଲି ॥୦॥

ପାରୁ ନାହିଁ ଚାଲି ପାଦଯାଏ ଫୁଲି
ଖରାମାରେ ଚାଇଁ ଚାଇଁ
ବହୁ ଦୂର ବାଟ ଯିବାକୁ ଅଛି ମାଆ
ସାହସ ମୋ ପାଉନାହିଁ,
ମାଆ ତୁମ ଦୟା, ହେଉ ମୋର ସାହା
ନେଉ ମୋତେ ହାତଧରି ॥୧॥

ଦେହରେ ଦିଅ ମା' ଅଶେଷ ଶକତି
ମନରେ ସାହସ ଭରି
ହୃଦୟେ ଭକତି ଅନ୍ତରେ ଆକୂତି
ପରାଣେ ପୁଲକ ଶିରୀ
ଜଗତ ଜନନୀ ଆଶିଷ ଦାୟିନୀ
ମମତାର ଫୁଲଝରି ॥୨॥

ନବଚେତନାର ଶୁଭ ଉଷାଲୋକ
ହସି ଉଠୁ ଜୀବନରେ
ସବୁ ଦୋଷ ମୋର କ୍ଷମା କର ମାଆ
ଏତିକି ମିନତି କରେ।
ଏ ଜୀବନ ହେଉ ତୁମ ପୂଜାପାଇଁ
ନିବେଦିତ ଫୁଲକଢ଼ି ॥୩॥

●●●

# ଧାର ଧାର ଲୁହେ

ଧାର ଧାର ଲୁହେ ପାଦ ତୁମ ଧୋଇ
ପାଦତଳେ ପ୍ରଭୁ ବସିଥିବି ମୁହିଁ
ଧନ, ଜନ, ମାନ, ଯଶ ଗଉରବ
କିଛି ମୋର ଲୋଡା ନାହିଁ ।।୦।।

ଜନମେ ଜନମେ ତୁମେ ମୋର ପ୍ରଭୁ
ରଙ୍କର ରତନ ବିପଦର ବନ୍ଧୁ
ତୁମେ ତ ଆଶାର ମଳୟ ବିଳାସ,
ମୋ ଜୀବନ ମରୁଭୂଇଁ ।।୧।।

ତୁମ ପ୍ରେମ ଆଗେ ସବୁ ରସହୀନ
ତୁମେ ମହାବାହୁ ମହାମହୀୟାନ
ତୁମ ମଧୁହାସେ ଜୀବନ ଆକାଶେ
ଆସିବ ସୂରୁଯ ଉଇଁ ।।୨।।

ଜୀବନେ ଭରିବ କେତେ ନୂଆଭାବ
ମନରେ ଭରିବ ପୁଣ୍ୟ ସଉରଭ
ମୋ ଚେତନା ପ୍ରଭୁ ବିକଶିତ ହେବ
ଛୋଟ ନୀଳକଇଁ ହୋଇ ।।୩।।

❀❀❀

# ପ୍ରଭୁ ତୁମ ପାଦ ତଳେ

ପ୍ରଭୁ ତୁମ ପାଦତଳେ ରହୁ ମୋର ମନ
ଏ ଜୀବନ ତୁମ ପାଇଁ ସୁବାସ ଚନ୍ଦନ
ତୁମେ ଜୀବନର ବନ୍ଧୁ କରୁଣା ସୁନୀଳ ସିନ୍ଧୁ
ମୋ ପ୍ରାଣର ଅଧୀଶ୍ୱର ମୋ' ରଙ୍କ ରତନ ।।୦।।

ଚରାଚରେ ତୁମ ଲୀଳା ତୁମେ ଭବନଦୀ ଭେଳା
ଭରସାର ଧ୍ରୁବତାରା ନିଖିଳ ନିଦାନ ।।୧।।

ବାହାରେ ଭିତରେ ତୁମେ ବିରାଜିତ ସର୍ବଭୂମେ
ତୁମ ମହିମା ଘୋଷଇ ଚଉଦ ଭୁବନ ।।୨।।

ତୁମେ ମୋ ଲାବଣ୍ୟ ନିଧି ତୁମେ ବିଧି ତୁମେ ସିଦ୍ଧି
ଅନ୍ତର ଗହନବନେ ମୁରଲୀର ତାନ ।।୩।।

ତୁମେ ନିରାଶାରେ ଆଶା ତୁମେ ଭାବ ତୁମେ ଭାଷା
ଜୀବନର ଆକାଶରେ ପୂର୍ଣ୍ଣିମାର ଜହ୍ନ ।।୪।।

# ପ୍ରଭୁ ତୁମେ ଜୀବନରେ

ପ୍ରଭୁ ତୁମେ ଜୀବନରେ ଶୁଭ ଅଭିଳାଷ
ଆଶା ପାରିଜାତ ବନେ ମହମହ ବାସ ॥୦॥

ତୁମେ ଆଲୋକର ରେଖା ଅମାଅନ୍ଧକାରେ
ମମତାର ମଧୁ ତୁମେ ମନ ଫୁଲେ ଫୁଲେ
ତୁମ ଚଲାପଥ ଧାରେ ମୁଁ ଯେ ଦୂବ ଘାସ ॥୧॥

ମୁଁ ଯେ ଜଳବିନ୍ଦୁ ତୁମେ ସୁନୀଳ ସାଗର
ତୁମେ ପରବତ ଶିଖା ମୁଁ ଯେ ଧୂଳିଛାର
ତୁମେ ମଧୁମଳୟ ମୁଁ ମୁକୁଳ ବିଳାସ ॥୨॥

ମୁହିଁ ଜୀବ ତୁମେ ପ୍ରଭୁ ପରମ ମହାନ
ତୁମେ ଅନୁଭବ ପୁଣି ତୁମେ ଅନୁମାନ
ମୁଁ ଏକ ଶିଶିର ବିନ୍ଦୁ ତୁମେ ଯେ ଆକାଶ ॥୩॥

# ଶୂନ୍ୟ କଳସ ପୂର୍ଣ୍ଣ କରିଛ

ଶୂନ୍ୟ କଳସ  ପୂର୍ଣ୍ଣ କରିଛ
ପ୍ରୀତିର ପୀୟୂଷ ଢାଳି
କହିବି କିପରି ଦେଲ ନାହିଁ କିଛି
ନିରିମମ ହେଲ ବୋଲି ॥୦॥

ଆଖି ଦେଖେ ତୁମ ସୁଷମା ଅପାର
ରହିଅଛି ଚରାଚରେ
କାନ ଶୁଣେ ତୁମ ଲଳିତ ରାଗିଣୀ
ବାଜୁଅଛି ନୀରବରେ
ମୋ' ଜୀବନ ବନଝରଣା କୂଳରେ
କେତେ ଫୁଲ ହସେ ଝୁଲି ॥୧॥

ହେ ମହାମହିମ !  ତୁମ ଆଦେଶରେ
ସବୁ କିଛି ରୂପ ପାଏ
ତୁମେ ଅଭିନୟ ତୁମେ ଅଭିନେତା
ଆଉ କେହି କିଛି ନୁହେଁ
ମିଛ ବଡ଼ିମାରେ ମଣିଷର ମନ
ତୁଚ୍ଛାରେ ଉଠଇ ଫୁଲି ॥୨॥

❖❖❖

# ତୁମେ ଭକତର ଗଳାହାର

ତୁମେ ଭକତର ଗଳାହାର
ଭକତ ତୁମର  ଅତି ଆପଣାର
ତୁମେ ବୀଣା ସିଏ ତାର ।।୦।।

ଭକତ ଆଖିରୁ   ଝରି ଗଲେ ଲୁହ
ଥରି ଉଠେ ପ୍ରଭୁ   ତୁମରି ହୃଦୟ
ଭକତର ଦୁଃଖ ଦୂର କରିବାକୁ
ହୁଅ ତୁମେ ତତପର ।।୧।।

ଭକତର ଗାଳି   ଫୁଲମାଳି ପରି
ନିଅ ଆଦରରେ   ପ୍ରଭୁ ତୁମେ ତୋଳି
ଭକତବତ୍ସଳ ନାମରେ ତୁମର
ବାନା ଉଡ଼େ ନିରନ୍ତର ।।୨।।

ମଧୁର ମଳୟ   ତୁମେ ବସନ୍ତର
ଫୁଲ କଢ଼ି ପରା   ଭକତ ଅନ୍ତର
ପୂର୍ଣ୍ଣିମାର ଜହ୍ନ, ତୁମେ ଭଗବାନ,
ଭକତ ଚିତ୍ତ ଚକୋର ।।୩।।

●●●

## ସବୁ ତୁମେ ସବୁ ତୁମ ଲୀଳା

ସବୁ ତୁମେ ସବୁତୁମ ଲୀଳାର ବିଳାସ
ତୁମେ ଲୁହ, ତୁମେ ହସ, ଯଶ ଅପଯଶ ॥୦॥

ତୁମେ ତ କରତା ପୁଣି କରମମହାନ
ସବୁତ କରଣି ତୁମ ମହାମହୀୟାନ
ମରତେ ସରଗ ଶିରୀ ତୁମ ଅଭିଳାଷ ॥୧॥

ମନର ଗହନ ବନେ ତୁମେ ସବୁଜିମା
ଜୀବନର ଆକାଶରେ ରୁଚିର ନୀଳିମା
ଆଶାର ପାହାନ୍ତି ତାରା ତୁମ ପରକାଶ ॥୨॥

ମରଣର ସ୍ୱର୍ଗଦ୍ୱାରେ ତୁମେ ଏକାସାଥି
ସଖା ତୁମେ ବନ୍ଧୁ ତୁମେ ଲଳିତ ମୂରତି
ପ୍ରୀତିର ଅଳକନନ୍ଦା ମନ୍ଦାର ସୁବାସ ॥୩॥

କେହି ନାହିଁ ତୁମ ସାଥେ ହୋଇବ ସମାନ
ଅଧିକ ହେବାକୁ ଅବା କେ ହେବ ଭାଜନ
ତୁମେ ଏକା ତୁମ ପରି ଆହେ ଜଗଦୀଶ ॥୪॥

•••

# କାହୁଁ ଆସିଲି ମୁଁ

କାହୁଁ ଆସିଲି ମୁଁ ଯିବି ପୁଣି କାହିଁ
ଗତିପଥ ମୋର ମତେ ଦିଶୁ ନାହିଁ
ମୋହରେ ଯାଉଛି ହଜି
ନିଜକୁ ପାଉନି ଖୋଜି
କରୁଣା କର ହେ କରୁଣାସାଗର !
ପଥଦିଅ ମୋର କହି ॥୦॥

ମୋ ମନର ସିଂହାସନ ପଡ଼ିଛି ମୁକୁଳା
ତୁମେ ହେବ ଅଭିଷିକ୍ତ ତହିଁ ଭାବଭୋଳା
ନିଜକୁ ପାଇବା ହେବ ପ୍ରଭୁ ସହଜ ସରଳ,
ଅନୁକ୍ଷଣ ତୁମ ଯଶ ଗାଇ ॥୧॥

ସଂସାରରେ ରହିହେବ ତୁମରି ସାଧନା
ଜୀବନରେ ପଦେ ପଦେ ତୁମ ନିରାଜନା
ଆନନ୍ଦ-ନନ୍ଦନ-ବାସ ଚହଟିବ ଚଉପାଶ,
ସରଗରୁ ଅଳସେ ଓହ୍ଲାଇ ॥୨॥

ଜୀବନରେ ଭରିଯିବ କେତେ ନୂଆ ଅର୍ଥ
ରୂପାନ୍ତର ପାଇଁ ତାହା ହେବ ପୁଣ୍ୟତୀର୍ଥ
ଶୁଭ ଚେତନାର ରେଖା ଝଲସିବ ଦେଇଦେଖା
ଅନ୍ଧକାର ଯିବ ଦୂର ହୋଇ ॥୩॥

•••

# ଏତିକି ମୋହର

ଏତିକି ମୋହର ତୁମ ପାଦେ ଅଳି
ରଖିବ କରୁଣାମୟ
ମୋ ଜୀବନପଥେ ସାରଥି ହୋଇବ
ଗାଉଥିବି ତୁମ ଜୟ ॥୧॥

ମୋ' ଦେହର ପ୍ରତି ରକ୍ତବିନ୍ଦୁ ପ୍ରଭୁ
ନାଚିବେ ଆନନ୍ଦ ଭୋଳେ
ପ୍ରୀତି ପୁଲକିତ ତୁମରି ପରଶେ
ଗୀତ ଗାଇ ମଧୁ ସୁରେ ॥୨॥

ଚାହାଁଣି ତୁମର ଆହାକି ସୁନ୍ଦର
ଫୁଟୁଥିବ ସଜଫୁଲ
ସରଗ ମାଧୁରୀ ପଡୁଥିବ ଝରି
ସିଏ ଅମୂଲ୍ୟ ଅତୁଲ ॥୩॥

ତୁମ ଧୀର ଧୀର ମଧୁର ଭାଷାରେ
ବାସନ୍ତୀ ପରଶ ଆସି
ମନ ମୋହିନେବ ମାଦକତା ଭରି
ବିଞ୍ଚି ଛଣା ସୁଧା ରାଶି ॥୪॥

ପ୍ରଭୁ ଅନ୍ତର୍ଯ୍ୟାମୀ ମୋ' ହୃଦୟ ସ୍ୱାମୀ
ମୁଁ ଜୀବ ତୁମେ ଜୀବନ
ତୁମ ଭରସାରେ ବିତିଯାଉ ଦିନ
ଏତିକି ମୋ ନିବେଦନ ॥୫॥

•••

# ସଜସକାଳର ତୁମେ

ସଜ ସକାଳର ତୁମେ ଶୁଭ ମଧୁରିମା
ବାରୁଣୀ ଗଗନ ତଟେ ମଉଳା ସୁଷମା
ତପନର ତେଜ ତୁମେ ଜହ୍ନର ଜୋଛନା
ଅନନ୍ତ ଆକାଶ ଦେଶେ ଶୋଭନ ନୀଳିମା ॥୦॥

ତୁମେ ଆଶା ପାରିଜାତ ମାନବ ମାନସେ
ଭରସାର ବତିଘର ଝଡ଼ର ଆକାଶେ
ମମତା ବନ୍ଧନେ ବନ୍ଧା ହୃଦୟର ସୀମା ॥୧॥

ବିଜୟିନୀ ଶକ୍ତି ତୁମେ ଅସୁର ନାଶିନୀ
ମୁକ୍ତକେଶୀ ରଣରଙ୍ଗୀ ଅଟ୍ଟାଟ୍ଟ ହାସିନୀ
କରୁଣାମୟୀଗୋ ଦେବି ! ମୂର୍ତ୍ତିମତୀ କ୍ଷମା ॥୨॥

ସାରଦା ରୂପରେ ଉଭା ମହାସରସ୍ୱତୀ
ଜ୍ଞାନ ରାଜରାଜେଶ୍ୱରୀ ଶାନ୍ତ ମୂରତି
ସବୁଠାରେ ବିରାଜିତା ଅରୂପା ଅସୀମା ॥୩॥

***

# ତୁମର ସୁନ୍ଦର ବେଶ

ତୁମର ସୁନ୍ଦର ବେଶ ଦେଖି ଭକ୍ତ ମନତୋଷ
ନବଘନ ତନୁ କାନ୍ତି ଅଧରେ ମଧୁର ହସ ।।୦।।

ଅନ୍ତରେ ପୂରିତ ତୁମ ପ୍ରୀତିର ପୀୟୂଷ ଧାରା
କରୁଣା ବାରିଧି ହରି ମୋହନ ମୁରଲୀ ଧରା
ଚରାଚର ତୁମଯଶ ଗାଏ ନିଶିଦିବସ ।।୧।।

ମଧୁର ଚାହାଁଣି ତୁମ ବାଙ୍କ ଠାଣିର ବିଳାସ
ଦେଖି ପୂରିଯାଏ ସୁଖେ ଭକତ ମନ କଳସ
ଅଧିମାନସ ଦେବତା ତୁମେ ହୃଷୀକେଶ ।।୨।।

ଆନନ୍ଦର ଅବତାର ପ୍ରଭୁ କୁଞ୍ଜବିହାରୀ
ଭାବ ବିନୋଦିଆ କାହ୍ନା ଲୀଳାନିଧି ଶ୍ରୀହରି
ତୁମଛନ୍ଦା ତରଣରେ ରହୁ ମୋର ମାନସ ।।୩।।

# ଧାରେଧାରେ ଅଶ୍ରୁ

ଧାରେ ଧାରେ ଅଶ୍ରୁ ଝରି ମୋ ନୟନୁ
ଧୂଅନ୍ତା ତୁମ ଚରଣ
ଦିଗେ ଦିଗେ ମତେ ଦିଶନ୍ତା ନିରତେ
ତୁମ ରୂପ ଅନୁପମ ॥୧॥

ମୋ ହୃଦ ଊଷର ମରୁରେ ବହନ୍ତା
ନିର୍ମଳ ନିର୍ଝର ଧାରା
ମୋ ହୃଦ ଗୋଧୂଳି- ଗଗନେ ଫୁଟନ୍ତା
ଉଦୟ ସୁନ୍ଦର ତାରା ॥୨॥

ବାଜନ୍ତା ପରାଣ କୁଞ୍ଜରେ ମୋହର
ତୁମ ବିମୋହନ ବଂଶୀ
ହଜିଯାନ୍ତା ମନୁ ଯେତେକ ଯାତନା
ପ୍ରାତେ ଯେହ୍ନେ ତମରାଶି ॥୩॥
ସେ ସୁରରୁ ଆସି ସଂଜୀବନୀ ସୁଧା
ମରମ ପରଶି ଧିରେ
ବରଷି ଯାଆନ୍ତା ଆନନ୍ଦର ରେଣୁ
ହସି ହସି ନିରନ୍ତରେ ॥୪॥
ତୁମରି ମଧୁର ଚାରୁ ଚାହାଁଣିରେ
ଶରତ ଶେଫାଳି ଫୁଲ
ଚହଲା ଚାନ୍ଦିନୀ ଲଳିତ ପରଶେ
ହସୁଥାନ୍ତା ଝଲମଲ ॥୫॥
ତୁମର ସୁନ୍ଦର ଧୀର ଧୀର ଚାଲି
ମୋହନ୍ତା ମୋର ନୟନ
ପ୍ରଭାସ ପବିତ୍ର ତୀର୍ଥରେ ମୋ ନେତ୍ର
କରନ୍ତା ଅବଗାହନ ॥୬॥
ଚରଣ ନୂପୁର ରୁଣୁଝୁଣୁ ସୁରେ
ଗାଆନ୍ତା ମହିମା ତବ
ମୋ କର୍ଣ୍ଣ ପଥରେ ମଧୁ ବରଷନ୍ତା
ଆଣିଭାବ ଅଭିନବ ॥୭॥

●●●

# ଆସେ ସମୀରଣ

ଆସେ ସମୀରଣ କାହିଁ କେତେ ଦୂରୁ
ତୁମ ଯଶଗୀତି ଗାଇ
ନାହିଁ ମୋର ଏଡ଼େ ମନ ମହାବାହୁ
ସେ ଗୀତ ବୁଝିବା ପାଇଁ ।।୦।।

ମୋ ଚଉପାଶେ ମୋହନ ବିଳାସେ
ରାଜେ ତୁମ ରୂପରେଖା
ଆଖି ତ ଦେଇନ ତୁମେ ମହାବାହୁ
କିପରି ପାଇବି ଦେଖା ?
ସବୁ ସରସତା ମଉଳି ଯାଉଛି ସଂସାର ଜଞ୍ଜାଳେ ରହି ।।୧।।

ତୁମ ଶ୍ରୀଅଙ୍ଗର ମହମହବାସ
ଚଉପାଶେ ଅଛି ରହି
ନାସା ତ ଦେଇନ ତୁମେ ମହାବାହୁ
ସେ ବାସ ବାରିବା ପାଇଁ
ବାଟ ଭୁଲି ଭୁଲି ମିଛେ ବୁଲି ବୁଲି ଥକି ମୁଁ ଗଲିଣି ସାଇଁ ।।୨।।

କାନ ମୋ' ଶୁଣିଛି ସଂସାର ଗହଳି
ତହିଁରେ ହୋଇଛି ବାଇ
ଆଖି ମୋ ଦେଖୁଛି ଖାଲି ମରୀଚିକା
ଜଳବେଣୀ ଦେଖୁନାହିଁ
ନାସା ମୋ ବାରିଛି ନରକର ଗନ୍ଧ, ସୁବାସ ପାଇନି କାହିଁ ।।୩।।

•••

# ଅନେକରେ ଏକ

ଅନେକ ଆଖିରେ　　　ଏକଇ ଆଲୋକ
ଅନେକ ଆଶାରେ　　　ଏକଇ ଝଲକ
ସାରା ମୂଲକର ତୁମେ ତ ମାଲିକ, ତୁମକୁ ପ୍ରଣାମ କରେ ॥୦॥

ବହୁ ଜୀବନର　　　ଏକଇ ପୁଲକ
ବହୁ ନଉକାର　　　ଏକଇ ନାବିକ
ଅନେକ ରଥର, ଏକଇ ସାରଥି, ତୁମକୁ ପ୍ରଣାମ କରେ ॥୧॥

ବହୁ ନାଟକର　　　ଏକଇ ନାୟକ
ଅନେକ ଗୀତର　　　ଏକଇ ଗାୟକ
ଅନେକ ମାଳାର ଏକଇ ମାଣିକ, ତୁମକୁ ପ୍ରଣାମ କରେ ॥୨॥

ଅନେକ ନଦୀର　　　ଏକଇ ସାଗର
ଏକ ଉପବନ　　　ଅନେକ ଫୁଲର
ଅନେକ ତାରର ଏକଇ ଯେ ବୀଣା, ତୁମକୁ ପ୍ରଣାମ କରେ ॥୩॥

# ସିଏ ବିରାଜିତ

ସିଏ ବିରାଜିତ ଗଗନେ ପବନେ
ଭୁବନେ ଭୁବନେ ପରା
ସିଏ ମୋର ସବୁ ମୋ ପରାଣ ପ୍ରଭୁ
ରୂପରେ ଭୁବନ ଭୁଲା ॥୦॥

ଆଖି ଦେଖେ ଯାହା ସବୁ ପରା ଆହା
ତା'ହାତର କାରିଗରୀ
ସିଏତ କରତା ସିଏ ବି କରମ
ସିଏ ଏକା ତାହା ପରି
ସିଏ ତ ଆଲୋକ ସେ ପୁଣି ପୁଲକ,
ସେ ତ ସଂଜୀବନୀ ଧାରା ॥୧॥

ତାଙ୍କ ପ୍ରୀତି ମଧୁ- ଗୁଞ୍ଜରଣ ଗୀତି
ଚରାଚରେ ପଡ଼େ ଝରି
ତାଙ୍କ ମୃଦୁହସ ରସ ମଧୁରିମା
କରି ନିଏ ମନ ଚୋରି
ତାଙ୍କରି ଆଦେଶେ ସବୁରୂପ ପାଏ,
ହସେ ସସାଗରା ଧରା ॥୨॥

●●●

# ମୁଁ କି ହେବି ନାହିଁ ?

ମୁଁ କି ହେବିନାହିଁ ସମରଥ ପ୍ରଭୁ
ତୁମ ଗୁଣ ଗାଇବାକୁ
ନାହିଁ କିବା ମୋର କପାଳେ ଲିଖନ
ତୁମ ପ୍ରେମ ପାଇବାକୁ ॥୦॥

ଗଙ୍ଗାକୂଳେ ବସି ହେଲେ ଚିର ଶୋଷୀ
ବଢ଼ିବ କି ତୁମ ଯଶ
ତୁମ କରେ ଚକ୍ର ଥାଇ କିବା ହେବ
ରାହୁ କଲେ ମତେ ଗ୍ରାସ
ମୁଁ ଯେ ହୀନ-ଶକ୍ତି ନାହିଁ ମୋର ଦୃଷ୍ଟି ତୁମ ରୂପ ଚାହିଁବାକୁ ॥୧॥

ତୁମେ ଦିନମଣି ଥାଉ ଆକାଶରେ
ଘୋଟିବ କି ଅନ୍ଧକାର
ନ ଫୁଟୁଣୁ ପ୍ରଭୁ ଫୁଟନ୍ତ କଳିକା
ଝଡ଼ି କି ପଡ଼ିବ ତଳ
ମିଳିବ ନାହିଁ କି ତୁମ ଭୁଜଛାଇ ମତେ ଟିକେ ରହିବାକୁ ॥୨॥

ଆଶା ହେବ କିବା ଆକାଶ କୁସୁମ
ଚାଲିବାକୁ ତୁମ ବାଟ
ଅବାଟରେ ଯାଇ ପାଦେ କଣ୍ଟା ଫୁଟି
ହେବି କିବା ଛଟ ପଟ
କି ଅବା କୁହୁଡ଼ି ବାଟ ଛାଡ଼ିବନି ଶୁଭସୂର୍ଯ୍ୟ ଉଇଁବାକୁ ॥୩॥

●●●

## ତୁମ ରୂପ

ତୁମ ରୂପ ବିଭା ନ ଦେଖିଲେ ନାହିଁ
ତୁମ ସୁରସୁଧା ନଶୁଣିଲେ ନାହିଁ
ଏତିକି କର ହେ ସାଇଁ
ତୁମେ ଅଛ ବୋଲି ପାଖେ ପାଖେ ମୋର
ମୋ' ଚେତନା ଯାଉ କହି ।।୦।।

ନିରନ୍ତର ମୋର ତୁଣ୍ଡେ ରହିଥାଉ
ତୁମରି ପବିତ୍ର ନାମ
ଅନ୍ତର ଭିତରୁ ଚଳାଇ ନିଅହେ
ପରଶି ଅନନ୍ତ ପ୍ରେମ
ହାତ ମୋର କରୁ ତୁମ ସେବାକାମ
ସଂସାର ଭିତରେ ରହି ।।୧।।

ଏଇ ଜୀବନରେ ଚାଲିବାକୁ ଅଛି
ଯେତେ ଯେତେ ମୋର ପଥ
ପଥ ନୁହେଁ ସେ ତ ପରିକ୍ରମା ହେଉ
ତୁମରି ପବିତ୍ର ତୀର୍ଥ
ମୋ' ଶୟନ ହେଉ ତୁମ ଚରଣରେ
ପ୍ରଣିପାତ ପ୍ରାଣସାଇଁ ।।୨।।

କରୁଣା ତୁମର ରହିଥାଉ ସଦା
ଜୀବନେ ମରଣେ ମୋର
ତୁଟିଯାଉ ମୋର ଦୁଃଖ ଶୋକ ବାଧା
ଅବସାଦ ହାହାକାର
ତୁମ କଥା ଭାବି ମୋ ବେନି ନୟନୁ
ଅଶ୍ରୁଧାର ଯାଉ ବହି ।।୩।।

●●●

# ମୁଁ ଯେ ବିନ୍ଦୁ ତୁମେ ସିନ୍ଧୁ

ମୁଁ ଯେ ବିନ୍ଦୁ ତୁମେ ସିନ୍ଧୁ
ହେ ମଙ୍ଗଳମୟ
ଚରଣ କମଳେ ପ୍ରଭୁ
ମତେ ଠାବ ଦିଅ ।।୦।।

ଚରାଚର ଯାହା ସବୁ ତୁମ ସରଜନା
ଆକାଶେ ବତାସେ ହୁଏ ତୁମ ନିରାଜନା,
ନିରାଶାର ଅନ୍ଧକାରେ ତୁମେ ସୂର୍ଯ୍ୟୋଦୟ ।।୧।।

ଜୀବନେ ମରଣେ ସାଥି ଗୁରୁଗରୀୟାନ
ହେ କରୁଣାମୟ ତୁମେ ମହାମହୀୟାନ
ଭକତ ଭାବରେ ବନ୍ଧା ଚିର ପ୍ରେମମୟ ।।୨।।

ଭାଷାରେ ନ ହେବ କହି ତୁମରି ମହିମା
ତୁମେ ଏକା ତୁମପରି ନାହିଁ ତ ଉପମା
ତୁମେ ରଙ୍ଗ, ରଙ୍ଗମଞ୍ଚ ପୁଣି ଅଭିନୟ ।।୩।।

# ତୁମେ ଅଖିଳର ରାଜେଶ୍ୱର

ତୁମେ ଅଖିଳର ରାଜେଶ୍ୱର
କରୁଣା ତୁମର ଝରିଝରି ଯାଏ
ମରତରେ ନିରନ୍ତର ।।୦।।

ହତାଶାର ଘନ ଅନ୍ଧାରିତ ପଥେ
ତୁମେ ତ ଆଲୋକ ରେଖା
ଜୀବନ କୁଞ୍ଜରେ ଫଗୁଣ ଫୁଲର
ତୁମେ ବାସ ମଧୁମଖା
କଣ୍ଟକିତ ପଥେ କୁସୁମ ବରଷି ହାତ ଧରି ନିଅ ମୋର ।।୧।।

ନାହିଁ ମୋ ଭକତି ଆକୁଳ ଆକୂତି
ତୁମ ସେବାପୂଜାପାଇଁ
ଅଧମ ସନ୍ତାନେ କରିବ କରୁଣା
ଏତିକି ମାଗୁଣି ସାଇଁ
ଆନନ୍ଦର ସୁଧା କଣାଏ ପରଶି ବିଷାଦ କର ମୋ' ଦୂର ।।୨।।

# ଗଗନେ ପବନେ ତୁମ ନିରାଜନା

ଗଗନେ ପବନେ ତୁମ ନିରାଜନା
ଧୂଳିର ଏ ଧରା ତୁମ ସରଜନା
ସବୁଠାରେ ତୁମେ ବିରାଜିତ ପ୍ରଭୁ ନିରନ୍ତର ନିଶିଦିନ ॥୦॥

ଭାବର ଠାକୁର କରୁଣା ସାଗର
ଅଭାବରେ ନାହିଁ ଦେଖା ତ ତୁମର
ପାରି ହେବାପାଇଁ ଭବଘାଟ ସାଇଁ ନାହିଁ ମୋ ଭକତି ଧନ ॥୧॥

ଚରଣ ସେବକ କର ମୋତେ ପ୍ରଭୁ
ପୂରିବ ବାସନା ସେତିକିରେ ସବୁ
ଚାଲି ହେବ ମୋର ତୁମରି ପବିତ୍ର ତୀର୍ଥଭୂମି ପ୍ରଦକ୍ଷିଣ ॥୨॥

ଶରଣ ରକ୍ଷଣ ଅଗତିର ଗତି
ତୁମ ଚରଣରେ ରହୁ ମୋର ମତି
ତୁମରି ମହିମା ଗାଇଗାଇ ହେଉ ଏ ଜୀବନ ଅବସାନ ॥୩॥

# ଭରସା କରିଛି କେତେ

ଭରସା କରିଛି କେତେ
ବରଷିବ ତୁମେ କରୁଣାର ବାରି
ମୋ ଜୀବନ ମରୁ ପଥେ ॥୦॥

ଅଖିଳ ବିଶ୍ୱର ରାଜ-ରାଜେଶ୍ୱର
ଆଦେଶେ ତୁମରି ଚଳେ ଏ ସଂସାର
କପାଳ ଲିଖନ ହୋଇଯାଏ ଆନ
ଦୁଃଖ ଘୁଞ୍ଚିଯାଏ କେତେ ॥୧॥

ଜୀବନେ ମରଣେ ତୁମେ ଏକା ସାଥି
ଗାଇ ତୁମ ନାମ ଯାଉ ଦିନ ବିତି
ବଣା ନାବିକର ତୁମେ ବତିଘର
ଭବସିନ୍ଧୁ ସଇକତେ ॥୨॥

ଦୁଃଖ ବେଦନାର ବିଶଲ୍ୟକରଣୀ
ଜଗତ ଜୀବନ ମୁକତି ସରଣୀ
ତୁମରିକରୁଣା ପୀୟୁଷ ବରଷେ
ଘୋର ସନ୍ତାପିତ ପଥେ ॥୩॥

❀❀❀

# ତୁମର ଦରଶନ

ତୁମ ଦରଶନ ମିଳିବ କି ମତେ
ଗୋଧୂଳି ବେଳାରେ ପ୍ରଭୁ
ଆଉ କିଛି ନାହିଁ ମାଗିବା ପାଇଁ କି
ତୁମେ ତ ଦେଇଛ ସବୁ ॥୦॥
ତୁମରି ଜଗତ ଦେଖିବା ପାଇଁକି
ତୁମେ ତ ଦେଇଛ ଆଖି
ଦେଇଅଛକାନ ଶୁଣିବାକୁ ତୁମ
ଯଶଗାନ ମନଲାଖି
କାହିଁ କେଉଁ ଦେଶେ ହଜିଯାଏ ମନ ତୁମ କଥା ଭାବୁଭାବୁ ॥୧॥

ବେଳେବେଳେ ଲାଗେ ତୁମେ ମୋର ପାଖେ
ବେଳେବେଳେ ଲାଗେ ଦୂରେ
ବେଳେବେଳେ ଶୁଭେ ତୁମ ଧୀର କଥା
କିଛି ମୁଁ ବୁଝି ନପାରେ
ତୁମେ ଅଛ ବୋଲି ଜଗତ ଜୀବନ ଭଲଲାଗେ ମତେ ସବୁ ॥୨॥

ନିଶୀଥଝଡ଼ରେ ଭାଙ୍ଗି ପଡ଼େ ଆହା
କେତେ କେତେ ଗଛ ଡାଳ
ପୁଣି ଆସିଯାଏ ଯଥାସମୟରେ
ପେନ୍ଥାପେନ୍ଥାଫୁଲ ଫଳ।
ନଇଁ ପଡୁଅଛି ତୁମ ପାଦେ ମଥା ଏଇ କଥା ଭାବୁଭାବୁ ॥୩॥

●●●

## ଦୟାକର ଦୟାମୟୀ

ଦୟାକର ଦୟାମୟି ! ଏ ଅଧମ ସନ୍ତାନେ
ଦୋଷା ଦୋଷ କର କ୍ଷମା ଶରଣ ତୋ ଚରଣେ
ବାରେ କର ମା' କରୁଣା   କର୍ମଫଳ ହେଉ ଊଣା
ଶୂନ୍ୟ ଥାଳ ପୂର୍ଣ୍ଣ ହେଉ ସତ୍ୟ, ଶାନ୍ତି ରତନେ ॥୧॥

ମମତାମୟୀ ଜନନୀ  ମାଆ ଅଭୟ ଦାୟିନୀ
ଚଲାପଥେ ହୁଅସାହା କଣ୍ଟକିତ କାନନେ ॥୨॥

ଆଶିଷ ଧାରା ବରଷି  ସରଗସୁଧା ପରଷି
ଶୀତଳ କର ମୋ' ଚିତ୍ତ ଭବ-ଦୁଃଖ ଦହନେ ॥୩॥

ଏତିକି ମୋର ମାଗୁଣି ମାଗୁଅଛି ଯୋଡ଼ି ପାଣି
ଚିତ୍ତ ମୋର ରହୁ ସଦା ତୋ କମଳ ଚରଣେ ॥୪॥

ମୋ' ଶୟନ ହେଉ ମାତ   ତୋ' ଚରଣେ ପ୍ରତିପାତ
ତୋ'ମହିମା ବାଜୁଥାଉ ନିତି ମୋର ଶ୍ରବଣେ ॥୫॥

# ମତେ ଚାହିଁବ କି ପ୍ରଭୁ ଥରେ

ମତେ ଚାହିଁବି କି ପ୍ରଭୁ ଥରେ
ଆଡ଼ ନୟନରେ ଚାହିଁ ଦେଲେ ବାରେ
ଦୁଃଖ ପଳାଇବ ଦୂରେ ॥୦॥

ନାହିଁ ମୋର ଭକ୍ତି ନାହିଁ ମୋର ଶକ୍ତି
ତୁମ ନିରାଜନା ପାଇଁ
ତଥାପି ରଖିଛି ବଡ଼ଆଶା ମୁହିଁ
ନିରାଶ କରିବ ନାହିଁ
ଚରଣ କମଳେ ଶରଣ ଦିଅ ହେ କରୁଣାସାଗର ବାରେ ॥୧॥

ଜୟ ପରାଜୟ ଯାହା ମୋ ଜୀବନେ
ସବୁ ତୁମ କଳପନା
ଚଳାପଥେ ତୁମେ ଭରସା ମୋହର
ନାହିଁ କେହି ତୁମ ବିନା
ଅପରାଧ ସବୁ କ୍ଷମା କର ପ୍ରଭୁ ପାଦ ଧରି ଅଳି କରେ ॥୨॥

# କୃଷ୍ଣ ପ୍ରେମ ଭାରି ମିଠା

କୃଷ୍ଣ ପ୍ରେମ ଭାରି ମିଠା ନାହିଁ ଯେ ତୁଳନା ତାର
ତପୀ, ତାପୀ ତରିଗଲେ କରି ତାକୁ ଗଳାହାର ।।୦।।

ଶୀତଳ ଚନ୍ଦନ ସିଏ ଭବତାପ ପାଇଁକି
ପୀୟୂଷର ଧାରା ସିଏ ମନ ମରୁଭୂଇଁକି
ସିଏ ଶାରଦ ଜୋଛନା, ଜୀବନ ଶେଫାଳି ଫୁଲ ।।୧।।

ପ୍ରୀତିର ପରମଧାମ ସିଏ ଗଗନର ଚାନ୍ଦ
ମୋହନ ବେଣୁରେ ପରା ସିଏ ସୁଲଳିତ ଛନ୍ଦ
ସିଏ ତ ମଧୁ ସପନ ତନ୍ଦ୍ରା ଅଳସ ଆଖିର ।।୨।।

ସିଏ ପରା ମେଘମାଳା ଚାତକର ଆଖିରେ
ଅନ୍ଧର ଲଉଡି ସିଏ ଚଲାପଥେ ସାଥୀରେ
ସବୁ ମିଛ ସିଏ ସତ ମୋହମାୟା ସଂସାର ।।୩।।

# ନିରାଶାରେ ପ୍ରଭୁ ତୁମେ

ନିରାଶାରେ ପ୍ରଭୁ ତୁମେ ଆଶାର ଆଲୋକ
ଜୀବରେ ଜୀବନ ତୁମେ ମନରେ ମମତା ତୁମେ
ପରାଣେ ପରାଣେ ତୁମେ ମନଲାଖି ପୁଲକ ।।୦।।

ଅଭାବରେ ମାତା ତୁମେ ବିପଦରେ ବନ୍ଧୁ
ମୁଁ ଯେ ଏକ ଜଳ ବିନ୍ଦୁ ତୁମେ ନୀଳ ସିନ୍ଧୁ
ତୁମେ ଧ୍ରୁବତାରା ପ୍ରଭୁ ମୁଁ ବଣା ନାବିକ ।।୧।।

ତୁମକୁ ଦେବାକୁ ମୋର ଅଛି କିବା ପ୍ରଭୁ
ଧନ, ମାନ, ଯଶ ଯେତେ ତୁମ ଦାନ ସବୁ
ରାଜା ତୁମେ ପାଳୁଅଛ ଏ ସାରା ମୁଲକ ।।୨।।

ଚରାଚର ଗାଏ ହସି ତୁମ ଜୟ ଜୟ
ତୁମେ ଅଭିନେତା ପୁଣି ତୁମେ ଅଭିନୟ
ତୁମେ ମୋ ପରାଣ ପ୍ରଭୁ ମୁଁ ତୁମ ସେବକ ।।୩।।

## ଯାହା ଅଛି ମୋର ବୋଲି

ଯାହା ଅଛି ମୋର ବୋଲି
ସବୁ ତୁମ ଦାନ ହେ ମହାମହିମ !
ତୁମେ ତାର ଅଧିକାରୀ ॥୦॥

କର ତୁମେ ପ୍ରଭୁ ଯାହା ତୁମ ଇଚ୍ଛା
ଏ ନର ପରାଣେ ପୂରୁ ତମ ବାଞ୍ଛା
ମୋ ଜୀବନ ହେଉ ସୁବାସ-ପଖଳା-
ସୁମନ-ଶୋଭନ ଶିରୀ ॥୧॥

ତୁଣ୍ଡେ ମୋର ଥାଉ ସଦା ତୁମ ନାମ
ହାତେ ମୋର ରହୁ ସଦା ତୁମ କାମ
ମୋ' ଅନ୍ତର ତଳେ ତୁମପାଇଁ ନାଚୁ
ପ୍ରୀତି ସୁନୀଳ ଲହରୀ ॥୨॥

ଭାବି ତୁମ କଥା ଗାଇ ତୁମ ଜୟ
ଆନନ୍ଦରେ ଭରୁ ଏ ମୋର ହୃଦୟ
ଚଲାପଥେ ମୋର ଆସୁ ନୂଆ ଉଷା
ଅନ୍ଧକାର ଯାଉ ଚାଲି ॥୩॥

# ମୋ' ଜୀବନ ହେଉ ପ୍ରଭୁ

ମୋ' ଜୀବନ ହେଉ ପ୍ରଭୁ
ତୁମ ପାଦେ ପୂଜା ଫୁଲ
ସେତିକିରେ ମିଳିଯାଉ
ଜୀବନର ସବୁ ମୂଲ ॥୦॥

ମୋର ବୋଲି ଯାହା ଅଛି
ରଖିବିନି କିଛି ବାଛି
ଭେଟି ଦେବି ପାଦତଳେ
ହଉ ଭଲ ଅବା ଭେଲ ॥୧॥

ତୁମେ କର୍ତ୍ତା ତୁମେ କର୍ମ
ତୁମେ ଧାମ ତୁମେ ଧନ
ସବୁ ତୁମ ଲୀଳା ପ୍ରଭୁ
କରୁଣାର ଅବତାର ॥୨॥

ତୁମ ଇଚ୍ଛା ପାଏ ରୂପ
ତୁମେ ତ ଜଗତ ଭୂପ
ତୁମ ମହିମା ସଂଗୀତ
ଗାଏ ବିଶ୍ୱ ଚରାଚର ॥୩॥

ତୁମେ ନିରାଶାରେ ଆଶା
ମୂକ ମୁଖେ ବହୁଭାଷା
ବିଶ୍ୱ ଜୀବନ ବୀଣାର
ଅନୁପମ ମଧୁ ସୁର ॥୪॥

କରୁଣା ଧାରା ବରଷି
ପୂରାଅ ଚିତ୍ତ କଳସୀ
ତୁଣ୍ଡେ ମୋର ଥାଉ ସଦା
ପବିତ୍ର ନାମ ତୁମର ॥୫॥

●●●

# ଗାଏ ତୁମ ଜୟ ଜୟ

ଗାଏ ତୁମ ଜୟ ଜୟ
ଅଗତିର ଗତି ହେ ପରମ ପ୍ରଭୁ
ଚରଣେ ଶରଣ ଦିଅ ॥୦॥
ଦେବତାରେ ଇନ୍ଦ୍ର ନକ୍ଷତ୍ରରେ ଚନ୍ଦ୍ର
ବେଦରେ ଯେ ସାମବେଦ
ବୃକ୍ଷରେ ଅଶ୍ୱତ୍ଥ ଗଜେ ଐରାବତ
ନର ଲୋକେ ନରାଧିପ
ସରସୀ କୁଳରେ ତୁମେ ତ ସାଗର ପାଣ୍ଡବରେ ଧନଞ୍ଜୟ ॥୧॥

ସ୍ରୋତରେ ଜାହ୍ନବୀ ବୀରେ ଦାଶରଥି
ଋତୁରେ ମଧୁ ବସନ୍ତ
ନାଗରେ ଅନନ୍ତ ସର୍ପରେ ବାସୁକୀ
ଗନ୍ଧର୍ବରେ ଚିତ୍ରରଥ
ମୁନିରେ କପିଳ, ପିତୃରେ ଅର୍ଯ୍ୟମା, ପରବତେ ହିମାଳୟ ॥୨॥

ହତାଶାରେ ଆଶା ତୁମେ ହିଁ ଭରସା
ତୁମେ ତ ଜଗତ ପତି
ଫୁଲରେ ସୁବାସ ସଲିଳରେ ରସ
ଜୀବନେ ଜୀବନେ ପ୍ରୀତି
ଜୀବନେ ମରଣେ ସାହା ହୁଅ ପ୍ରଭୁ ଦିଅ ମତେ ବରାଭୟ ॥୩॥

●●●

# ଚାଲିଚାଲି ବହୁପଥ

ଚାଲିଚାଲି ବହୁପଥ ମୁହିଁ ତ ହୋଇନି କ୍ଳାନ୍ତ
ତଥାପି ପାଇବି ଅଛି ଆଶା
ଚାନ୍ଦିନୀଭିଜା ମଳୟ ଏ ରଜନୀ ମଧୁମୟ
କହେ କେତେ କଥା, ନାହିଁ ଭାଷା ॥୦॥

ନଦ, ନଦୀ, ମରୁବାଲି, କାନନ, କେଦାର ବୁଲି
ଦେଖି କେତେ ଭୀମକାନ୍ତ ଶିରୀ
ତୁମର ସେ ଛବି ଦେଖି ଆଖି ମୋର ଯାଏ ଲାଗି
ନୟନୁ ଲୋତକ ଯାଏ ଝରି ।
ଶୁଭେ ମୁରଲୀର ସୁର, ମୋ ମନ ହୁଏ ଅଧୀର
ଆବାହନ କରେ ନୂଆ ଉଷା ॥୧॥

ଏତିକି ଚାହିଁଲେ ତେଣେ ଦିଶେ କୋଣେ ଅନୁକୋଣେ
ତୁମ ହସ ମନ ନିଏ କିଣି
ସବୁଠାରେ ତୁମଲୀଳା ଅପରୂପ ତୁମ ଖେଳା
ତୁମେ ରଙ୍ଗ, ରଙ୍ଗମଞ୍ଚ ପୁଣି
ତୁମେ ହସ ତୁମେ ଲୁହ, ତୁମେ ମମତାର ସୁଅ
ଅନ୍ଧକାରେ ତୁମେ ନୂଆ ଦିଶା ॥୨॥

ତୁମ ଦୟା ଅନୁପମ ସରଳ ସୁଧା ସୁଷମ
ତୁଳନା ତାହାର ନାହିଁ ନାହିଁ
ବିପଦରେ ପ୍ରାଣ ସଖା ସ୍ୱଇଚ୍ଛାରେ ଦିଅ ଦେଖା
ତୁମ ବିନା ନାହିଁ କେହି ନାହିଁ ।
ତୁମରି ଆଦେଶ ହେଲେ ପଙ୍ଗୁ ଲଙ୍ଘେ ଗିରିବରେ
ମୂକ ମୁଖେ ଫୁଟେ କେତେ ଭାଷା ॥୩॥

# ତୁମ ଚରଣେ ଶରଣ ନେଲି

ତୁମ ଚରଣେ ଶରଣ ନେଲି ଆଜି ମାଆ
ଯାହା କିଛି ତୁମ ଇଚ୍ଛା ତୁମେ କର ତାହା ॥୦॥

କାହିଁ ଯିବି ମୁହିଁ ବଦରିକା ଧାମ
ତୁମ ପାଦତଳେ ମୋ' ଜୀବନ ଧନ୍ୟ
ସଂପଦ ବିପଦ ଯାହା ଆସୁ ସଦା ଜପୁଥିବି ତୁମ ନାଆଁ ॥୧॥

ତୁମ ପାଦ ମୋର ଆଶାର ମିନାର
ଅନ୍ଧାର ଭିତରେ ଆଲୋକର ଧାର
ଅଧମ ସନ୍ତାନ ଜଣେ ମୁଁ ତୁମର କରବାରେ ମତେ ଦୟା ॥୨॥

ତୁମେ ଦୟାମୟୀ ଜଗତ ଜନନୀ
ଦୁଃଖ ଦୂର କର ଦୁଃଖ ବିନାଶିନୀ
ନବଚେତନାର ପରଶରେ ଆସୁ ଜୀବନରେ ନୂଆ ରାହା ॥୩॥

# ତୁମେ ସୁନୀଳ ସାଗର

ଭଗବାନ ତୁମେ ସୁନୀଳ ସାଗର
ମୁଁ ଯେ ଏକ ଜଳବିନ୍ଦୁ
ନାହିଁ ମୋ ଶକତି କରିବି କଳନା
କେଡ଼େ ଗଭୀର ସେ ସିନ୍ଧୁ ॥୦॥

ବୃଥା ବୁଲିବୁଲି ମରୁବାଲି ଚାଲି
ପାଦ ମୋ ଗଲାଣି ଥକି
ଫୁଟି ଅଛି କଣ୍ଟା ପାଦରେ ଅନେକ
ଦିଗ ପାରୁନାହିଁ ଦେଖି
ଏତେବେଳେ ମତେ ସାହାହୁଅ ପ୍ରଭୁ, ବିପଦରେ ହୁଅ ବନ୍ଧୁ ॥୧॥

ଜୀବନରେ ମିଳୁ ତୁମରି ଆଶିଷ
ଆଗକୁ ଚାଲିବା ପାଇଁ
ପାଖୁଡ଼ା ପାଖୁଡ଼ା ମେଲି ଫୁଟି ଯାଉ
ଚେତନାର ନୀଳକଇଁ
ଝରି ଆସୁ ସୁଧା-ଆନନ୍ଦ-ଝରଣା ଭରି ମନେ ପ୍ରୀତିମଧୁ ॥୨॥

# ମୁଁ ଏକା ତୁମର ବୋଲି

ଇନ୍ଦୁରେଖା ତୁମେ ନୀଳ ଗଗନରେ
ବିଜନ ପଥିକ ମୁହିଁ
ତୁମ ଝିଲିମିଲି ଜୋଛନାରେ ଭିଜା
ମୋ' ଜୀବନ ବନଭୂଇଁ ॥୦॥

ଧୀର ପବନରେ ଲତାବିତାନରୁ
ଫୁଲ ବାସ ଆସେ ଭାସି
ଗାଏ ତୁମ ଗୀତି ଏ ବିଶ୍ୱଭାରତୀ
ମଧୁ ଛନ୍ଦେ ମୃଦୁ ହସି
ତୁମେ ତ ପୁଲକ ତୁମେ ତ ଶାନ୍ତି ତୁମ ପରି କେହି ନାହିଁ ॥୧॥

ତୁମେ ମଧୁକାଳ କୋଇଲିର ଗାନ
ଶ୍ରାବଣ ବରଷା ଧାରା
ତୁମେ ସକାଳର ଅରୁଣ କିରଣ
ଗୋଧୂଳି ଗଗନ ତାରା
ଅଗତିର ଗତି ହେ କରୁଣାପତି ଦୟାକର ଦୟାବହି ॥୨॥

# ଅଭାଜନ ମୁଁ କି ?

ଅଭାଜନ ମୁଁ କି ସେବକ ହେବାକୁ
ତୁମର ଚରଣ ତଳେ
ଯେଉଁ ଚରଣରୁ ମନ୍ଦାକିନୀ ଝରେ
ଏ ଧୂଳି ଧରଣୀ ତଳେ ॥୦॥

କରୁଣାର ସେଇ ମନ୍ଦାକିନୀ ଜଳ
ପାନ କରିବାର ପାଇଁ
କେତେ ଜପୀ, ତପୀ, ରୋଗୀ, ବଇରାଗୀ
ଆତୁରେ ଅଛନ୍ତି ଚାହିଁ
ମିଳିବ ନାହିଁ କି ସେଇ ଜଳ ମତେ, ଏଇ ଜୀବନରେ ଥରେ ॥୧॥

ମାନୁଛି ମୁଁ ନୁହେଁ ତୁମରି ଭକତ
ଅବା ସାଧୁ ସନ୍ଥଜନ
ଅଧମ ଅକ୍ଷମ ମୁଁ ତୁମ ସନ୍ତାନ
ଦଳିତ ପତିତ ହୀନ
ତୁମେ ଏକା ଆଶା ତୁମେ ମୋ' ଭରସା ବିପଦ ଆପଦ ବେଳେ ॥୨॥

ତୁମରି ଆଶ୍ରୟ ମୋର ପରିଚୟ
ଜୀବନର ଚଲାପଥେ
ହୁଅ ପ୍ରାଣସଖା ସାରଥି ମୋହର
ଜୀବନ ଜଞ୍ଜାଳ ରଥେ
ଅନାଥର ନାଥ, ଅନାଥରେ ଅନା ଯଶ ରହୁ ମହୀତଳେ ॥୩॥

●●●

# ମାଆ ଆସିଛନ୍ତି

ମାଆ ଆସିଛନ୍ତି ଆଜି ଏ ମାଟିରେ
ଧୀର ପାଦ ଥାପି କଇଁ ଫୁଲେ ଫୁଲେ
ସଜ ଶେଫାଳିର ମଧୁବାସେ ଭିଜା ପବନ ଚାମର ଚାଳେ ॥୦॥

ଦୂର ଆକାଶର ଶୋଭନ ନୀଳିମା
ମାଆଙ୍କ ମହିମା ଗାଏ
ସଞ୍ଜ ସକାଳରେ ବିହଗ ଗାନରେ
ମାଆ ଯଶ ରୂପ ପାଏ
ବନର ଝରଣା ଯାଏ ଝରି ଝରି ମନହରି ମୃଦୁ ସୁରେ ॥୧॥

ନଦୀଜଳ ଧାର ଦରପଣ ହୁଏ
ମାଆଙ୍କର ସେବା ପାଇଁ
କାଶତଣ୍ଡୀ ଫୁଲ ନିଜକୁ ହଜାଇ
ଭକତିରେ ପଡ଼େ ନଇଁ
ଜହ୍ନ ଜୋଛନାରେ ଶୀତଳ ଚନ୍ଦନ ମାଆଙ୍କ ପାଇଁକି ଝରେ ॥୨॥

ପ୍ରୀତି ପୁଲକରେ ଚଉଦିଗ ଭାସେ
ଶୋଭାର ଉପମା ନାହିଁ
ଲାବଣ୍ୟ ଲହରୀ ଲଳିତ ପରଶେ
ହସେ ବନ ଗିରି ଭୂଇଁ
ମାଆ ପାଦତଳେ ଏଇ ଅବସରେ ମୁଁ କୋଟି ଜୁହାର କରେ ॥୩॥

# ଆକାଶ ତୁମର ବତାସ ତୁମର

ଆକାଶ ତୁମର ବତାସ ତୁମର
ତୁମର ଏ ଧରାଧାମ
ଆଲୋକ ତୁମର ଅନ୍ଧାର ତୁମର
ତୁମେ ଯେ ଅମୃତ ପ୍ରେମ ॥୦॥

ସରବେ ତୁମରି ଅତି ଆପଣାର
ଏ ସାରାସଂସାର ତୁମ ଖେଳଘର
ସବୁରି ଜୀବନ ବୀଣା ତାରେ ତୁମେ ମମତା ମଧୁର ଗାନ ॥୧॥

ଏ ସବୁ ସୁଷମା ତୁମ ସରଜନା
ଦିଗ ଦିଗନ୍ତରେ ତୁମ ନିରାଜନା
ତୁମ ମୃଦୁ ହସ ଲଳିତ ପରଶ ବିରାଜିତ ଅନୁକ୍ଷଣ ॥୨॥

ତୁମେ ନିରାଶାରେ ଆଶାର ଝଲକ
ଜୀବନେ ଜୀବନେ ନବୀନ ପୁଲକ
ତୁମ୍ଭଠି ଭାବନା ସବୁ ରୂପ ପାଏ ହୁଏ ନାହିଁ କିଛି ଆନ ॥୩॥

# ତୁମେ ଶଇଶବ ସପନର ହସ

ତୁମେ ଶଇଶବ ସପନର ହସ
ଯଉବନ ଫୁଲହାର
ବାର୍ଦ୍ଧକ୍ୟର ତୁମେ ପୂତ ବାରାଣସୀ
ମରଣର ସ୍ୱର୍ଗଦ୍ୱାର ॥୦॥

ଘନହତାଶାର ଅନ୍ଧକାର ବୁକେ
ତୁମେ ଆଶା ଇନ୍ଦୁରେଖା
ଜୀବନ ରଥରେ ତୁମେ ତ ସାରଥି
ଗୁରୁଗରୀୟାନ ସଖା ।
ଚିତ୍ତ ଚାତକର ମେଘମାଳା ତୁମେ, ନାବିକର ବତିଘର ॥୧॥

ମନ ଗହନରେ ଆନନ୍ଦର ଧାରା
ଅନୁରାଗ ଅନୁପମ
ହୃଦୟ ବୀଥିରେ ପ୍ରୀତି ପ୍ରବଣତା
ଫୁଲକଢ଼ି ମନୋରମ
ଅଖିଳ ବିଶ୍ୱର ରାଜରାଜେଶ୍ୱର ନାହିଁ ତୁଳନା ତୁମର ॥୨॥

●●●

# ତୁମେ ମଉନେ ରହିଛ ବସି

ତୁମେ ମଉନେ ରହିଛ ବସି
ଦେବ ଦେବ ହର ତୁମେ ମହେଶ୍ୱର
ଶିଖରେ ଶୋଭନ ଶଶି ॥୦॥

ଯୋଗୀ ପରେ ଯୋଗୀ ମହାଯୋଗୀ ତୁମେ
ବିଜନ ବିଳାସୀ ଶିବ
ପ୍ରଭୁ ଉମାପତି ଅଗତିର ଗତି
ଆଶୁତୋଷ ମହାଦେବ
ଗଙ୍ଗାଧର ତୁମେ ଜଟାରୁ ତୁମର ଗଙ୍ଗାଧାରା ପଡ଼େ ଖସି ॥୧॥

ବିଷ ପାନକଲ ନୀଳକଣ୍ଠ ହେଲ
ବିପଦୁ ତାରିଲ ମହୀ
ତ୍ରିଶୂଳ ଧାରଣ ଆହେ ପଞ୍ଚାନନ
କଇଳାସପୁର ସାଇଁ
ଅକର୍ମରେ କର୍ମ ତୁମେ ଦିଅ ପରା ନିବାରି ଦୂରିତ ରାଶି ॥୨॥

ମହିମା ତୁମର ଅସୀମ ଅପାର
କିଏ ବା ପାରିବ କହି
ନାହିଁ ମୋର ଜ୍ଞାନ ମୁଁ ଭକତିହୀନ
ତୁମ ପୂଜା ଜାଣି ନାହିଁ
ତୁମ ଚରଣରେ ମନ ରହୁ ମୋର ଅବିରାମ ଦିବା ନିଶି ॥୩॥

•••

# ପ୍ରଭୁ ହେ ! ତୁମ ପାଦ ସୁନ୍ଦର

ପ୍ରଭୁ ହେ, ତୁମ ପାଦ ସୁନ୍ଦର
ନନ୍ଦନକାନନୁ ଆସି କି ବିରାଜେ
ମରତ ଭୁବନେ ମଧୁମନ୍ଦାର ॥୦॥

ତୁମ ପାଦ ଧୂଳି ମିଳେ ଯେବେ ଥରେ
କୋଟି ଜନ୍ମ ପାପ ଯାଏ ଚାଲି ଦୂରେ
ନୂଆ ଚେତନାର ଆଲୋକ ରେଖାରେ ଦୂର ହୁଏ ଅନ୍ଧକାର ॥୧॥

ତୁମ ପାଦ ନାବ ଭବପାରାବାରେ
ଚଲାପଥେ ସାଥି ସୁଖରେ ଦୁଃଖରେ
ତୁମ ନଖଶିରୀ ଦେଖି ଯାଏ ହାରି ଶଶିପ୍ରଭା ପୂର୍ଣ୍ଣିମାର ॥୨॥

ଧୋଇ ଦେବା ପାଇଁ ସେ ପାଦ ଯୁଗଳ
ସମରଥ କିବା ମୋର ଅଶ୍ରୁଜଳ
ଥରେ ତୁମ ପାଦ ଆସି କି ପଡ଼ିବ ବାରି ଅଗଣାରେ ମୋର ? ॥୩॥

# ମାଆ ! ନିଅ ତୁମ ଚଲାପଥେ

ମାଆ, ନିଅ ତୁମ ଚଲାପଥେ
ପଡ଼ିଯିବି ମୋର ପାଦ ଥରଥର
ଧରି ନିଅ ତୁମ ହାତେ ॥୦॥

ସେଇ ପଥ ଧାରେ ଧାରେ ଫୁଟୁଥିବ
ସାତରଙ୍ଗେ କେତେଫୁଲ
ବହୁଥିବ ଧୀର ମଳୟ ସମୀର
ସୁବାସିତ ପରିମଳ
ଗାଉଥିବ ଧିରେ କୋଇଲି ମଧୁରେ ତୁମ ଯଶ ଅବିରତେ ॥୧॥

ଚେତନା ଜୁଆରେ ହସି ଉଠୁଥିବ
ଜୀବନ ବିଜନ ବେଳା
ମଧୁ ମମତାରେ ଭରି ଉଠୁଥିବ
ମନର କଳସୀ ପରା
ତୁମରି ପରଶ ସୁଧା ବରଷିବ ଜୀବନର ମରୁପଥେ ॥୨॥

❀❀❀

# ତୁମେ ଦେଇଅଛ ବୋଲି

ତୁମେ ଦେଇ ଅଛ ବୋଲି
ପାଇଛି ମୁଁ ସବୁ
ତୁମ ପାଦେ ମନ ମୋର
ରହୁ ନାହିଁ ପ୍ରଭୁ ॥୦॥

ସବୁ ତୁମ ଲୀଳା ତୁମେ ଲୀଳାମୟ ହରି
ବୃଥାରେ ମୁଁ କହେ ସବୁ 'ମୋର' 'ମୋର' ବୋଲି
ମୋ' ହୃଦୟ ଅଧୀଶ୍ୱର ମୋର ପ୍ରାଣବନ୍ଧୁ ॥୧॥

ତୁମେ ଫୁଟାଇଛ ଫୁଲ ଲତାବିତାନରେ
ଭରିଛ କେତେ ସୁବାସ ଚାରୁ ଚନ୍ଦନରେ
ଏ ସଂସାର ବୀଚିମାଳା ତୁମେ ନୀଳ ସିନ୍ଧୁ ॥୨॥

ତୁମେ ଦେଇଛ ଆନନ୍ଦ ମାନବ ମାନସେ
ହତାଶା ମରୁରେ ଆଶା ଫୁଲ ଫୁଟି ବାସେ
ଏ ଜୀବନ କୁମୁଦିନୀ ତୁମେ ପୂର୍ଣ୍ଣଇନ୍ଦୁ ॥୩॥

•••

# ମୁଁ ଏକା ତୁମର ବୋଲି

ମାଆ ତୁମେ କର ଦୟା ଏ ଅଧମ ଜନେ
ବାଟବଣା ବାଟୋଇ ମୁଁ କଣ୍ଟକିତ ବନେ ॥୦॥

ସିଧାବାଟକୁ ଛାଡ଼ିଲି ବଙ୍କା ବାଟ ଆଦରିଲି
ପାଦରେ ଫୁଟିଲା କଣ୍ଟା ଘୋର ବ୍ୟଥା ହେଲା ମନେ ॥୧॥

ପଛକୁ ପାରୁନି ଫେରି ଆଗକୁ ପାରୁନି ଚାଲି
ନଇଁ ନଇଁ ଆସେ ସଞ୍ଜ ଆଜି ଏ ବିଜନବନେ ॥୨॥

ଏତେ ବେଳେ ହୁଅ ସାହା କରୁଣାମୟୀ ଗୋ ମାଆ
ଆଉ କେହିନାହିଁ ଭବେ ମୋ ଦୁଃଖ ଶୁଣିବ କାନେ ॥୩॥

ନ କଲେ ତୁମେ କରୁଣା ଦୁଃଖ ହେବ ନାହିଁ ଊଣା
ଯଶ ବାନା ଉଡ଼ିବନି ନିରନ୍ତର ଧରା ଧାମେ ॥୪॥

●●●

# ତୁମେ ଶରତ ଜହ୍ନ

ତୁମେ ଶରତ ଜହ୍ନ ବିମଳ ବିଭା
ତୁମେ ବସନ୍ତ ଫୁଲ ମଞ୍ଜୁଳ ଶୋଭା
ପରାଣ କେସରରେ ପ୍ରୀତି ପୀୟୂଷ
ଭାଷାରେ କେ କହିବ ତୁମରି ଯଶ ॥୧॥

ନୀଳ ସାଗରେ ତୁମେ ଲହରୀମାଳା
ଶ୍ୟାମଳ କେଦାରରେ ସୁଷମା ଖେଳା
ବରଷା ଭିଜା ମାଟି ମଧୁ ମହକ
ମେଘ କୋଳରେ ତୁମେ ବିଦ୍ୟୁ ଝଲକ ॥୨॥

ନରମ ସକାଳର ଶୁଭ ଆଲୋକ
ଅଳି ଗୁଣୁଗୁଞ୍ଜନ ଫୁଲେ ଅନେକ
ସରସୀ ଶୋଭାବନ ଚାରୁକମଳ
ଗଗନ ତଟେ ସନ୍ଧ୍ୟା ତାରା ଉଜ୍ଜ୍ୱଳ ॥୩॥

ମାନସ ହଂସେ ତୁମେ ଶୁଦ୍ଧ ସ୍ୱଭାବ
ଅନ୍ତର ଅନୁକୋଣେ ଲଳିତ ଭାବ
ସୁଖ ଦୁଃଖର ସାଥି ପରାଣ ସଖା
ଜୀବନ ପରପାରେ ଆଲୋକ ରେଖା ॥୪॥

ତୁମେ ସୁନୀଳ ସିନ୍ଧୁ, ମୁଁ ଜଳ ବିନ୍ଦୁ
ମୁଁ ଯେ ଚାନ୍ଦିନୀ ତୁମେ ପୂର୍ଣ୍ଣିମା ଇନ୍ଦୁ
ବନ୍ଦନା କରୁଅଛି ତୁମ ଚରଣ
ଆଶିଷ ମାଗୁଅଛି ମୁଁ ଦୀନ ହୀନ ॥୫॥

# ହୃଦୟର ବ୍ୟଥା

ହୃଦୟର ବ୍ୟଥା କହୁଛି ତୁମକୁ
ତୁମେ ଯେଣୁ ପ୍ରିୟତମ
ଜୀବନର ଚିନ୍ତା ଦେଉଛି ତୁମକୁ
ଘେନାକର ଅନୁପମ ।।୦।।

ନିରାଶାରେ ଆଶା ଝଲସି ଉଠିବ
ତୁମରି କରୁଣା ବଳେ
ଦିଗହରା ମୋର ବୋଇତ ଲାଗିବ
ଆଶାର ଦରିଆ କୂଳେ
କେଉଁ ନାମ ଧରି ଡାକିବି ତୁମକୁ
ତୁମେ ପରା ସର୍ବନାମ ।।୧।।

ତୁମରି ଆଶିଷ ଭରସା ଆଣିବ
ଆଗେଇ ଚାଲିବା ପାଇଁ
ଜୀବନର ମୂଲ ମିଳିବ ସେଦିନ
'ମୁଁ' ଗଲେ ତୁମର ହୋଇ
ଫାଟିଯିବ ମେଘ ଫୁଟିବ ଜୋଛନା
ବରଷି ଅମୃତ ପ୍ରେମ ।।୨।।

•••

# ହତାଶା ଅନ୍ଧାରେ

ହତାଶା ଅନ୍ଧାରେ ତୁମେ ଆଶାରେଖା
ତୁମେ ତ ସୁନୀଳ ସିନ୍ଧୁ
କି ଭାଷାରେ ତୁମ ବନ୍ଦନା ଗାଇବି
ମୁଁ ଯେ ଏକ ଜଳବିନ୍ଦୁ ॥୦॥

ଶତଦଳ ହୋଇ ଫୁଟିପାରି ନାହିଁ
ସଂସାର ସରସୀ ଜଳେ
ଦୀପଟିଏ ହୋଇ ଜଳି ପାରିନାହିଁ
ପ୍ରଭୁ ତୁମ ପାଦ ତଳେ
ମରୁପଥିକ ମୁଁ ବିଷାଦେ ମଳିନ,
ଦିନ ଯାଏ କାନ୍ଦୁ କାନ୍ଦୁ ॥୧॥

ନିଜ ଦୋଷେ ମୁହିଁ ବାଟ ଭୁଲି ଯାଇ
ଅବାଟରେ ଯାଏ ଚାଲି
ଆଗକୁ ପାରୁନି ଚାଲି ମହାପ୍ରଭୁ
ପଛକୁ ପାରୁନି ଫେରି
ନାଗଫେଣି କଣ୍ଟା ପାଦରେ ଫୁଟିଛି
ରକ୍ତଝରେ ବିନ୍ଦୁ ବିନ୍ଦୁ ॥୨॥

●●●

# ସାତରଙ୍ଗ ଫୁଲେ

ସାତରଙ୍ଗ ଫୁଲେ ସୁନ୍ଦର ଟାହିଆ
ନାଚୁଅଛି ଝୁଲି ଝୁଲି
ସିଂହଦୁଆରରେ ସେ ଶୋଭା ଦେଖିଲେ
ମନ ଉଠେ ଫୁଲିଫୁଲି ॥୦॥
ବଡ଼ଦାଣ୍ଡେ ବିଜେ ଜଗତକରତା
ରତ୍ନ ସିଂହାସନ ତେଜି
ଭକତଜନକୁ ଆଦରି ନେବାକୁ
ପ୍ରଭୁ ନିଜେ ବିଜେ ଆଜି
ସଭିଙ୍କ ମୁଖରୁ ଉଛୁଳି ଉଠୁଛି ହରିବୋଲ ହୁଳହୁଳୀ ॥୧॥

ଆଷାଢ଼ ଆକାଶେ ନୂଆ ମେଘମାଳ
ତହିଁରେ ଦେବତା ବସି
ସରଗଧାମରୁ ବରଷି ଦିଅନ୍ତି
ସତେକି କୁସୁମ ରାଶି
ଅପସରାମାନେ ହରଷେ ନାଚନ୍ତି ଗୀତ ଗାଇ ଢଳି ଢଳି ॥୨॥

ଦିବ୍ୟକରୁଣାର ବିନ୍ଦୁ ବିନ୍ଦୁ ବାରି
ବେଳେବେଳେ ପଡ଼େ ଝରି
ଦେବରାଜ ନେତ୍ରୁ ଆନନ୍ଦର ଅଶ୍ରୁ
ସତେକି ଯାଉଛି ଝରି
ବ୍ରହ୍ମା କରୁଛନ୍ତି ବେଦଗାନ ନିଜେ ସୁମଧୁର ସୁର ତୋଳି ॥୩॥

# ତୁମେ ଫୁଲକେଶରରେ ମଧୁ

ତୁମେ ଫୁଲ କେଶରରେ ମଧୁ
କେଉଁ ନାମ ଧରି ଡାକିବି ତୁମକୁ
ତୁମେ ମୋ' ପରାଣ ବନ୍ଧୁ ॥୦॥

ନାଉରିଆ ହୋଇ ପାରି କରିଦିଅ
ଏଇ ଘୋର ଭବସିନ୍ଧୁ
ଜୀବନେ ମରଣେ ହାତ ଧରି ନିଅ
ସାଜି ଆପଣାର ବନ୍ଧୁ
ଗଗନେ ପବନେ କେଦାରେ କାନନେ
ତୁମ ରୂପବିଭା ବିରାଜେ ମଉନେ
ବରଷି ପୀୟୂଷ ବିନ୍ଦୁ ॥୧॥

ଭଲ ପାଅ ତୁମେ ସଭିଙ୍କୁ ସମାନ
ସବୁ ସରଜନା ତୁମ
ତୁମରି ମହିମା କି ବୁଝିବି ପ୍ରଭୁ
ମୁଁ ଯେ ହୀନ ଅକିଞ୍ଚନ
ଯାହା ମୋର ଅଛି ସବୁ ତୁମ ଦାନ
ତୁମେ ମହାଦାନୀ ଜଗତବନ୍ଦନ
ଦୀନଦୁଃଖୀଜନବନ୍ଧୁ ॥୨॥

●●●

# ସତେକି ଆସିବ ପ୍ରଭୁ !

ସତେ କି ଆସିବ ପ୍ରଭୁ
ସେଇ ଶୁଭ ଲଗନ
ଏଇ ମନ ହେବ ମୋର
ତୁମ ପ୍ରେମେ ମଗନ ।।୦।।

ମୋ' ଭାବନା ମୋ' ଆବେଗ
ସବୁ ହେବ ତୁମର
ତୁମେ ହେବ ଅଧିକାରୀ
ଯାହା ଅଛି ମୋହର
ଚେତନାର ମଧୁହାସେ ଭରିଯିବ ଜୀବନ ।।୧।।

ମୋ କରମ ହେବ ପ୍ରଭୁ
ତୁମ ପାଇଁ ଆଳତି
ଭାଷା ହେବ ପ୍ରଭୁ ମୋର
ତୁମ ପାଦେ ଆରତି
ଆସିବ ମୋ ମରମରେ ସରଗର ନନ୍ଦନ ।।୨।।

ଅହମିକା ଯିବ ମୋର
ଅବିଳମ୍ବେ ମଉଳି
ଯିବି ତୁମ ଚଲାପଥେ
ନ ଯାଇ ମୁଁ ଝାଉଁଳି
ତୁମ ପାଦ ଧୂଳି ହେବ ମୋର ବାସଚନ୍ଦନ ।।୩।।

❖❖❖

# ତୁମେ ଲୀଳାମୟ ଚକାଡ଼ୋଳା

ତୁମେ ଲୀଳାମୟ ଚକାଡ଼ୋଳା
ତୁମେ ଭବ ଜଳଧିର ଭେଳା
ଯାହା ଦେଖେ ଆଖି ସବୁ ତୁମର
ଚରାଚରେ ତୁମ ଲୀଳା ॥୦॥

ମହିମା ତୁମର ଶୁଣିବା ପାଇଁକି
କାନ ମୋର ଥାଉ ନିଶିଦିନ ଟାକି
ମୋ ଜୀବ ଜୀବନ ମୋର ପ୍ରାଣଧନ
ମୋ ରଙ୍କରତନ ମାଳା ॥୧॥

କରମ ଲିଖନ ହୋଇଯାଏ ଆନ
କରୁଣା ତୁମର ଥିଲେ ଭଗବାନ
ମରୁବୁକେ ଫୁଟେ ସୁବାସ କୁସୁମ
ବରଷି ଅମୀୟ ଧାରା ॥୨॥

ତୁମ ପାଦତଳେ ରହୁ ମୋର ମନ
ପୂଜାଫୁଲ ହେଉ ଏ ମୋର ଜୀବନ
ତୁମରି ଆଶିଷ ପାଇ ପ୍ରଭୁ ମୋର
ତୁଟିଯାଉ ଭବଜ୍ୱାଳା ॥୩॥

●●●

# ତୁମେ ସଜ ସକାଳର ଶାନ୍ତି

ତୁମେ ସଜ ସକାଳର ଶାନ୍ତି
କୁସୁମିତ ଲତା ସୁବାସେ ପଖଳା
ମନଲାଖି ବନ ବୀଥି ॥୦॥

ଆଷାଢ଼ କଦମ୍ବ କେସରରେ ତୁମେ
ଆଶାର ମୋହନ ବଂଶୀ
ଧାରା ଶ୍ରାବଣର ଝରଝର ତାନେ
ତୁମ ଗୀତି ଆସେ ଭାସି
ଶରତ ସଞ୍ଜର ଗଙ୍ଗଶିଉଳିରୁ ଝରେ ତୁମ ହସମୋତି ॥୧॥

ଫଗୁଣ କୁଞ୍ଜର କିଶଳୟ ଧାରେ
ଲେଖା ତୁମ ଯଶରାଶି
ତୁମେ ମହାବାହୁ ଜଗତଜୀବନ
ଚରାଚରେ ଅଛ ମିଶି
ଭାଷା ନାହିଁ ମୋର ଗାଇବାକୁ ପ୍ରଭୁ ତୁମରି ମହିମା ଗୀତି ॥୨॥

ମନର କଲୁଷ ଧୋଇ ନେବା ପାଇଁ
ଏକା ସାହା ତୁମ ନାମ
ଘନ ହତାଶାର ଉଆଁସ ଅନ୍ଧାରେ
ତୁମେ ତ ଆଲୋକ ଧାମ
ତୁମେ ତ କରତା, ତୁମେ ତ କରଣି ତୁମେ ତ ସକଳ କୀର୍ତ୍ତି ॥୩॥

# ତୁମ କରୁଣାର ଧାରା

ତୁମ କରୁଣାର ଧାରା ଝରିଯାଏ
ଏ ସାରା ଅଖିଳ ଧାମେ
ରାଜା ପରେ ରାଜା ମହାରାଜା ପ୍ରଭୁ
ତୁମରି ତୁଳନା ତୁମେ ॥୦॥

ତୁମ ହସ ଫୁଟେ ଫୁଲ ହୋଇ ନିତି
ଚରାଚରେ ରାଜେ ତୁମ ରୂପ କାନ୍ତି
ଶତ ମନ୍ଦାକିନୀ ଧାରା ଶୀତଳତା
ବିରାଜିତ ତୁମ ନାମେ ॥୧॥

ଦୟା ପାରାବାର ହେ କରୁଣାମୟ
ବିଶ୍ୱଜନେ ସାହା ଭରସା ଆଶ୍ରୟ
ପ୍ରୀତି ପୁଲକିତ ଚେତନା ଆଲୋକ
ମନ କୋଣେ ଅନୁକୋଣେ ॥୨॥

ମରୁ ବାଲୁକାରେ ବରଷାର ଧାରା
ସୁବର୍ଣ୍ଣ ସୂତାରେ ମାଣିକର ମାଳା
ପରାଚେତନାର ମଧୁର ମହକ
ତୁମେ ଏ ମରତଭୂମେ ॥୩॥

# ପ୍ରଭୁ, ତୁମେ ଆଲୋକର

ପ୍ରଭୁ ତୁମେ ଆଲୋକର ମୋହନ ବିଳାସ
ପୁଲକ-ପଖାଳା-ଚାରୁ ଚନ୍ଦନ ସୁବାସ
ତୁମେ ଅଛ ଚରାଚରେ

ତୁମ ଲୀଳା ଖେଳା ଅସୀମ ଅନନ୍ତ
ତୁମକୁ ପ୍ରଣାମ କରେ ॥୦॥

ଆକାଶର ତାରାଫୁଲେ ତୁମ ଯଶ ଲେଖା
ଧରଣୀର ସୁଷମାରେ ତୁମ ରୂପ ରେଖା
ଜଡ଼ରୁ ଜୀବନ ଜୀବନରେ ମନ
ହେଲା ତୁମ ଆଶିଷରେ
ତୁମକୁ ପ୍ରଣାମ କରେ ॥୧॥

ତୁମ ହସ ଝରିପଡେ ଶିଶୁର ଅଧରେ
ମମତାର ମୋତିଝରେ ମାଆର ମନରେ
ଅନୁରାଗ ଦୀପ ଜଳେ ମନ ତଳେ
ବନ୍ଧୁର ସେନେହ ବଳେ
ତୁମକୁ ପ୍ରଣାମ କରେ ॥୨॥

# ତୁମେ ନ ଶୁଣିଲେ

ତୁମେ ନଶୁଣିଲେ ଆଉ କିଏ ପ୍ରଭୁ
ଶୁଣିବ ମୋ' ମନ କଥା
ତୁମେ ନବୁଝିଲେ ଆଉକିଏ ପ୍ରଭୁ
ବୁଝିବ ମୋ' ମନ ବ୍ୟଥା ॥୦॥

କରମ ଲିଖନ କରିବାକୁ ଆନ
କେହି ନାହିଁ ତୁମ ବିନା
ସଂପଦରେସଖା ଅଭାବରେ ମାତା
ବିପଦକୁ ବଜ୍ରସେହ୍ନା
ତୁମରି କରୁଣା କଣିକେ ମିଳିଲେ ତୁଟିଯିବ ଭବ ବ୍ୟଥା ॥୧॥

କିଛି ଯିବ ନାହିଁ ସଙ୍ଗେ ସେପାରିକୁ
ସବୁଥିବ ଏଠି ପଡ଼ି
ବୃଥା ଆଡ଼ମ୍ବର କେଜାଣି କାହିଁକି
ବୃଥା 'ମୋର' 'ମୋର' ରଡ଼ି
ତୁମରି ଆଶିଷ ନ ମିଳିଲେ ପ୍ରଭୁ ଜୀବନ ଯେ ହେବ ବୃଥା ॥୨॥

# ପ୍ରଭୁ ମୋର ପ୍ରଭୁ ମୋର

ପ୍ରଭୁମୋର ପ୍ରଭୁ ମୋର
　　　　　　　　ମୋର ପ୍ରାଣ ବାନ୍ଧବ
ତୁମ ପାଦେ ମନ ମୋର
　　　　　　　　ବନ୍ଧାରଖ ମାଧବ ।।୦।।

କିଛି ନାହିଁ ନେବା ପାଇଁ
　　　　　　　　ଯିବାବେଳେ ସାଥିରେ
ତୁମ କୃପା ହେବ ସାଥି
　　　　　　　　ଚଲାପଥ ବୀଥିରେ
ଦୁଃଖ ନଈ ପାରିପାଇଁ ସିଏ ସେତୁ ବାନ୍ଧିବ ।।୧।।

ଘନ ଘୋର ଅନ୍ଧାରରେ
　　　　　　　　ତୁମ ପ୍ରେମ ଆଲୋକ
ନିରାଶାରେ ଭରିଦେବ
　　　　　　　　କେତେ ଆଶା ମହକ
ମରୁଭୂମି ବାଲୁକାରେ ଜଳବେଣୀ ନାଚିବ ।।୨।।

ଏ ଜୀବନ ହାହାକାରେ
　　　　　　　　ପୂର୍ଣ୍ଣ ତୁମ ପରଶ
ଅକିଞ୍ଚନେ ସିଞ୍ଚିଦେବ
　　　　　　　　ମମତାର ପୀୟୂଷ
ପ୍ରାଣବନେ ଫୁଟିଯିବ ଚାରୁକେଳି କଦମ୍ବ ।।୩।।

●●●

# ମନ ଯେବେ ପ୍ରେମ କରିବୁ

ମନ ଯେବେ ପ୍ରେମ କରିବୁ,
ପ୍ରେମ କର ସେଇ ରଙ୍ଗା ଅଧରେ
ସେ ରସ ସାଗର ସେ ନାଗର ବର
ହସରୁ ଯାହାର ଅମୃତ ଝରେ ।।୦।।

ତାର ଅଙ୍ଗ ଶୋଭା ଲାବଣ୍ୟ
ଦେଖି ନେତ୍ର ହୋଇବ ଧନ୍ୟ
ଏକ ପାଦ ଗଲେ ଦଶପାଦ ଆସି
ହାତ ଧରିନେବ ଅତି ଆଦରେ ।।୧।।

ତାର ନାମ ଜପିଲେ ବସି
ଚୈତ୍ରରଥ ଆସିବ ଖସି
ନୟନୁ ଝରିବ ଧାର ଧାର ଅଶ୍ରୁ
କଦମ୍ବ ରୋମାଞ୍ଚ ହେବ ତନୁରେ ।।୨।।

ଦେବା ପାଇଁ ପ୍ରେମର ମୂଲ
ଆଉ କିଏ ତା ସମତୁଲ
ସୁଖରେ ଦୁଃଖରେ ସିଏ ଏକା ସାହା
ସେ ତ ଏକାବଡ଼ ସାରା ସଂସାରେ ।।୩।।

# ମାଆ ମୋର ବିଜେ ଆଜି

ମାଆ ମୋର ବିଜେ ଆଜି ଧରି ମହାକାଳୀ ବେଶ
ସନ୍ଥ ଜନକୁ ପାଳିବ  ମହୀଭରା ନିବାରିବ
ଦନୁଜ ଦର୍ପ ଦଳିବ କରିବ କଳୁଷ ନାଶ ।।୦।।

ଖଣ୍ଡା-ଖର୍ପର-ଧାରିଣୀ ନର-ମସ୍ତକ-ମାଳିନୀ
ଲୋଳ ଜିହ୍ୱା ମୁକ୍ତକେଶା ମୁଖେ ଟହ ଟହ ହସ ।।୧।।

ରଣ ରଙ୍ଗିନୀ ସେ ଶ୍ୟାମା ଦୀପ୍ତିମୟୀ ଦେବୀ ଭୀମା
ଜ୍ୟୋତି ବିରାଜିତ ତା'ର ଏ ସାରା ଗଗନ ଦେଶ ।।୨।।

କରୁଣାମୟୀ ଶିବାନୀ  ଭବତାପ ବିନାଶିନୀ
ଚରାଚର ଗାଉଅଛି ଦିବାନିଶି ତାର ଯଶ ।।୩।।

# ପ୍ରଭୁ ! ଦିଅ ଶୁଭାଶିଷ ଢାଳି

ପ୍ରଭୁ ଦିଅ ଶୁଭାଶିଷ ଢ଼ାଳି
ଦେହ, ପ୍ରାଣ, ମନ ବିକଶିତ ହେଉ
ରୂପାନ୍ତର ପଥେ ଚାଲି ॥୦॥

ଶରୀର ସାଧନା ହେଉ କରମ ମୋହର
ପରାଣରେ ଭରିଯାଉ ଆନନ୍ଦ ମୁକୁଳ
ତୁମ ନାମ ଜପି ଜପି ଦିନ ଯାଉ ସରି ॥୧॥

ଶୁଭୁ କାନେ ମୋର ତୁମ ସୁମଧୁର ସୁର
ତୁମ ମହିମା ସୁମରି ଦିନ ଯାଉ ମୋର
ଜୀବନରେ ଯାଉ କେତେ ନୂଆ ଅର୍ଥଭରି ॥୨॥

ମୋ ଆଦର ମୋ ଆବେଗ ରହୁ ତୁମ ପାଇଁ
ଅହମିକା ଯେତେ ଅଛି ଯାଉ ଦୂର ହୋଇ
ମୋର ମନ ମୂଳକରେ ହସୁ ଫୁଲଝରି ॥୩॥

# ପଥର ଦେଉଳେ

ପଥର ଦେଉଳେ ଦାରୁ ଦେବତା ସେ
କହିଲେ ଶୁଣିବ ମନବେଦନା
ତା'ପାଦେ ନିଜକୁ ଅରପି ଦେଲେ ତୁ
ହରିନବ ସବୁ ଦୁଃଖ ଯାତନା ॥୦॥

କରୁଣା ଭଣ୍ଡାର ମୁକୁଳା ପଡିଛି
ସଭିଙ୍କ ପାଇଁକି ତାର
କେହି ନୁହେଁ ବଡ଼ କେହିନୁହେଁ ସାନ
ସଭିଏଁ ତା' ଆପଣାର
ଭକତ ତାହାର ମଉଡ଼ମଣିରେ,
ଭାବଗ୍ରାହୀ ବୋଲି ଉଡୁଛି ବାନା ॥୧॥

ସବୁ ତାର ଦାନ ସବୁ ତାର ଧନ
ସିଏ ପରା ମହାଦାନୀ
ଦଉଛି ନଉଛି କରି କରାଉଛି
ଚରାଚର ମଥାମଣି
ଅନ୍ଧାର ଆକାଶେ ଧ୍ରୁବତାରାଟି ସେ
ବାଜୁଛି ତା' ଯଶ ଶୁଭବାଜଣା ॥୨॥

•••

# ହତାଶା ଅନ୍ଧାରେ

ମୋହନ ମୁରଲୀ ବାଜେ ମନ କୁଞ୍ଜେ
ଦିବାନିଶି ଅବିରାମ
ଶୁଣିବା ଶକତି ଦିଅ ମହାପ୍ରଭୁ
ସୁଧାଭରା ସେଇ ଗାନ ॥୦॥

ଫୁଟୁ ମୋର ଦେହ କଦମ୍ବବନରେ
କେତେ କେତେ ଫୁଲ କଢ଼ି
ଆନନ୍ଦର ନୀଳ ଯମୁନା ଜଳରେ
ତା' ପରାଗ ପଡୁଝଡ଼ି
କୁସୁମିତ ହେଉ ମୋ ଜୀବନ ପଥ ସୁଲଳିତ ଅନୁପମ ॥୧॥

ଶାନ୍ତିର ପବନ ପରଶେ ଶୀତଳ
ହେଉ ପ୍ରାଣର ସରସୀ
ଭକତି ଭାବର ଭ୍ରମଣ ଗୁଞ୍ଜନ
ବିଞ୍ଚି ଦେଉ ସୁଧାରାଶି
ଧନ୍ୟହେଉ ମୋର ମାନବ ଜନମ' ଅଭିଳାଷ ହେଉ ପୂର୍ଣ୍ଣ ॥୨॥

●●●

# ମାଆ ଯଶ ଗୀତିକା

ନୂଆ ଛନ୍ଦେ ଗାଇବାରେ
ମାଆ ଯଶ ଗୀତିକା
ସୁଷମାରେ ଭରି ଯିବ
ମନବନ ବୀଥିକା ॥୦॥

ଅବସାଦ ଯିବ ଚାଲି  ଆନନ୍ଦର ଚଇତାଳି
ପରଶେ ଉଠିବ ହସି
ପରାଣର ଲତିକା ॥୧॥

ଆନନ୍ଦମୟୀ କମଳା  ବିଜ୍ଞାନମୟୀ ସାରଳା
ସତ୍ୟମୟୀ ମାଆ ସିଏ
ଶୁଭ ଶାନ୍ତି ଦାୟିକା ॥୨॥

ସରଗ ଶରଧାରାଶି  ନିଜେ ଅବତରି ଆସି
ସରାଗରେ ଛୁଇଁଯିବ
ମରତର ମୃତ୍ତିକା ॥୩॥

ମାଆର ଅସୀମ ଦୟା  କଳି କେ ପାରିବ ତାହା
ସିଏ ସୁର ସିଏ ତାଳ
ସିଏ ନିଜେ ଗୀତିକା ॥୪॥

କିବା ଦେବା ଉପହାର  ସବୁ ସରଜନା ତା'ର
ପାଦେ ତା'ର ଭେଟି ଦେବା
ଆଖି-ନୀର-ଯୂଥିକା ॥୫॥

●●●

# ତୁମେ ନିଖିଳ ବନ୍ଦନୀୟା

ତୁମେ ନିଖିଳ ବନ୍ଦନୀୟା
ତୁମେ ଚରାଚର ପୂଜନୀୟା
ସବୁ ତ ତୁମରି କଳା କାରିଗରି
ଏଇ ଆଖି ଦେଖେ ଯାହା ॥୦॥

ଫୁଲ ପାଖୁଡାରେ ରଙ୍ଗ ତୁମେ ତ
କେସରରେ ତୁମେ ମଧୁ
ଦୂର ଆକାଶର ନୀଳିମ ସୁଷମା-
ଶୋଭନ ପୂର୍ଣ୍ଣିମା ଇନ୍ଦୁ
ନିରାଶାରେ ଆଶା ତୁମେ ତ ଭରସା ଆଲୋକ ବରଣୀ ରାହା ॥୧॥

ଭଲ ପାଇବାର ତୁମେ ଏକା ମୂଳ
ଆଉ ନାହିଁ କେହି ନାହିଁ
ଆଶିଷ ତୁମର ପାଲଟେ ଶ୍ୟାମଳ
ଉଷର ଧୂସର ଭୂଇଁ
ମଧୁ ମମତାର ମନ୍ଦାକିନୀ ଧାରେ ତୁମେ ତ ଶୀତଳ ବାଆ ॥୨॥

ସବୁତୁମ ଦାନ ସବୁରି ଜୀବନେ
ତୁମେ ରାଜରାଜେଶ୍ୱରୀ
ଭାଷା ନାହିଁ ତୁମ ଯଶ ଗାଇବାକୁ
ସ୍ନେହମୟୀ ମହେଶ୍ୱରୀ
କାନି ପଣତରେ ଘୋଡାଇ ଆଦରେ ରଖିଛ ଆମକୁ ମାଆ ॥୩॥

●●●

# ମାଆ ତୁମେ ଅରଚନା

ମାଆତୁମେ ଅରଚନା ଦେବ ମାନବର
ମାଆତୁମ ସରଜନା ଏ ସାରାସଂସାର
ଜଡ଼ରୁ ଜୀବନ ତୁମେ ଜୀବନରୁ ମନ ତୁମେ
ମନରୁ ଯେ ଅତିମନ ତୁମରି ବିଚାର ।।୦।।

ତୁମକୁ ପ୍ରଣାମ କରେ ଏଇ ଚରାଚର
ଦୁର୍ଗା ହୋଇ ନାଶ ତୁମେ ଦୁର୍ଦ୍ଦାନ୍ତ ଅସୁର
ସାଧୁ ଜନ ପାଳନରେ ତୁମେ ଆଗଭର ।।୧।।

ତୁମେ ମହାଲକ୍ଷ୍ମୀ ମାଆ ରାଜରାଜେଶ୍ୱରୀ
ଚରଣ ପରଶେ ତୁମ ଫୁଟେ ଫୁଲ କଢ଼ି
ମହାସରସ୍ୱତୀ ତୁମେ ଆଲୋକ ମିନାର ।।୨।।

ମନରେ ତୁମକୁ କେହି ପାରେନାହିଁ ବୁଝି
ତୁମ ମମତା ଅଶୁଝା ପାରିବ କେ ଶୁଝି
ତୁମ ପାଦତଳେ ମୋର କୋଟିଏ ଜୁହାର ।।୩।।

●●●

# କେହି ନ ଥିଲେ ନାହିଁ

କେହି ନ ଥିଲେ ନାହିଁ ମନେ ମୋ ଦୁଃଖ ନାହିଁ
ମୋ ପ୍ରଭୁ ଅଛନ୍ତି ମୋ ପାଖେ
ରଙ୍ଗ ଅଧରୁ ମଧୁ ଝରାଇ ପ୍ରାଣବନ୍ଧୁ
ହସନ୍ତି ଚାହିଁ ମତେ ବାଙ୍କେ ।।୦।।

ଚାଲି ତାଙ୍କ ସୁନ୍ଦର ପାଦ ନାଲି ମନ୍ଦାର
ପ୍ରୀତିଧାରା ଲଳିତ ଝରଇ ଅବିରତ
ଆଶା ଜୋଛନା ରାଶି ଆସେ ନିରାଶା ଫାଙ୍କେ ।।୧।।

ସିଏ ଅଛନ୍ତି ବୋଲି ପାରେ ମୁଁ ବାଟଚାଲି
ସୁଖ ଦୁଃଖରେ ସାହା ସିଏ ତ ଚଉବାହା
ସଜସରୋଜ ସିଏ ଏ ସାରା ବିଶ୍ୱ ପଙ୍କେ ।।୨।।

ମୁଁ ତାଙ୍କ ସେବାଦାସ ମାଗେ ତାଙ୍କ ଆଶିଷ
ଜୀବନ ମରଣରେ ସଂପଦ ବିପଦରେ
ତାଙ୍କ ଆଲୋକ ରେଖା ଥାଉ ମୋ ପାଖେ ପାଖେ ।।୩।।

•••

# ବନ୍ଧୁ ଯଦି କିଏ ଥାଏ ?

ବନ୍ଧୁ ଯଦି କିଏ ଥାଏ ଜୀବନରେ
ବନ୍ଧୁ ତୁମେ ଜଗବନ୍ଧୁ
ମଧୁ ଯଦି କିଛିଥାଏ ଜୀବନରେ
ପ୍ରଭୁ ତୁମେ ପଦ୍ମମଧୁ ॥୦॥

ଆଶା ଯଦି କିଛି ଥାଏ ଜୀବନରେ
ପ୍ରଭୁ ତୁମେ ବଡ଼ ଆଶା
ନିଶା ଯଦି କିଛି ଥାଏ ଜୀବନରେ
ତୁମକୁ ଖୋଜିବା ନିଶା
ଏ ଜୀବନ ଯଦି ନଦୀଧାରା ହୁଏ ତୁମେ ତ ସୁନୀଳ ସିନ୍ଧୁ ॥୧॥
ଚିନ୍ତାଯଦି କିଛି ଥାଏ ଜୀବନରେ
ତୁମେ ଚିନ୍ତାମଣି ପରା
ବଣାନାବିକର ହତାଶାରେ ତୁମେ
ଭରସାର ଧ୍ରୁବତାରା
ଏ ଜୀବନ ଯଦି ହୁଏ କୁମୁଦିନୀ ତୁମେ ତ ପୂର୍ଣ୍ଣିମା ଇନ୍ଦୁ ॥୨॥
ନାମ ଯଦି କିଛି ଡାକିବାକୁ ଥାଏ
ତୁମେ ତ ସର୍ବନାମ
ଧାମ ଯଦି କିଛି ଯିବା ପାଇଁ ଥାଏ
ତୁମେ ତ ସକଳଧାମ ।
ଏ ଜୀବନ ଯଦି ଯୋଗାଧାର ହୁଏ, ତୁମେ ସିଦ୍ଧି ତୁମେ ସାଧୁ ॥୩॥
ଗୁରୁ ଯଦି କିଏ ଥାଏ ଜୀବନରେ
ତୁମେ ତ ଜଗତଗୁରୁ
ଦାତା ଯଦି କିଏ ଥାଏ ମରତରେ
ତୁମେ ତ କଳପତରୁ ।
ଏ ଜୀବନ ଯଦି ଭାବଟିଏ ହୁଏ, ତୁମେ ମହାଭାବ ପ୍ରଭୁ ॥୪॥

●●●

# ଏତିକି ମାଗୁଣି

ଆଉ କିଛି ନାହିଁ ମାଗିବା ପାଇଁ କି
　　　　　　　　ସବୁତ ଦେଇଛ ମତେ
ଏତିକି ମାଗୁଣି ଜଗତ ସାଇଁ ହେ
　　　　　　　　ବନ୍ଧା ରଖ ପାଦ ଗତେ ॥୦॥

ଆଖି ତ ଦେଇଛ ଦେଖିବାକୁ ତୁମ
　　　　　　　　ଚରାଚର ଶୁଭକାନ୍ତି
କାନ ତ ଦେଇଛ ଶୁଣିବାକୁ ତୁମ
　　　　　　　　ମହିମା ମୋହନ ଗୀତି
ଭାବ ପ୍ରବଣତା ସେନେହ ମମତା ସବୁ ତୁମ ଦାନ ସତେ ॥୧॥

ମନ ତ ଦେଇଛ ବିବେକ ଦେଇଛ
　　　　　　　　ଦେଇଛ ସହିବା ଶକ୍ତି
ପାଖେପାଖେ ରହି ଚଳାଉଛ ମତେ
　　　　　　　　କିବାଦିନ କିବାରାତି
ହାତଧରି ମୋର ଆଗକୁ ନେଉଛ ଏ ଜୀବନ ଚଲାପଥେ ॥୨॥

# ବିଶ୍ୱଜନନୀ

ସଲିଳରେ ରସ ତୁମେ ସୁମନେ ସୁବାସ ତୁମେ
କିଶଳୟେ ହସ ତୁମେ ଦେବୀ ଭବାନୀ
ଆକାଶେ ତୁମେ ନୀଳିମା ଘନବନେ ସବୁଜିମା
ବସନ୍ତେ ଶୋଭା ସୁଷମା ଦେବୀ ଶିବାନୀ ।।୦।।

ଦୂର ଆକାଶର ତଟେ ପାହାନ୍ତିର ତାରା
ପତିତପାବନୀ ମାଆ ମନ୍ଦାକିନୀ ଧାରା
ଆଶାବରୀ ରାଗ ତୁମେ ମାଆ ଭବ ତାରିଣୀ ।।୧।।

ବାଟଭୁଲା ନାବିକର ତୁମେ ବତିଘର
ଜନ୍ମେଜନ୍ମେ ମାଆ ମନ ମମତା ମଧୁର
କାନ୍ତିମୟୀ ଉଷା ତୁମେ ହେ ଆଲୋକ ବରଣୀ ।।୨।।

ସୁଖେ ଦୁଃଖେ ଛାଇ ପରି ତୁମେ ଥାଅ ରହି
ମହିମା ତୁମ ଅପାର କେ ପାରିବ କହି
ଆଭୂୟେ ପ୍ରଣମ ମନ ହେ ବିଶ୍ୱ ଜନନୀ ।।୩।।

# ମୋହନ ମୁରଲୀ

ବସିଥିବି ଚାହିଁ ଯମୁନାଜଳକୁ
ଜଳ ଯାଉଥିବ ବହି
ବାଜୁଥିବ ତୁମ ମୋହନ ମୁରଲୀ
ଦୂରେ ଦୂରେ ରହିରହି ॥୦॥

ନୟନରୁ ନୀର ଝରିଯାଉଥିବ
ତିନ୍ତି ଯାଉଥିବ ଭୂଇଁ
ଦୂରେ ଦିଶୁଥିବ ତୁମ ହସ ରେଖା
ଲତା କୁଞ୍ଜେ ଫୁଲ ହୋଇ
ଶୁଭୁଥିବ ତୁମ ସୁମଧୁର ଭାଷା, ଅଳି ଗୁଞ୍ଜରଣ ହୋଇ ॥୧॥

ଆସୁଥିବ ଧୀର ପବନ ପ୍ରବାହ
ଶ୍ୟାମବନ ବୀଥି ଛୁଇଁ
ଉଡ଼ି ଯାଉଥିବେ ଆକାଶରେ ପକ୍ଷୀ
ପ୍ରଭୁ ତୁମ ଯଶ ପାଇ
ଲାଗୁଥିବ ମତେ ଏଇ ତ ଆସିଲ  ଚାହିଁଲାବେଳକୁ ନାହିଁ ॥୨॥

ତୁମେ ମୋର ପାଖେ
ଦିଶୁଥିବ ତୁମ ପୀତାମ୍ବରୀ ପାଟ
ସୁପକ୍ୱକେଦାର ଧାରେ
କଉସ୍ତୁ ଭମଣି ପରି ଦିଶୁଥିବ
ଧଳା ମେଘ ଆକାଶରେ
ନୟନ ଯୁଗଳ ଦିଶୁଥିବ ପ୍ରଭୁ ସତେ ସୂର୍ଯ୍ୟ ଚନ୍ଦ୍ର ଦୁଇ ॥୩॥

●●●

# କାଲି ସକାଳର ସୂର୍ଯ୍ୟ




ଡକ୍ଟର ଶରତ ଚନ୍ଦ୍ର ରଥ

ପ୍ରକାଶ କାଳ : ୧୯୯୯
ପ୍ରଚ୍ଛଦ : ସାହିତ୍ୟ ସିନ୍ଧୁ

# ସୀମାନ୍ତ ପ୍ରହରୀ

ହେ ସୀମାନ୍ତର ଜାଗ୍ରତ ପ୍ରହରି !
ଘନ ଆତ୍ମବିଶ୍ୱାସର ବିଶ୍ୱାବସୁ ତୁମେ
ଏ ମାଟିର ନିରାଜନା ପାଇଁ
ମନ ତୁମ ଚେତନାର ସଜନୀଳକଇଁ ।

ତୃଷିତ ନୟନେ ତୁମେ ବଣର ଝରଣା ।
କ୍ଷୁଧାର୍ତ୍ତ ସକାଶେ ନୀଳକଣ୍ଠବୃକ୍ଷ ଫଳ ।
ବାତ୍ୟାବିକ୍ଷୁବ୍ଧ ସମୁଦ୍ରେ ଆଲୋକମିନାର
ହେ ବୀର ସୈନିକ ! ନିଅ କୋଟି ନମସ୍କାର ।

ତୁମ ପାଇଁ ତୁଚ୍ଛ ଯେତେ ପଦ ଓ ପଦବୀ,
ମାନ ଓ ସମ୍ମାନ ପୁଣି ଯଶ ଗଉରବ,
ଆଗକୁ ଚାଲିବା ତୁମ ସ୍ୱଧର୍ମ ସ୍ୱଭାବ
ପଛଘୁଞ୍ଚା ଲେଖାନାହିଁ କେବେ ଭାଲପଟେ ।

ଦିନ ଯାଏ ରାତିଆସେ କୁନିପିଲା ପରି
ତୁମେ କିନ୍ତୁ ଅବିଚଳ ସ୍ଥିର ।
ମନରେ ସିଂହର ବଳ, ଅମିତ ବିକ୍ରମ
''ଛାଡ଼ିବିନି ଛାଡ଼ିବିନି ସୂଚ୍ୟଗ୍ର ମେଦିନୀ,
ମୋ ଦେଶ ମାଟିରୁ, ମୁଁ ତ ବଞ୍ଚିଥିବା ଯାଏ ।''
ଉଦ୍‌ଘୋଷୁଛି ଏହା ତୁମ ଶିରା ଓ ଧମନୀ
ସାରାରାତି, ସାରା ଦିନ, ସନ୍ଧ୍ୟା ଓ ସକାଳ ।

ଭାବିବାକୁ ବେଳ ନାହିଁ,
ଗାଁ ମୁଣ୍ଡ ପୋଖରୀ କୂଳର
ବଉଳଫୁଲର ବାସ୍ନା ।
ଚନ୍ଦନପୂନେଇଁ ପର୍ବ ଆନନ୍ଦ ଲହରୀ
ପାଲା, ଦାସକାଠି ପୁଣି ଗୋଟିପୁଅ ନାଚ ।

ଭାବିବାକୁ ବେଳ ନାହିଁ,
ବାପାଙ୍କ ଶୁଖିଲା ମୁହଁ
ଭଉଣୀର ପଢ଼ାଶେଷ ।
ବଡ଼ବୋଉ ପାଳିଜର
ବୋଉର ସେ ରାତି ଉଠାକାଶ ।

ଭାବିବାକୁ ବେଳ ନାହିଁ,
କୂଅ ମୂଳ ତୁଳସୀ ଚଉରା
ଯାହା ପାଖେ ନିତି ସଞ୍ଜେ
ଜଳୁଥାଏ ସଂଜବତୀ
ସଭକ୍ତି ପ୍ରଣାମମଖା, ଯତନେ ସଜଡ଼ା ।

ସାରାଦେଶ ଭାବେ ତୁମ କଥା
ସାର୍ଥକ ଜୀବନ ତୁମ ସାର୍ଥକ ଜନମ
ଏକନିଷ୍ଠ ସାଧନାର ସାଧକ ହେ ବୀର,
ତୁମ ପାଦତଳେ ମୋର ନୀରବ ପ୍ରଣାମ ।

●●●

( *୧୯୯୯ ଜୁନ୍ / ଜୁଲାଇ ମାସରେ ଭାରତର କାରଗିଲ୍ ସୀମାନ୍ତରେ* ପାକିସ୍ଥାନର
ଆକ୍ରମଣର ପ୍ରତିବାଦୀ ଆମ ସୈନିକ ଭାଇମାନଙ୍କ ପାଇଁ )

# ଗୁଞ୍ଜରା ଫଳ

ଏହିପରି ଅନେକ ଅନେକ
ନାନାରଙ୍ଗ ମୁଖାପିନ୍ଧି
କରି ଅଭିନୟ,
ଅନ୍ୟ ତ ବହୁତ ଦୂର
ନିଜ ପାଖେ ନିଜେ ତ ଅଜଣା
ଜରାଜୀର୍ଣ୍ଣ ଚେହେରାରେ
କେତେ ଅସହାୟ ।
ଅହଂକାର ବଳୟକୁ ଛୁଇଁ
ଲମ୍ବିଲମ୍ବି ଯାଉଥାଏ ପାଦତଳ ଛାଇ
ଅବୁଝା ପଣର ।
ଓଟମାନେ ଚରିଚରି ଯାଉଥାନ୍ତି
ମେଞ୍ଚା ମେଞ୍ଚା କଣ୍ଟାସିଝୁ
ମରୁ ବାଲୁକାର ।
ଭଲ ଲାଗେ ବସିବାକୁ
ବୁଢ଼ିଆଣୀ ଜାଲବୁଣି
କଙ୍କଡ଼ାବିଛା ନାହୁଡ଼ ସଯତ୍ନେ ସଜାଇ
ତମ୍ପ ସାପ ଫୁତ୍କାରରେ ବୀରତ୍ୱ ଅସୀମ
ଶାଗୁଣାର ଦୀକ୍ଷା ମନ୍ତ୍ର ସଦା ଗୁଣିଗୁଣି ।
ଆକାଶକୁ ଧିକ୍କାରି ଧିକ୍କାରି
ନଈ ପାଣି ଥୁ ଥୁ ଫିଙ୍ଗି
ରେ ରେ କାର ଶବ୍ଦେ ଭରି ନିଜ ଅଭିଧାନ ।
ସେମାନେ ତ କାଚର ବଣିକ,
ଏ ହାତେ କରମର୍ଦ୍ଦନ
ଆର ହାତେ ଆକ୍ରମଣ
କାର୍‌ଗିଲ୍ ସୀମା ଇଲାକାରେ ।
ବନ୍ଧୁ, ସଖା ତୁଚ୍ଛ କଥାସବୁ,
ସେମାନଙ୍କ ଆଦର ତ
ଗୁଞ୍ଜରା ଫଳରେ । •••

## ନୂତନ ବସନ୍ତ

ଲାଗେ ସବୁ ଖାଲି ଖାଲି
ଫୁଲକଢ଼ି ପଡ଼ିଅଛି ଝଡ଼ି ।
ପତ୍ରରୁ ଶିଶିର ସାଥେ,
ଝରିଅଛି ସବୁ ନୀଳରଙ୍ଗ
ଟୋପାଟୋପା ଆଖିଲୁହ ପରି ।

ପକ୍ଷୀର କାକଳି ନାହିଁ
ଶୁଭୁ ନାହିଁ ଭ୍ରମର ଗୁଞ୍ଜନ ।
ମହୁମାଛି ଗଲାଣି ତ ଫେରି
ବସନ୍ତ ଆସିନି ବୋଲି
ଭାବିଦେଇ ସବୁ ଅକାରଣ ।

ପରିତ୍ୟକ୍ତ ଗାଁ ଦାଣ୍ଡ ଏବେ ଶୂନ୍‌ଶାନ୍
କାଲି ଯାହା ଗହଳିରେ ଫାଟିପଡୁଥିଲା ।
ତଥାପି ମୁଁ ଜାଣେ,
ଏ ଶୂନ୍ୟତା ନୁହେଁ ଶେଷ କଥା,
ନିର୍ବାଣର ନୁହେଁ ଅନ୍ୟ ନାମ,
ନୂଆ ଏକ ଜୀବନର ନିରାଜନା ପାଇଁ
ଏହା ଖାଲି ସୀମିତ ବିଶ୍ରାମ ।

ଅନ୍ଧାରର ବୁକୁଚିରି
ସୂର୍ଯ୍ୟ ଆଙ୍କିଦେବେ ତା'ଙ୍କ ସୁବର୍ଣ୍ଣ ସ୍ୱାକ୍ଷର
ଆଶା ପଞ୍ଜୁରୀର ପକ୍ଷୀ
ନୂଆସୁରେ ଗାଇବ ସଙ୍ଗୀତ ।
ପୁଣି ଫୁଲ ମହକିବ ଦିଗେଦିଗେ
ଆଉ ଥରେ ଆସିବରେ ମଧୁର ବସନ୍ତ ।
ଆଉ ଥରେ ଆସିବରେ ନୂତନ ବସନ୍ତ । ●●●

# ଖୋଜିଯିବି

ତୁମକୁ ମୁଁ ଖୋଜିଯିବି ବସନ୍ତଲତାରେ
ସାତବର୍ଣ୍ଣା ଫୁଲ ପାଖୁଡ଼ାରେ
ମଳୟର ଧୀରପ୍ରବାହରେ
ମହୁମାଛି ଉଡୁଥିଲା ବେଳେ ।
କେସର ଫାଙ୍କରେ ତୁମେ ଲୁଚିଥିବ ଯେବେ
ନରମ ନୟନ ମେଲି ଚାହିଁଥିବି ବସି ।

ତୁମକୁ ମୁଁ ଖୋଜିଯିବି
ଭରାତାରା ଆକାଶରେ
ଦିଗଚକ୍ର କୁହୁଡ଼ିରେ ଭରା
ସଜ ପାହାନ୍ତାରେ ।
ଶିଶିରର ଛନ୍ଦହରା କଠଉ ଶବ୍ଦରେ
ରାତି ନିଦ ଭାଙ୍ଗୁଥିବ,
ଯେତେବେଳେ ପାନକଳ ଲାଗୁଥିବ ପିତା ।

ତୁମକୁ ମୁଁ ଖୋଜିଯିବି ସାଗରର ସିକତାରେ
ଦେଖି ତୁମ ପାଦଚିହ୍ନ ସୁଠାମ ସୁନ୍ଦର ।
ଖୋଜୁଥିବି ଏପାଖେ ସେପାଖେ
ବଡ଼ଦାଣ୍ଡେ, ସିଂହଦ୍ୱାରେ, ମୁକ୍ତିମଣ୍ଡପରେ,
ରତ୍ନ ସିଂହାସନ ପରେ ଛାଇ ଆଲୁଅରେ ।

ଅମାନିଆ ଉଚ୍ଚାକାଂକ୍ଷା ଯେତେ
ଯେତେଯେତେ ଅଧାବୁଝା ଶିହରଣ ମୋର
ତୁମ ପାଖେ ଭେଟି ଦେବି ।
ତୁମେ ମୋର ଅତି ଆପଣାର ।
ମୋ ଜୀବନସାହାରାରେ ନୀଳନଦୀଧାର
ମୋ ଭରସା, ମୋ ଆଶାର ଆଲୋକମିନାର । ●●●

## ସ୍ୱାଗତ ତୋରଣ

ସବୁ ସୁର ହଜିଗଲା ପରେ
ଯେଉଁ ସୁର ଶେଷରେ ଆସିବ
ସିଏ ଜାଣିଥିବ, ତା' ଆଗରୁ ବାଜିଥିବା
ଯେତେଯେତେ ସ୍ୱର ଓ ଝଙ୍କାର ।
ସିଏ ଆସି ଶୁଣାଇବ
ଜୀବନର ନୂଆ ଗୀତି ।
ଭରିଯିବ ପ୍ରାଚୀତଟେ ଉଷାର ଆଲୋକ
ଯାହା ତା'ର ନିଜ ପରିଚିତି ।
ମଳିନତା ଅଛି ଯେତେ ସବୁ ଧୋଇଯିବ ।
ଧୂଆପୋଛା, ନଦୀପଠା, ଆକାଶକୁ ଛୁଇଁ
ନୂଆସୁର ପହଞ୍ଚିବ ଆସି
ନିଜକୁ ସେ ଅତିକ୍ରମି, ଚଉହଦୀ ଡେଇଁ ।
ସମୟ ସଜାଇ ଦେବ ତା' ପାଇଁକି
ସାତବର୍ଣ୍ଣା ଫୁଲେ ସଜା
ସ୍ୱାଗତ ତୋରଣ ।
ଧୂପବାସ ଫୁଲବାସ,
ବାସଭିଜା ଫୁଲରେଣୁ
ସୁବାସ ଚନ୍ଦନ ।
ପବନରେ ଆଲଟଚାମର ।
ଭ୍ରମରର ଗୁଣୁଗୁଞ୍ଜନରେ
ବାଜୁଥିବ ଶୁଭଶଙ୍ଖ ଆଶିଷ - ମଧୁର ।
ପାହାଚ ତଳର ଘାସ,
ମୁକ୍ତ ହେବ ନିଜର ପେଡ଼ିରୁ
ଆଖିମେଲି ଚାହିଁବେ ନିଜକୁ
ବର୍ଷାଧୂଆ ନୀଳ ଆକାଶକୁ ।
ଭଙ୍ଗାରୁଜା ରାଇଜରେ
ନିତ୍ୟ ନିବାସକୁ । ●●●

# ଚିହ୍ନା ଅଚିହ୍ନା

ମନେପଡ଼େ ରାଜଦଣ୍ଡ,
ଦୁଇପାଖେ ଶ୍ୟାମ ଉପବନ ।
ମୁକୁତାରେ ଝଲମଲ
ଅଦୂରବେଷ୍ଟ ପୋଖରୀ
ଶୀତଳ ପବନ ।
ଅପରାହ୍ଣର ନରମ ଖରା
ଧ୍ୱନି ନୁହେଁ,
ପ୍ରତିଧ୍ୱନି ତୋଳେ କାନେକାନେ
ଦୁଷ୍ଟ ଏକ ଅନ୍ୟମନସ୍କତା
ଭରିଯାଏ ଅନ୍ତରର କୋଣେ ଅନୁକୋଣେ ।
ଆଉ ସେତେବେଳେ
ଦିଶିଯାଏ ବୋଝ ବୋଝ ସୁଖଦୁଃଖ,
ଶୁଭୁଥାଏ ହା' ହତାଶଭରା ଦୀର୍ଘଶ୍ୱାସ ।
ଜନପଦ ଆତ୍ମୀୟସ୍ୱଜନ
କେମିତି କେମିତି ଲାଗେ ଅଲଗା ଅଲଗା ।
ଲାଗେ ସବୁ ନୀରବ ନିର୍ଜନ
ବର୍ଷା ଭିଜା ନିଶୀଥର ଘାସପତ୍ର ପରି
ଥରିଯାଏ ଲୋଡ଼ିବା ପଣର ପାଦତଳ ମାଟି ।
ଦେବଦାରୁ ପତର ଗହଳେ
ପେଚାମାନେ ବସିଥାନ୍ତି
ମିଟିମିଟି ଆଖି କରି
କାହା ପ୍ରତୀକ୍ଷାରେ ।
ଗଛମାନେ ଘୁମାଇ ପଡ଼ନ୍ତି
ନାହିଁ ନାହିଁ କହିବାକୁ
ବଳପାଏ ନାହିଁ ।
ଝଲକେ ପବନ
ଆସେ କେଉଁ ଦୂର ଦେଶୁ
କିଛି କହେ ନାହିଁ,
ନୀରବରେ ଗଛଡାଳ ଯାଏ ଖାଲି ଛୁଇଁ । ●●●

# ବାଟ ଖାଲି ଚାଲିଯିବା ପାଇଁ

ଦୂର ପଥ ଅତିକ୍ରମି,
ମୁଁ ହୋଇଛି ଶ୍ରମକ୍ଷୀଣ,
ତଥାପି ଏ ପଥ ଲମ୍ବିଅଛି
କେତେ ଦୂର, ପାଉ ନାହିଁ ଆଖି ।
ସାରାବାଟ କଣ୍ଟକିତ, ଏ କଥା ବି ନୁହେଁ,
ବେଳେବେଳେ ପିଚୁ ରାସ୍ତା
ଦୁଇ ପାଖେ ଘାସଫୁଲ
ଚୂନା ଚୂନା ହସ ।
ଆଉ ବେଳେ ନିଛାଟିଆ ପାଟ ବିଲ,
ମିଛ ଜଳବେଣୀ ନାଚେ ବିଚିତ୍ର ଭଙ୍ଗୀରେ,
କେବେକେବେ ପାହାଡ଼ ତଳରେ
ସକାଳ ଶିଶିରଭିଜା ଫୁଲକଢ଼ି ମାନେ
କଅଁଳ ପାପୁଲି ଧାରେ ଶୁଭ ମନାସନ୍ତି,
କହୁଥାନ୍ତି ଚାଲିବାକୁ ଆଗକୁ ଆଗକୁ ।
ପୁଣି କେବେ ଅନ୍ଧକାର ଆସେ ମାଡ଼ି
ଆକାଶରେ ଘୋଟେ ମେଘମାଳା ।
ତାରା ଦିଶେ ନାହିଁ ଅବା ଦିଶେନା ଚନ୍ଦ୍ରମା,
ପାଦଟିଏ ଥାପିବାକୁ ଶଙ୍କାଶଙ୍କା ଲାଗେ ।
ମୁଠା ମୁଠା ଅନ୍ଧାରକୁ ସାଉଁଟି ସାଉଁଟି
ଭୀମ ନିର୍ଜନତା ସ୍ୱରେ ସଙ୍ଗୀତପାଲଟି
ଚାଲିବାକୁ ପଡ଼େ ପରା
ନିଜକୁ ସଜାଇ ଦେଇ
ସୁଅମୁହଁ-କଅଁଳ ପତର,
ଅନାଗତ ଆଶଙ୍କାରେ ଆଉଟିପାଉଟି ।
ଏମିତି ସକାଳୁ ସଂଜ, ସଂଜରୁ ସକାଳ
ଚଲାପଥ ବିଳମ୍ବିତ,
ଅଧାବାଟେ ରହିହେବ ନାହିଁ,
ବାଟ ଖାଲି ଚାଲି ଯିବା ପାଇଁ । ●●●

# ସବୁ ଯଦି ଧାରାରେ ଚାଲନ୍ତା

ସବୁ ଯଦି ଧାରାରେ ଚାଲନ୍ତା
ବର୍ଷା ଦିନ ନଦୀଟିଏ
ଟ୍ରାଫିକ୍ ନିୟମ ମାନି
ଗୋଟାପଣେ ସୀମାରେ ବହନ୍ତା ।

ନମ୍ରତାର ତୁଳସୀସ୍ତବକ ବାଢ଼ି
ଅତୀତର ଧୂଳିଝାଡ଼ି
ବର୍ତ୍ତମାନକୁ ନେଇ ବଞ୍ଚିବା ଭିତରେ
କଞ୍ଚା 'ମୁଁ' ଟି ପାଚିଲା ହୁଅନ୍ତା ।

ଦିନ ପରେ ରାତି ଆସିଲା ପରି
ପୂର୍ଣ୍ଣିମାରାତିରେ ଜହ୍ନ ହସିଲା ପରି
ଫଗୁଣର କିଶଳୟ ଲାଜରେ ଭିଜିଲା ପରି
ପ୍ରତି ରାତି ପରେ
ନୂଆ ଆଲୋକର ବାର୍ତ୍ତା ନେଇ
ଆସନ୍ତା ପାହାନ୍ତା ।

ନୀରବରେ ଝରିଯାନ୍ତା ପାଚିଲା ପତର
ଶିଶୁକୁ ମିଳନ୍ତା ସ୍ନେହ,
ଗୁରୁଜନେ ଭକ୍ତି ଓ ସତ୍କାର,
ବନ୍ଧୁଟିଏ ବନ୍ଧୁ ପାଶେ ଦୁଃଖବେଳେ
ଠିଆ ହେଉଥାନ୍ତା ।

ବୟସ୍କ ପିତାର ଯେତେ ଅବଶିଷ୍ଟ
ସୀମିତ ଆୟୁଷ
ସୁଯୋଗ୍ୟ ସନ୍ତାନ ପାଇଁ ହୁଅନ୍ତା ଅଚିନ୍ତା ।
ବାତ୍ୟାକ୍ଷୁବ୍ଧ ଜୀବନ ସାଗରେ
ମିଳିଯାଆନ୍ତା ଦ୍ୱୀପର ଇଲାକା ।

ଟୋପାଟୋପା ଆନ୍ତରିକତାର
ଦୀପାଳି ଶିଖାରେ
ଯେତେ ସବୁ ଅନ୍ଧକାର
ଜଳିପୋଡ଼ି ପାଉଁଶ ହୁଅନ୍ତା ।
ଧୂଆଁଳିଆ ଆକାଶ ଦେହରୁ
ଝରି ଝରି ସବୁ ମଳିନତା
ଦୂରେ ଦୂରେ ଅପସରି ହୋଇଯାନ୍ତା ଶେଷ
ଆକାଶରେ ତାରାଫୁଲ ଅନେକ ଫୁଟନ୍ତା ।

●●●

# ନୂଆ ମନ

''ଚାଲ ତାଙ୍କୁ ଖୋଜିଯିବା
ଆକାଶର ତାରାରେ ତାରାରେ
ତେଲ ଲୁଣ ସଂସାରରେ କିଛି ନାହିଁ,
ନାହିଁ ଆଶା, ନାହିଁ ଆଶ୍ୱାସନା ।
ବୃଥାଭ୍ରମ, ଇନ୍ଦ୍ରଜାଲ, ତୁଚ୍ଛା ମରୀଚିକା
ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଏ ତ ବିଡ଼ମ୍ବନା ।''
"କିଏ ବନ୍ଧୁ କହୁଛି ଏ କଥା ?"

ଅଛି ଯାହା ମୂଲ୍ୟବୋଧ ଏଠି
ନାହିଁ, ନ ଥିଲା, ନୋହିବ ତାହାର ତୁଳନା ।
ବୁଝିବାକୁ ଶକ୍ତିଲୋଡ଼ା ସ୍ନାୟୁରେ ଶିରାରେ
ଦେଖିବାକୁ ଦିବ୍ୟ ଦୃଷ୍ଟି ପଲକେ ପଲକେ ।
ଅଲୋଡ଼ା ହୁଅନ୍ତା ଯେବେ ଏ ଧୂସର ମାଟି
କଣ୍ଟା କି ରଖନ୍ତା ଟାଣି ପଣତର କାନି ।
ଲୁହ ହୋଇ ଝରନ୍ତା କି ପତରୁ ଶିଶିର
ବଉଳଫୁଲ ପାଇଁ କି ଲାଗନ୍ତା କି କଳି ?

ଭାଙ୍ଗିଗଲେ ଗଛଡାଳ ଝଡ଼ବତାସରେ
ଆଉ କି ଆସନ୍ତା ନୂଆ ଡାଳପତ୍ର ଫୁଲ
ନଇବଢ଼ି ପଟୁମାଟି ପଡ଼ି
ହୁଅନ୍ତା କି ଦୁଇଗୁଣ ସୁନାର ଫସଲ ।
ଅଂଶୁଘାତେ ବିବର୍ଣ୍ଣ ମେଦିନୀ
ଡାକରେ ଆସନ୍ତା କିବା ପହିଲି ଆଷାଢ଼ ।
ଘାସଫୁଲ ଧଳାନାଲି ଚନ୍ଦନ ଟିପାରେ
ସଜାଇ ଦିଅନ୍ତା କି ସେ ମାଟିର ଲଲାଟ ?
ବର୍ଷାଭିଜା ଶୀତଳ ପବନ
ପ୍ରୀତିମୁଗ୍ଧା ନୀଳପଣତରେ
ଝାଡ଼ି ନିଜ ଆଞ୍ଜୁଳିରୁ କଦମ୍ବ କେସର
କରନ୍ତା କି ଏ ମାଟିର ଏତେ ନିରାଜନା ।

# ତଥାପି ଖୋଜୁଛି

ମୁଁ କେହି ନୁହେଁ, କିଛି ନୁହେଁ,
ବିଭୂତି ନୁହେଁ,
ଖାଲି ମୁଠେ ଅଲୋଡ଼ା ପାଉଁଶ ।
ଏକଥା କହିଲେ, ଅନାୟାସେ
ପବନ ଉଡ଼ାଇ ନେବ
ପାଣି ଧୋଇଦେବ,
ଶୁଣି ଖୁସିହେବେ ହାତପାଆନ୍ତା ମଣିଷ ।

ମୁଁ ବାଡ଼ବାଗ୍ନି, ଖଣ୍ଡଲୁହା ଇସ୍ପାତଚାଦର ।
ଏକଥା ଶୁଣିଲେ, ଆନମନା ହେବେ ଲୋକେ
ମନେମନେ ଜଳିବେ ଈର୍ଷାରେ
ଅନେକ କ୍ରୋଧରେ ପୁଣି ଅଜସ୍ରହିଂସାରେ ।

ଆଉ କିଛି ଅଛି ମୋର ସଂଜ୍ଞା
ଯାହାକୁ ଖୋଜିବା ପାଇଁ
ଅନ୍ୟ ବେଶି କିଛି କଥା
ଲୋଡ଼ା ହେଉ କି ନ ହେଉ
ଲୋଡ଼ା ଅଛି ଦିନ ଦ୍ୱିପହରେ
ପ୍ରଜ୍ୱଳିତ ଅସଂଖ୍ୟମଶାଲ ।

ମୁଁ ପାଇବି ମତେ,
ଏହାଠାରୁ ଆଉ କ'ଣ ବିଜୟ ଅଛି ଯେ,
ମୋ' ଭିତରେ ଦେଖିବି ମୁଁ
ସୂର୍ଯ୍ୟଚନ୍ଦ୍ରତାରା ।
ସୁରକ୍ଷାର ଅନ୍ୟନାମ ନୀଳଆକାଶକୁ ।
ପ୍ରତୀକ୍ଷିତ ଯେତେଯେତେ ପ୍ରହରମାନଙ୍କୁ । ●●●

# ଗୀତି ବିମୋହନ

ତୁମେ ଆସିବ ଆସିବ ବୋଲି
ବହୁଲୋକ ତୁମ ଅପେକ୍ଷାରେ ।
ତୁମେ ଆସିଲେ ତ, ପାହାନ୍ତିତାରାର
ହସ ହେବ ଆହୁରି ସୁନ୍ଦର
ନୀଳରଙ୍ଗ କାନି ପଣତରେ ।

ବନାନୀରେ ଭରିଯିବ, ବେଶି ଶ୍ୟାମଳିମା
କିଶଳୟେ ମନଭୁଲା ଗୀତ ବିମୋହନ ।
ଟିକିଟିକି ଚଢ଼େଇଙ୍କ ଅର୍କେଷ୍ଟ୍ରା ସ୍ୱରରେ
କଢ଼ିମାନେ ଫିଟିଯିବେ ଅଳସମୁଦ୍ରାରେ ।
ଚୋରାଇ ଆଣିବ ନାହିଁ ପବନ ସୁରଭି
ବରଂ ନିଜେ ନିଜେ ହେବ ସୁବାସିତ
ଆଗେ ଆଗେ ଚାଲିବ ସେ ଦେଖାଇବ ବାଟ ।

ବୁଝି ସେ ବୁଝାଇ ଦେବ ସ୍ୱର୍ଗ ନୁହେଁ,
ଲୋଡ଼ା ଆମ ଏଇମାଟି ମର୍ତ୍ତ୍ୟ ବଇକୁଣ୍ଠ ।
ସମୟର ଝୁମୁକା ଦୋଳିରେ
ଖଞ୍ଜା ଆଇନାର ଧାରେ
ତୁମ ମୁହଁ ଦିଶୁଥିବ ସଫେଦ ସୁନ୍ଦର
ଫୁଟୁଥିବ ରକ୍ତପଦ୍ମ ଚଲାପଥ ଧାରେ ।
ସମୁଦ୍ରରେ ଆସିଯିବ ନୂଆ ଚଞ୍ଚଳତା ।

ମରୁଭୂମି ପାଲଟିବ
ତୁମ ଅଭିଷେକ ପାଇଁ
ଘନଶ୍ୟାମଳିମା ଭିଜା ନିଘଞ୍ଚ କାନନ ।
ନଦୀ ତରଙ୍ଗରେ ଆକତମାକତା କେତେ
ଝରାପତ୍ର ବିକଳ ଚାହାଁଣି
ଶେଷ ଚିଠି ଲେଖୁଥିବେ
ଅସହାୟ ଜୀବନର କରୁଣ କାହାଣୀ ।

ସାକ୍ଷୀଥିବେ ଗିରିନଦୀ ଝରଣାର ଧାରା ।
ପୁଣି କ୍ଳାନ୍ତ ପ୍ରଜାପତି
ଜଙ୍ଗଲର ହିଂସ୍ର ପଶୁ, ଭାରି ଭାରି ବିଜନତା
ବିଷଧର ସର୍ପ ଜାତିଜାତି ।

●●●

# ନିର୍ମଳ ମନଟିଏ

ନିର୍ମଳ ମନଟିଏ ଖୋଜିବାକୁ ସିଏ ବାହାରିଲେ
ଖୋଜିଗଲେ ନଈତୁଠ, ଗାଁ ବାଙ୍କ
ସାଗର ସିକତା ପୁଣି
ନଗର ସହର ।

ଖୋଜିବାଟା ହଜିଗଲା ଖୋଜିବା ଭିତରେ
ଦିବାଲୋକ ତଥାପି ସରିନି,
ଅଛି କିଛିବେଳ ବାକି
ସାୟାହ୍ନ ନିମନ୍ତେ ।
ତଥାପି ମିଳିଲା ଯାହା ଶିରୋଧାର୍ଯ୍ୟ କରି
ଆଗକୁ ଚାଲିଲେ ସିଏ ନିର୍ବିକାର ଚିତ୍ତେ ।

ସମୟକୁ ନକରି ଅପେକ୍ଷା,
ଉପେକ୍ଷା କଲେ ଅନ୍ତରେ
ସମାଜର ଫୁଲମାଳି ଅବା ଚୂନକାଳି
ଚାରଣଙ୍କ ଚାଟୁବାଣୀ
ବୃଥା କରତାଳି ।

ପାଖଆଖ ଲୋକମାନେ ବିସ୍ମିତ ହେଲେ
ନିରୂପାୟ, କ'ଣ ବା କରିବେ ?
ଗୁଣୁଗୁଣୁ ହୋଇ କେତେ କ'ଣ କହୁଥିଲେ ।
ନିଜ ନିଜ ଇଲାକା ଭିତରେ
ପବନ ଉଚ୍ଚାଟ ହେଲା,
ଗଛପତ୍ର ହେଲେ ଆନମନା ।
ମାଟିରେ, ପାଣିରେ ଖାଲି ସ୍ତବ୍ଧସ୍ତବ୍ଧ ଭାବ
ଚାରିଆଡ଼େ ଦୀର୍ଘଶ୍ୱାସ ଘାସ ଅନାବନା ।

•••

# ଇପ୍‌ସିତ ମୁହୂର୍ତ୍ତ

ବେଦର ପୃଷ୍ଠାରେ ତୁମେ, ଗାୟତ୍ରୀ ଝଙ୍କାର,
ପ୍ରେମର ନିଷ୍ଠାରେ ବିଜୟିନୀ କଲ୍ୟାଣୀ ସାବିତ୍ରୀ ।
ଲେଲିହାନ ଅଗ୍ନିର ଶିଖାରେ
ପ୍ରଜ୍ୱଳିତ ତୁମେ ଦୀପ୍ତ ଉଲ୍ଲାସର ରେଖା ।

ତୁମେ ଶୂନ୍ୟତାର ମହାସମାରୋହ
ପୂର୍ଣ୍ଣତାର ପରମ ବିସ୍ମୟ ।
ଦିଗେ ଦିଗେ ସ୍ନାୟୁରେ ଶିରାରେ
ସଞ୍ଚରିତ ମଧୁରିମା ତୁମେ ।

ନାମହୀନ ବାସନା ବିହୀନ ଆତ୍ମପ୍ରତ୍ୟୟ ତୁମେ ।
ବିମୁକ୍ତ ଦିଗ୍‌ବଳୟର ବିନମ୍ର ମୌନତା
ଅବିଭକ୍ତ ଆକାଶର ବିଭକ୍ତ ନୀଳିମା ତୁମେ ।
ଆଶାଭରା ଆଶ୍ୱାସନା ନୀରବ ଭାଷାର ।
ତାରା ଫୁଲେ ଭରାରାତି କୁଞ୍ଚକୁଞ୍ଚ ମସୃଣତା ତୁମେ ।
ସାଗରର ଲହରୀରେ ଭଂଗାଭଂଗା କେତେ ଚପଳତା
ସାତତାଳ ପଙ୍କପୋଖରୀରେ
ଫୁଟିଫୁଟି ଆସୁଥିବା
ତୁମେ ଏକ କଇଁର ପାଖୁଡ଼ା ।

ବିଶ୍ୱାସର ବୋଧିଦ୍ରୁମ ଗାଢ଼ ସବୁଜିମା ।
ସୁରଭିତ ଚଲାପଥ ଅନୁଭବ ତୁମେ
ସମୟର ଅଂଶୁଘାତେ ଚନ୍ଦନପରଶ,
ଅପେକ୍ଷାର ଫାଙ୍କେଫାଙ୍କେ ଇପ୍‌ସିତ୍ ମୁହୂର୍ତ୍ତ ।

●●●

# ଭବିଷ୍ୟତ

ଭବିଷ୍ୟତ ଖୁବ୍ ବେଶି ଅଜଣା ଅତିଥି ନୁହେଁ ଯେ
ହଠାତ୍ ଆସି ପହଞ୍ଚିଯିବ ।
ସେ ତ ପୂର୍ବ ଷ୍ଟେସନରୁ ପରଷ୍ଟେସନକୁ
ଆସୁଥିବା ରେଳଗାଡ଼ିଟିଏ ।
ପହଞ୍ଚିବ ଆସି ପ୍ରାୟ ଠିକଣା ବେଳରେ ।

ଛୁଇଁବ ସେ ମାଟି, ଗୋଡ଼ି, ଝରଣା, ସାଗର
ରଙ୍ଗଣୀ ଫୁଲର ରଙ୍ଗ
ରେଣୁ ରେଣୁ ସରୁବାଲି
ଅନେକ ପିଞ୍ଜରା କାଠି
ଚିକ୍‌ଚିକ୍ ପାଉଁଶକୁ ମଶାଣି ଭୂଇଁର ।

ଛାଇ ଆଲୁଅକୁ ଆଣି
ପାଲଟାଣି ସମୟ ସମୁଦ୍ରେ ।
ସାକ୍ଷୀରଖି ଝାଉଁବଣ
ସିକତାର ଦେଶ ।
ଆସିବ ସେ ଅତିକ୍ରମି ଆପଣାକୁ ଆପେ ।

ତଥାପି ସେ କ୍ଲାନ୍ତ ନୁହେଁ
ଛଳଛଳ ଅନାସକ୍ତ ସତ୍ତା
ଇଚ୍ଛାମୟ ମହୁମାଛି ପରି
ଏ ଦିଗରୁ ସେ ଦିଗକୁ
ଉଡୁଥିବ ଆପଣା ଇଚ୍ଛାରେ ।

ସେ କାହାର ନୁହେଁ ବୋଲି କହିଲେ ବି
କେହି ତା'ର ନୁହେଁ ବୋଲି ନ କହିଲେ ବି
ନିଃଶବ୍ଦେ ନିଜକୁ ହଜାଇ
ଆସିବାରେ ଯେତେ ଅଛି ଆଗ୍ରହ ତାହାର
ମାପିବାର ନୁହେଁ ତାହା ମନ ମାନଦଣ୍ଡେ । ●●●

# ଆମନ୍ତ୍ରଣ

· ସୁଶୀତଳ ଛାୟାଦାନ
ତୁମ ପାଇଁ ବଞ୍ଚିବାର ମନ୍ତ୍ର ।
ମନ କଥା ରୂପାୟିତ
ଚିରକାଳ ସବୁଜ ପତ୍ରରେ ।
ବର୍ଷ ପରେ ବର୍ଷ ବିତେ,
ପତ୍ରଝଡ଼ା ଋତୁ ଆସେ ଯାଏ ।
ତୁମେ କିନ୍ତୁ ଅବିଚଳ,
ଚିରଦିନ ସତେ ଅବା
ଦିବ୍ୟଦ୍ରଷ୍ଟା ମୁନିଋଷି ପ୍ରାୟେ ।
ଶ୍ରାବଣର ବର୍ଷା ଆସେ,
ଆସେ ପୁଣି ଚଇତି ପବନ
ଅଂଶୁଘାତ ପଦପାତେ ଏ ପୃଥିବୀ ମନେହୁଏ
କ୍ଳାନ୍ତିକର ଭୀଷଣ ନିର୍ଜନ ।
ସନ୍ଧ୍ୟା ପରେ ସକାଳ ଆସେ
ମାନିନେଇ ପ୍ରକୃତି ନିୟମ
କେତେ କଣ୍ଠୁ ଝରିପଡ଼େ ପ୍ରଭାତୀ ବନ୍ଦନା
ଚିର ଅନୁପମ ତାହା ତୁଳନା ବିହୀନ
ପ୍ରଗତିର ବାର୍ତ୍ତାପାଇଁ ସଂଗ୍ରାମ ତ ବସନ୍ତବିଳାସ
ଆଶାର ଉଜ୍ଜ୍ୱଳରେଖା ଜୀବନର ଶ୍ୟାମଳପ୍ରତିଭୂ
ନୀରବ ସାଧନାର ମହାମନ୍ତ୍ର, ହେ ଦିଗଦ୍ରଷ୍ଟା !
ତୁମେ ଶାନ୍ତ, ନିର୍ବିକାର,
ଶତ୍ରୁହୀନ ପ୍ରଦୀପ୍ତ ପ୍ରୟାସ ।
ଅକ୍ଳାନ୍ତ ଅତନ୍ଦ୍ର ତୁମେ ଜାଗ୍ରତ ପ୍ରହରୀ
ଦିଗେ ଦିଗେ ସୀମା ଆଉ ସୁରକ୍ଷା ବଳୟ ।
ମାଟିରେ ପାଦକୁ ଥାପି ଅନେକ ଦମ୍ଭରେ
କର ତୁମେ ଦିଗ ଓ ଦିଗନ୍ତୁ
ଆଲୋକର ମୁଗ୍ଧ ଆମନ୍ତ୍ରଣ । •••

# ଅସ୍ଥିରତା

ସ୍ଥିରତାର ପ୍ରତିଲୋମେ ଯାହା ମିଳେ
ତାହା ନୁହେଁ ଅସ୍ଥିରତା
ସିଏ ଏକ ଭାବସତ୍ତା, ଯାହାର ଚାରଣଭୂମି,
ଅନ୍ୟ ଏକ ପୃଥକ ଇଲାକା ।

ନିଜକୁ ସେ ଇତସ୍ତତଃ କରି
ନଈବଢ଼ି, ଭୂଚଳନ ଆଣି
ନିର୍ବାସିତ ହେବାର ଭୟରେ
ଅନ୍ୟକୁ ସେ ଦିଏ ନିର୍ବାସନ
ଅକୁଣ୍ଠ ଚିତ୍ତରେ ।

ସେ ଜାଣେ ନାହିଁ, କ'ଣ ସେ ଚାହେଁ
ସେ ବୁଝେ ନାହିଁ ତା' ନିଜ ମର୍ମକଥା ।
ଉତ୍କଣ୍ଠାର ସ୍ୱର ଓ ସ୍ୱାକ୍ଷର
ବହିଥାଏ ନିଜ ଦେହେ କାଳ ନିରବଧି ।

ମର୍ମନ୍ତୁଦ ବଜ୍ରପାତେ ବିବର୍ଣ୍ଣ ଫଗୁଣ
ତା'ର ବନ୍ଧୁ, ତା'ର ସଖା, ପ୍ରାଣର ଦୋସର
ଫଟାଭୂଇଁ ତା'ର ସିଂହାସନ,
ଖାଁ ଖାଁ ଭାବ ଯେତେ ଉପଚାର ତା'ର ।
ସାଇଁ ସାଇଁ ଦୀର୍ଘଶ୍ୱାସ ତା' ପାଇଁ ପବନ ।
ମେଘଢଙ୍କା ଆକାଶ ତା' ଉଦାସ ଚାହାଣୀ
ପ୍ରସାରିତ ନିରର୍ଥକ ବଳୟ ଭିତରେ
ସିଏ ଏକ ଉଦ୍‌ଗ୍ରୀବ ମୂକ ଶୂନ୍ୟସ୍ଥାନ । ●●●

# ନିର୍ଯ୍ୟାସ

ତୁମେ ଛାୟାରେ ବନ୍ଧାପଡ଼ି ମିଠା ମିଠା ହସୁଥାଅ,
ସଂଜ୍ଞା ମଧ ତୁମକୁ ବାନ୍ଧିବାକୁ ଚାହେଁ,
ସହସ୍ର ସହସ୍ର ରଶ୍ମିର ମାଳାରେ
ତୁମେ ଏକା ତୁମ ପରି ସମୁଜ୍ଜ୍ୱଳ
ଆଉ କେହି ନୁହେଁ ।

ପ୍ରବଣତାର ତୁମେ ପ୍ରଥମ ପୁଲକ
ପ୍ରଥମ ଝଲକ ତୁମେ ପୂର୍ଣ୍ଣ ପ୍ରୟାସର
ଆତ୍ମବିଶ୍ୱାସର ପ୍ରଥମ ବିଜୟ ଟୀକା
ହୃଦୟବଭାର ଗନ୍ଧ ଚନ୍ଦନ ପ୍ରଲେପ ।

ମାଟିକୁ, ପାଣିକୁ, ପବନକୁ
ଗଛଲତାକୁ ଆପଣେଇ ନେଉଥିବା
ପରିଛନ୍ନ ମମତା ଯେ ତୁମେ
ସ୍ନେହସିକ୍ତ ମୂର୍ତ୍ତିମନ୍ତ ଜାଗ୍ରତ ପ୍ରହରୀ
ସାରାବିଶ୍ୱ କୋଣେ ଅନୁକୋଣେ ।

ତୁମେ ତ ଫୁଲରେ ରଙ୍ଗ, ମାଟିରେ ସୁରଭି
ଝରଣା ତାନରେ ରାଗ ଆଶାବରୀ ସୁର
ସାଗରର ଲହରୀରେ ଭରା ଉଦ୍ଦାମତା ।
ଧୂଆପୋଛା ଆକାଶର
ନୀଳନୀଳ ପ୍ରତିଶ୍ରୁତି ତୁମେ,
ପ୍ରଜାପତି ଡେଣାରେ ଡେଣାରେ
ଲେସି ହୋଇଯାଇଥିବା ସ୍ମୃତି ଚଞ୍ଚଳତା ।

●●●

# ବିଡ଼ମ୍ବନା

ସମୟର ମେଘମାଳା
ନଇଁ ଆସେ ଧୂଳି ଧରଣୀରେ ।
ପାଦଶବ୍ଦେ ଫୁଟାଏ ସେ ଅନେକ କଦମ୍ବ ।
ଅସୁମାରି ସବୁଜିମା ଫାଙ୍କରେ ଫାଙ୍କରେ ।

ବଳୟରୁ ପରିବ୍ୟାପ୍ତ
ଅସୀମ ଇଲାକା
କଦମ୍ବ ଫୁଲର ବାସ୍ନା ଯାଏ ଡେଇଁ ଡେଇଁ
ସଦ୍ୟଜାତ ଅମାନିଆ ବାଛୁରୀ ପାଦରେ ।
ଦିଗଚକ୍ର ଛୁଇଁ ଦେବାପାଇଁ ।

କେତେ ଆଖି ସାକ୍ଷୀ ଏଠି
ନିଜକୁ ନିରେଖି,
ସବୁ ଏଠି ସତ୍ୟ
ହସ ଆଉ ଲୁହ ମଧ୍ୟେ
ଲୁଚକାଳି ଖେଳଖେଳି ଜୀବନ ଜୀଇଁବା ।

ସତ୍ୟରେ ଅସତ୍ୟ ଦେଖି
ଆତଙ୍କର ଦୀର୍ଘଶ୍ୱାସେ
ଧୂଆଁଳିଆ ଆକାଶ ଅଗଣା ।

ଖାଁ ଖାଁ ବିଜନତା,
ଲାଗେ ସବୁ ଖାଲିଖାଲି
ଜୀବନର ଅନ୍ୟନାମ ଏଠି
ଶୂନ୍ୟ ଫଗୁଆରେ ବନ୍ଧା ଏକ ବିଡ଼ମ୍ବନା । ●●●

# ଝଡ଼ ଶାନ୍ତ ହେଲା ପରେ

ଭାଙ୍ଗିଯାଏ କେତେ ଡାଳ
ଝଡ଼ ଶାନ୍ତ ହୁଏ ।
ପବନ ଥମିଯାଏ, ଆଉ ବର୍ଷା ନାହିଁ,
ସବୁ ହୁଏ ଶୁନ୍‌ଶାନ୍,
ଲାଭକ୍ଷତି ଅଙ୍କକଷା ପାଇଁ ।

ଉଦିତ ସୁବର୍ଣ୍ଣ ସୂର୍ଯ୍ୟ,
ଆକାଶରେ ଥାଇ ଦିଏ ଆଶ୍ୱାସନା ।
କହେ, 'ଭୟ କର ନାହିଁ ।
ହୁଅ ନାହିଁ ଏତେ ଆନମନା ।'

ଚାହୁଁ ଚାହୁଁ ପତର କଅଁଳେ
ନୀଳିମା ପହଁରିଯାଏ ବନଲତା କୁଞ୍ଜେ
ପେନ୍ଥାପେନ୍ଥା ଫୁଲକଢ଼ି ଝୁଲେ ଅଳସରେ ।

ନଈବାଙ୍କ ଚମକି ଚାହେଁ
ପାଟ ବିଲେ ରହିଯାଏ ନୀଡ଼ଫେରା ସଂଜ
ଆକାଶ ଯେ ଆସେ ନଇଁ ଅଭୟ ମୁଦ୍ରାରେ
ପବନ ପ୍ରବାହେ ଚାଳି ଆଲଟଚାମର ।

ଚେତନାର ନୀଳାଭ ଦିଗନ୍ତେ
ନୂଆ କେତେ ନିଃସର୍ତ୍ତ ମୁହୂର୍ତ୍ତ
ଗୁଣୁଗୁଣୁ ଗାଇଯାନ୍ତି ଅନେକ ସଙ୍ଗୀତ ।
ଭିନ୍ନ ତାଳ, ଲୟ ଭିନ୍ନ, ଭିନ୍ନ ପରିଭାଷା
ଅଦୂରନ୍ଧ ସନ୍ଧାନରେ
ସେମାନେ ତ ଏକ ଏକ ନୂତନ ସଂକେତ ।

●●●

# ଅଘୋଷ ସଂଳାପ

ଏ ମାଟିକୁ ସେ ଖସି ଆସେ ସୁନାପିଲା ପରି
ହାତରେ ସୁନା କଳସ
ନିଜଠାରୁ ଛପିଛପି ଅଳ୍ପ ହସିହସି ।
ବର୍ଣ୍ଣନାର ଅନ୍ତରାଳେ
ଧୂଆଁଳିଆ ଦିଗପରି ସ୍ମୃତିଟିଏ ହୋଇ ।

ରାଜା ହେବାପାଇଁ ଦିଏ ସୁନ୍ଦର ପୋଷାକ
ଜରିଦିଆ ମଖମଲି ପାଟର ଝାଲର
ସିଂହାସନ ପାରିଦିଏ,
ଦରବାର ସାଜିଦିଏ, ରଜନୀ ଗନ୍ଧାରେ ।
ପାତ୍ରମନ୍ତ୍ରୀ ଆସିଥାନ୍ତି
ଭାଟ ଆଉ ରାଜକବି,
ରାଜଗୁରୁ ବସିଥାନ୍ତି ହାତ ପାଆନ୍ତାରେ ।

କାବ୍ୟଶାସ୍ତ୍ର ବିନୋଦନ, ନୂପୁର ନିକ୍ୱଣ
ଅଳସ ରାଗିଣୀ ଛୁଏଁ ଫୁଲର ପାଖୁଡ଼ା
ଚିତ୍ତବୃତ୍ତି ଥକିଯାଏ ଅଘୋଷା ସଂଳାପ ପରି
ସକାଳ ଆକାଶ ଦିଶେ କେମିତି କେମିତି ।

ଖରାବଢ଼େ
ନିଛାଟିଆ ତୋଟାବଣ
ଜଳିଜଳି ଯାଏ ।
ଗଛସବୁ ଦିଶୁଥାଏ ଶୁଖିଲା ଶୁଖିଲା ।
ବେଳେବେଳେ ଦୂରେଦୂରେ
କୋଇଲିର କ୍ଷୀଣସ୍ୱର
ଅଳ୍ପ ଶୁଭୁଥାଏ । ●●●

# ବଙ୍କା ସିଧା

ସମୟ ଯାଉଛି ଚାଲି
ନଈ ପାଣି ପରି
ତୁଠେତୁଠେ ନାଚିନାଚି
କେତେ ଓଠେ ହସ ଦେଇ ଭରି ।

ବେଳେବେଳେ ଗୋଳିଆ ପାଣିରେ
ଦିଶେ ନାହିଁ ମୁହଁ,
ଖାଁ ଖାଁ ବିଜନତା
ଶୀତୁଆ ପବନ ଲାଗି
ଥରି ଉଠେ ଦେହ ।

ବଙ୍କାସିଧା ଯାତ୍ରା ପଥ
ଗାଁଗଣ୍ଡା ନଗରୁ ସହରୁ
ଆବର୍ଜନା ଧୋଇ ନେବା ପାଇଁ
ନଈ ମାଡ଼ି ଚାଲିଥାଏ ଆଗକୁ ଆଗକୁ ।
ବେଳେବେଳେ ବାଙ୍କରେ ବାଙ୍କରେ
ଅଟକି ଯାଏ ନିଜକୁ ଖୋଜିବା ପାଇଁ ସେ
ଦିଗ ହଜା ବାଟୋଇ ପରାଏ ।

ଠାଏ ଠାଏ କଦମ୍ବ ଗଛର ଛାଇ
ବାନ୍ଧିରଖେ ମନ,
ବଂଶୀଧ୍ୱନି ଶୁଭୁଥାଏ ଅଦୂର କାନନୁ ।
ଆଉ ମଧ ଶୁଭେ ହମ୍ବାରଡ଼ି ।
ଶବ୍ଦରେ, ନଦୀତରଙ୍ଗେ
ବଣଫୁଲ ପଡ଼େ କେତେ ଝଡ଼ି ।

●●●

# କାଗଜଫୁଲ

କାଗଜଫୁଲର ସହର ଯାଉଛି ଜଳି
କିଏ ଲଗାଇଲା ନିଆଁ
କିଛି ବୁଝି ହେଉ ନାହିଁ ।
ଚାରିଆଡ଼େ ଭର୍ତ୍ତି ଖାଲି ଧୂଆଁ ଆଉ ଧୂଆଁ ।

ନାକ ଆଖି ଆକତାମାକତା
ଲୋକମାନେ ଧଇଁସଇଁ
ଅହଂକାର ଭ୍ରୂକୁଟୀ କୁଞ୍ଚିତ
ବ୍ୟସ୍ତତାର ପଟାନ୍ତର ନାହିଁ ।

କିଏ ବା କାହାକୁ ଚିହ୍ନେ, ଚିହ୍ନିଲେ ତ ଅସୁବିଧା ।
ତେଣୁ ଯାଆନ୍ତି ସଭିଏଁ
ଦୋ ଦୋ ଚିହ୍ନା, ଅଧାଚିହ୍ନା ପରି ।
ବେଳେବେଳେ ଚଲାବାଟେ
ସରୁସରୁ ନମସ୍କାର ମିଳେ ।
ବହୁବର୍ଣ୍ଣୀ ଡାକ ଶୁଭେ 'ନବ ବାବୁ' 'ଘନ ବାବୁ'
ପୁଣି କେବେ 'ନବଘନ ବାବୁ' ।

ଲାଭ ସରିଗଲେ
ସେହି ମୁହଁ ବୁଲିଯାଏ
ଉତ୍ତରୁ ଦକ୍ଷିଣ ଆଉ ଦକ୍ଷିଣୁ ଉତ୍ତର
ପାନପିକ ପକାଇଲା ପ୍ରାୟ ।

•••

# ତଥାପି

ମୁଁ ଆସିଛି ଯିବା ପାଇଁ,
ଫେରିଯିବା ପାଇଁ,
ଏ କଥାରେ ଏତେ ଟିକେ
ଅଙ୍କକଷା ନାହିଁ ।

ଯିବା ପାଇଁ ଆସିଛି ବୋଲି ତ
ଏ ଜୀବନ ଜୀଇଁବାକୁ ଭଲ ଲାଗେ ଏତେ ।
ଭଲ ଲାଗେ ଆଖିଭରି ଦେଖିବାକୁ
ନୀଳ ଆକାଶକୁ,
ଧରିତ୍ରୀର ହେମଶସ୍ୟ, ନରମ ଘାସକୁ ।

ଭଲ ଲାଗେ ଶୁଣିବାକୁ କୋଇଲିର ଗୀତ
ଝରଣାର କଳକଳ ତାନ,
ଭଲ ଲାଗେ ଶୁଣିବାକୁ
ଭ୍ରମରର ଅସ୍ପଷ୍ଟ ଗୁଞ୍ଜନ ।

ଭଲଲାଗେ ଚାଲିବାକୁ କେଦାରେ ପ୍ରାନ୍ତରେ
ନଈବନ୍ଧ ଧାରେ ଧାରେ
ସଜ ସକାଳରେ ପୁଣି ଗୋଧୂଳି ବେଳାରେ
ଗାଇ ଗାଇ ଗୁଣୁଗୁଣୁ ଅନେକ କବିତା ।

ଭଲ ଲାଗେ ବସିବାକୁ ଗଛର ଛାଇରେ
ଏ ଗଛ ମୋହର ନୁହେଁ,
ଏ କଥା ମୁଁ ଜାଣେ ।
ତଥାପି କାହିଁକି ବନ୍ଧୁ !
ଏଇ ଗଛ, ମତେ ଭାରି
ଆପଣାର ଲାଗେ ।
ମନ ପଡ଼ିଯାଏ ବନ୍ଧା
ଏ ଗଛର ମୁଗ୍ଧ ନିମନ୍ତ୍ରଣେ । ●●●

# ସଞ୍ଜରେ ଭାବନା

ସଜ ସକାଳରେ ତୁମ ସହ ଦେଖା ହୋଇଥିଲା
ଖାଲି ଦେଖା ନୁହେଁ, ହସ ଖେଳ କେତେ ତୁମ ସହ,
ଆଉ ବେଶୀ ମନେ ନାହିଁ, ପ୍ରାୟ ମନେ ନାହିଁ ।
ସେତେବେଳେ ସୂରୁଯଙ୍କ ନାଲିଆ କିରଣ
ଗଛପତ୍ରରେ ପଡ଼ି ଆସୁଥିଲା,
ଝଡ଼ି ପଡୁଥିଲା, ଉଡ଼ା ଫଗୁ ପରି
ପଦ୍ମଫୁଲ ଫୁଟି ନ ଥିଲା,
ଫୁଟିବ ଫୁଟିବ ବୋଲି ପ୍ରସ୍ତୁତ ହେଉଥିଲା ମାତ୍ର ।

ତା'ପରେ ଖରା ଟିକିଏ ବଢ଼ିଲା
ଅଳପ ଅଳପ ହୋଇ ବେଶୀ ବଢ଼ିଲା
ନାଲିଆ କିରଣ ଧଳା ହେଲା
ଉଜ୍ଜ୍ୱଳ ହେଲା, ଅଧିକରୁ ଅଧିକ ଉଜ୍ଜ୍ୱଳ ହେଲା
ମୋ ଆଖି ଏତେ ଆଲୁଅରେ କେମିତି କେଜାଣି
ତୁମକୁ ଦେଖିପାରିଲା ନାହିଁ
ତୁମେ ଥିଲ, ମୁଁ କିନ୍ତୁ ତୁମକୁ ଦେଖିପାରୁ ନଥିଲି
ସତେ ଅବା ଆଖି ମୋର ଜଳକା ଧରିଥିଲା ।

ଛାଇ ଲେଉଟିଲା, ଖରାର ତେଜ କମିଲା
ଗଛପତ୍ରର ମଥାନରେ ଖରା ମାଖି ହୋଇଗଲା,
ପବନରେ ଗଛପତ୍ର ଝୁଲୁଥିଲାବେଳେ, ଖରା ମଧ ଭାସୁଥିଲା,
ଚାରିଆଡ଼ ଶୀତଳ ଶୀତଳ ଲାଗୁଥିଲା,
କେତେ କ'ଣ ବୁଝି ହେଉଥିଲା,
ହେଲେ କିଛି କହି ହେଉ ନ ଥିଲା,
ତୁମେ ପୁଣି ଦିଶିଲ, ଅଳ୍ପଅଳ୍ପ ହସିଲ
ମୋ ମୁହଁରେ କିନ୍ତୁ ହସ ନ ଥିଲା
ଖେଳିବାକୁ ଦେହରେ ଆଉ ବଳ ନ ଥିଲା । ●●●

# ଧର୍ମକ୍ଷେତ୍ର

ତୁ ମୋ ଶରଶଯ୍ୟାର କାରଣ ନୋହୁରେ ଅର୍ଜୁନ
ଅକାରଣ ନୁହେଁ ତୋ ଆଶଙ୍କା
କାରଣର କାରଣ କେଉଁଠି ତା' ତ ମୁଁ ଜାଣେ
ଜାଣେ ବୋଲିତ ଶୁଣୁଶୁଣୁ ସବୁ ବୁଝିଗଲି
ବୁଝିଗଲି ବୋଲି ତ ତୋ ପ୍ରସ୍ତାବକୁ ମାନି ନେଲି
ଶରବିଦ୍ଧ ହେଲି, ଶରଶଯ୍ୟା କଲି ।

ଶରମତେ ବିଦ୍ଧ କରିଛି କି ମୁଁ ଶରକୁ
ତାହା ଆକଳନ କରିବାକୁ ହେବ
ଏମିତି ଦେଖିଲେ ଯାହା, ସେମିତି ସେ କଥା ନୁହେଁ
ଏକଥା ମୁଁ ବୁଝିଛି, ବୁଝୁଛି ଓ ବୁଝୁଥିବି ମଧ୍ୟ ।
ଶରବିଦ୍ଧ କଷ୍ଟଠାରୁ ଆଶୀର୍ବାଦର ମହତ୍ତ୍ୱ ଓ
ପ୍ରତିଜ୍ଞାର ଗୁରୁତ୍ୱ ମୋ ପାଇଁ କି ବେଶୀ
ଏ କଥା ମୁଁ ଜାଣେ ।

ଆଶାର ଆନନ୍ଦ ମୋର କଢ଼ ନୀଳକଇଁ
ଫୁଟିବ ପାଖୁଡ଼ା ମେଲି
କଷ୍ଟର କୁହୁଡ଼ିକାଟି ଆଗକୁ ଅବଶ୍ୟ
ବିନା କଷ୍ଟେ ମିଳିବେ କି କୃଷ୍ଣ ?
ଏକଷ୍ଟ ମୋ ପାଇଁ ନୁହେଁ, କେବଳ ହସ୍ତିନାପାଇଁ ନୁହେଁ,
ଜଗତ କଲ୍ୟାଣ ପାଇଁ, ଧର୍ମର ପ୍ରତିଷ୍ଠା ପାଇଁ
ଏ କଥା ମୁଁ ଜାଣେ
ମୋ ଭାରତ, ଭରତର ଦେଶ
ଦଧୀଚିର ଦେଶ ଆଉ ଶିବିରାଜନର
ସତ୍ୟପାଇଁ ବନବାସୀ ଏଠି ରାଜପୁତ୍ର
ବ୍ୟକ୍ତିଠୁ ସମଷ୍ଟି ବଡ଼
ନିଜଠାରୁ ଅନ୍ୟବଡ଼
ଭୋଗଠାରୁ ତ୍ୟାଗ ବଡ଼
ବଡ଼ ଏଠି ସତ୍ୟମେବ ଜୟତେର ସ୍ୱର । ●●●

# ହେ ବସନ୍ତ ! ତୁମେ ଆସ

ହେ ବସନ୍ତ,
ଧୀରଧୀର ପାଦ ଚାଲି
ଆସ ତୁମେ ଆସ ।୦।

କେତକୀ ପାଖୁଡ଼ାରେ ମଣ୍ଡି ଦିଅ
କାନନିକାର ଗଭା
ଅଶୋକରେ ଢାଳି ଦେଇ
ଅରୁଣ ପରାଗ
ତୁମେ ଝୁଲିଝୁଲି ଆସ
ଆସ ତୁମେ ଆସ
ତୁମେ ତ ଆସିବ ବୋଲି
ବନଲକ୍ଷ୍ମୀ,
ନାଗେଶ୍ୱର ପରାଗ ଝରାରେ
ମୋଲାଏମ କରିଛନ୍ତି
ତୁମ ଚଲାବାଟ
ଆସ ତୁମେ ଆସ ।

ତୁମ ଅନୁକମ୍ପା
ଚମ୍ପା ହୋଇ ଫୁଟେ
ମଲ୍ଲୀ ତୁମ ହସରେଖା
ସ୍ନିଗ୍ଧତାର ମୁଗ୍ଧ ଦରହାସ
ତୁମ ଓଠ ଧାରେ ଫୁଟେ
ଆସ ତୁମେ ଆସ
ଧୀର ପାଦ ଚାଲି
ଆସ ତୁମେ ଆସ ।

●●●

# ସନ୍ଧ୍ୟାରେ ତୁମ ବେଶ

ସନ୍ଧ୍ୟା ଲାଜେଇ ଲାଜେଇ ଆସୁଥିଲାବେଳେ
ତୁମ ବେଶ ଭାରି ସୁନ୍ଦର ଦିଶୁଥିଲା
ନାଲି ଓଠରେ ହସର ଫୁଲ ପାଖୁଡ଼ା ଫିଟି ପଡୁଥିଲା
ଚାହାଣିରୁ ଝରିପଡ଼ୁଥିଲା ଅମାପ କରୁଣାର
ଆଲୋକିତ ମୋତି ମାଳା ।

ତୁମେ କଥା କହୁ ନଥିଲ, ଗୀତ ବି ଗାଉନଥିଲ
ହେଲେ ଅମୃତଭରା ଧ୍ୱନି ଶୁଭୁଥିଲା
ଗୀତର ଲହରେ ଭିଜି ଯାଉଥିଲା
ମୋର କାନର ବିଜନ ବେଳା
ଗନ୍ଧ ଗହନ ସନ୍ଧ୍ୟାରେ, ଚମ୍ପାଫୁଲ ବାସୁଥିଲା
ମେଞ୍ଚା ମେଞ୍ଚା କାମିନୀଫୁଲ ଝୁମିଝୁମି
ଅଳସ ଭାଙ୍ଗୁ ଥିରେ ସହଜ ମୁଦ୍ରାରେ ।

ଓଜନିଆ ଲାଗୁଥିଲା, ତୁମ ଉପସ୍ଥିତି
ତୁମେ ଥିଲ, ଆଉ ଖୁବ୍ ପାଖରେ ଥିଲ
କେମିତି କେମିତି ଲାଗୁଥିଲା
ପରିପୂର୍ଣ୍ଣ ଲାଗୁଥିଲା
ସତେ ଅବା ପୂର୍ଣ୍ଣିମାର ଜହ୍ନ ।
ତୁମେ ଶାଶ୍ୱତ ଚିରନ୍ତନ, ତୁମ ସ୍ୱର ଅନାହତ ସ୍ୱର
ତୁମ ରୂପ ସୁନ୍ଦର-ସୁଠାମ-ଅନୁପମ-ନିତ୍ୟ ଓ ନୂତନ ।

●●●

# ତୁମେ ଅଛ ବୋଲି

ତୁମେ ଅଛ ବୋଲି
ଦୁଃଖ ଆସିବ ଆସିବ ବୋଲି
ଆସିପାରୁ ନାହିଁ
ଅପେକ୍ଷା କରିଛି, ତୁମେ ଟିକେ ଆଡ଼ ହେଲେ
ଝାମ୍ପି ପଡ଼ିବ
ବନ ଗହନର ଝରଣାକୂଳରୁ ବାଘ ଝାମ୍ପିଲା ପରି ।

ସେ ଜାଣେ ନାହିଁ, ତୁମେ ଘୁଞ୍ଚିବ ନାହିଁ
ପାଖେ ପାଖେ ଛାଇପରିଥିବ ମୋର
ଓଗାଳିବ ମତେ ଚାରିପଟୁ
ଅଧଃରୁ ଉର୍ଦ୍ଧ୍ୱରୁ, ଦଶଦିଗୁଁ ବେଢ଼ିବେଢ଼ି
ତୁମେ ଟଳିବ ନାହିଁ, ଅଟଳ ତୁମେ
ତୁମେ ଚଳିବ ନାହିଁ, ଅଚଳ ତୁମେ

ମୁଁ କିନ୍ତୁ ଟଳିଯିବି, ଚଳି ଯିବି, ଭଳି ଯିବି
କେତେ କଥାରେ, କେତେ ତରଙ୍ଗରେ
କେତେ ଢଙ୍ଗରେ, କେତେ ଛନ୍ଦରେ ପୁଣି କେତେ ଗନ୍ଧରେ
ଆଉ ସେତିକି ବେଳେ ସେ ଝାମ୍ପି ପଡ଼ିବ,
ମୋ ବେଶ ବାସ ଅସଜଡ଼ା ହୋଇଯିବ
ପାଟିଖନି ବାଜିଯିବ
ମୁଁ ଦଉଡ଼ିବାକୁ ଚାହିଁଲେ ମଧ୍ୟ ଦଉଡ଼ି ପାରିବି ନାହିଁ
ମୋ ପାଦରେ ମୋ ପାଦ ଛନ୍ଦି ହୋଇଯିବ ।

●●●

# ପାହିବ ରାତି

ପାହିବ ରାତି,
ହେବ ପାହାନ୍ତି
ବାଜିବ ଅରୁଣ କିରଣ କାନ୍ତି ।୦।

ବହିବ ଯେ ଚିର ମଧୁମଳୟ
ସାଜିବ ଏ ଧରା ସୁଧା ବଳୟ
ମାନବ ହୋଇବ ଯେ ଅତିମାନବ, ଭରିଯିବ ସୁଖ ଶାନ୍ତି ।୧।

ସରଗ ହୋଇବ ମରତ ମାଟି
ଦେବତାଙ୍କ ବାସ ହୋଇବ ଏଠି
ବହିବ ଆନନ୍ଦ ମନ୍ଦାକିନୀ ଧାରା ଝରାଇ ଆଲୋକ ଦୀପ୍ତି ।୨।

ନୂଆ ହେବ ମନ ନୂଆ ପରାଣ
ନୂଆ ଦେହ ପୁଣି ନୂଆ ଜୀବନ
ଗଛ ପତରରେ ନୂଆ ସବୁଜିମା ଫୁଲ କଢ଼ି ପେନ୍ଥିପେନ୍ଥି ।୩।

ସ୍ନେହ ଦୟାକ୍ଷମା ଶ୍ରଦ୍ଧା ଅଶେଷ
ଜୀବନେ ଜୀବନେ ପ୍ରୀତି ପିୟୂଷ
ସାରା ବିଶ୍ୱ ହେବ ଏକ ପରିବାର ବିରାଜିବ ବିଶ୍ୱପ୍ରୀତି ।୪।

●●●

# ପ୍ରତିଧ୍ୱନି




ଡକ୍ଟର ଶରତ ଚନ୍ଦ୍ର ରଥ

ପ୍ରକାଶ କାଳ : ୧୯୯୯
ପ୍ରଚ୍ଛଦ : ବିଭୁ ପ୍ରସୂନ

# ନିଜ କଥା

ପ୍ରକୃତି ହେଉଛି ପରମେଶ୍ୱରଙ୍କର ବାହ୍ୟତମ ବ୍ୟାବହାରିକ ରୂପ । ସୃଷ୍ଟି ହେଉଛି ପ୍ରକୃତିର ଅଂଶ ବିଶେଷ । ତେଣୁ ପ୍ରକୃତିର ସମ୍ବନ୍ଧ ସୃଷ୍ଟିସହ ଅଙ୍ଗାଙ୍ଗୀଭାବେ ଜଡ଼ିତ । ସନ୍ଧ୍ୟାସକାଳ ତଥା ଶ୍ରାବଣଫଗୁଣର ପ୍ରଭାବରେ ସମଗ୍ର ସୃଷ୍ଟି ଅନ୍ତେ ବହୁତେ ପ୍ରଭାବିତ । ପ୍ରଭାତୀ ଆକାଶର କ୍ରମବର୍ଦ୍ଧିଷ୍ଣୁ ଉଜ୍ଜ୍ୱଳତା କାଉକୁ ରାବିବାକୁ ପ୍ରେରଣାଦିଏ । ଫୁଲଫଗୁଣର ମନଭୁଲା ପରିବେଶ କୋଇଲିକୁ ଗୀତ ଗାଇବାକୁ ଅନୁରୋଧ ଜଣାଏ । ଆଷାଢ଼ର ମେଘଧ୍ୱନି ଶୁଣି କଦମ୍ବ ଫୁଟେ । ଶ୍ରାବଣର ମେଘମାଳା ଦେଖି ମୟୂରର ପାଦ ଚହଲିଯାଏ, ଝରୁ-ଚନ୍ଦ୍ରିକା ଦୋହଲିଯାଏ । ମାଦକତାର ମୋହନ ବିଳାସ ରୂପପାଏ ନୃତ୍ୟର ଛନ୍ଦରେ । ଶରତର ରମ୍ୟବିଭବ ଆଣିଦିଏ ଶେଫାଳି ଗଛରେ ଫୁଲର ସମ୍ଭାର । ବନଝରଣାର ମଧୁର ସଙ୍ଗୀତର ଲତାକୁଞ୍ଜ ଆତ୍ମହରା ହୁଏ । ବିତାନରୁ ଫୁଲଝରାଇ ପ୍ରୀତି ପ୍ରବଣତାର ଲଳିତ ଆଲେଖ୍ୟ ସେ ଆଙ୍କିଦିଏ । ନିର୍ମଳ ଜହ୍ନରାତି, ବିଜନ ବନବିଥି ଓ ବଣଫୁଲର ମଧୁଗନ୍ଧରେ ପଥିକର ପାଦ ଅଟକି ଯାଏ । କ୍ଷଣକ ପାଇଁ ହେଲେ ମଧ ସେ ଆପଣାକୁ ପାଶୋରି ଯିବାକୁ ପାଶୋରି ଯାଏନାହିଁ । ଜଣାପଡ଼େ ସତେ ଅବା ଉଚ୍ଚଭୂମିରୁ କିଏ ଆସି ଅଳ୍ପ ହସି ଗାଇଯାଉଛି ସୁଧାଭରା ଲାବଣ୍ୟ-ରାଗିଣୀ । ନୀଳ ସାଗରର କୁଞ୍ଜକୁଞ୍ଜ ଲହରୀରେ ବିଞ୍ଚି ହୋଇଯାଏ ନୀଳିମ ରାଗର ସୁଷମ ବିଭବ । କୂଳରେ ଉତ୍ତାଳ ତରଙ୍ଗ ମାଳାରେ ସିକ୍ତହୋଇ ସିକତା ଅଭିଷିକ୍ତ ହୁଏ ଅମ୍ଳାନ ଆନନ୍ଦରେ ।

ପ୍ରକୃତିର ରମ୍ୟ ବିଭବ ବ୍ୟତୀତ ଆଉ ମଧ ଅଛି ଏକ ଭୀମଭୈରବ ଅଭିବ୍ୟକ୍ତି । ବାତ୍ୟା ବିକ୍ଷୁବ୍ଧ ବାତାବରଣରେ ପବନର ରୁଦ୍ର ସଙ୍ଗୀତ ଶୁଣିଲେ ମନ ଶଙ୍କାକୁଳ ହୁଏ । ଘଡ଼ ଘଡ଼ି ଶବ୍ଦରେ ସ୍ତବ୍ଧ ହୋଇଯାଏ ଧରିତ୍ରୀର ମାଟି । ପ୍ରବଳ ଗ୍ରୀଷ୍ମପ୍ରବାହ ଦେହରେ ଆଣିଦିଏ କ୍ଳାନ୍ତି ଓ ମନରେ ଭୟମିଶା ବିରକ୍ତି। ପ୍ରକୃତିର ଭୀମକାନ୍ତ ଅଭିବ୍ୟକ୍ତି ଦ୍ୱାରା ସାଧାରଣ ମଣିଷ ଅପେକ୍ଷା କବିର ସ୍ପର୍ଶକାତର ଚିତ୍ତବୃତ୍ତି ଅଧିକ ପ୍ରଭାବିତ ହୁଏ । ମୁହୂର୍ତ୍ତକ ପାଇଁ ହେଲେ ମଧ ସେ ନିଜକୁ ହଜାଇଦିଏ କେଉଁ ଏକ ଅଜଣା ରାଜ୍ୟରେ ।

ହଜାଇ ଦେଇ ନୂଆ ନୂଆ ଭାବନାର ଛାଇ ଆଲୁଅରେ ନିଜକୁ ସେ ଖୋଜିବୁଲେ । ସେହି ଭାବନା ରୂପ ପାଏ ଅଭିନେତାର ଅଭିନୟରେ, ନର୍ତ୍ତକର ନୃତ୍ୟରେ ସ୍ଥପତିର ସ୍ଥାପତ୍ୟରେ, ଚିତ୍ରକାରର ଚିତ୍ରରେ । ଏମାନେ ପ୍ରତ୍ୟେକ କବି ପଦବାଚ୍ୟ କାରଣ କବିର ପ୍ରକୃତ ଅର୍ଥ ହେଉଛି ସ୍ରଷ୍ଟା । ଲିପିଶିଳ୍ପୀର ଲିପିମାଳାରେ ଫୁଟିଉଠେ ସେହି ଭାବନାର ଅନୁପମ ରୂପରେଖ ।

ପ୍ରକୃତି ପ୍ରଭାବରେ ପ୍ରଭାବିତ ମୋର ଚିତ୍ତବୃତ୍ତିର ଲିପିଗତ ରୂପ ଉକ୍ତ ପୁସ୍ତକରେ ସ୍ଥାନିତ କେତକ ଗୀତି କବିତାରେ ପ୍ରକଟିତ । ଆଉ କେତେକ କବିତାରେ କିଛି ରହସ୍ୟବାଦୀ ଅନୁଚିନ୍ତା ରହିଛି ଯାହା ଆଧ୍ୟାତ୍ମିକତାର ଅନ୍ୟତମ ପରିଭାଷା । ପୂର୍ବରୁ ପ୍ରକାଶିତ ମୋର କେତେକ ଗୀତି କବିତା ପୁସ୍ତକ ବରେଣ୍ୟ ପାଠକମାନଙ୍କ ଦ୍ୱାରା ଆଦୃତ ହୋଇଛି । ପାଠକମାନଙ୍କର ଅସୀମ ଆନ୍ତରିକତା ମତେ ଏଇ ପୁସ୍ତକ ପ୍ରଣୟନ ଦିଗରେ ପ୍ରେରଣା ଦେଇଛି ।

ବିନୀତ
ଲେଖକ

# ଆଶାଦୀପ

ଏଇ ମାଟି ଯେବେ ପ୍ରବାସ ହୁଅନ୍ତା
ଲାଗନ୍ତା କି ଏଥି ମନ
ଏ ନୁହେଁ ପ୍ରବାସ, ଆଉ କିଛି କଥା
ଅଛି ଏଥି ସଂଗୋପନ ॥୦॥

ଝରିଯିବା ପାଇଁ ଫୁଟଇ କି ଫୁଲ
ପ୍ରତି ପ୍ରଭାତରେ ହସି
ଭାଙ୍ଗିଯିବା ପାଇଁ ନୀଳ ସାଗରରେ
ଉଠେ କି ଲହରୀରାଶି
ଝଡ଼ିଲେ ବି ଫୁଟେ, ଭାଙ୍ଗିଲେ ବି ଉଠେ, ଭରିବାକୁ ଶୂନ୍ୟସ୍ଥାନ ॥୧॥

ଗଭୀର ନିଶିରେ ଝଡ଼ ବତାସରେ
ଭାଙ୍ଗେ କେତେ ଗଛ ଡାଳ
ସକାଳ ସୂରୁଯ ଗଛକୁ ଦେଖାଏ
ଆଶାଦୀପ ଝଲମଲ
ଆସେ କିଶଳୟ, ଶୋଭନ ବଳୟ, ଦରହସା ଯଉବନ ॥୨॥

ଗୋଧୂଳି ଲଗନେ ସରିଥାନ୍ତା ଯେବେ
ସମୟର ଆୟୁରେଖା
ମଉଳା ମନରେ ଅଧା ରହିଥାନ୍ତା
କବିର କବିତା ଲେଖା
ଶେଷକଥା ନୁହେଁ ଅମାନିଶି ବୋଲି କହୁଛି ପୂର୍ଣ୍ଣିମା ଜହ୍ନ ॥୩॥

•••

# ଝରଣାର ଗୀତି

ବରଷା କି କେବେ ଭାବିଚିନ୍ତି ଝରେ
ଇଏ ନଦୀ ଇଏ ସାଗର ।
ଭରସା କି କେବେ ଭାବୁଥାଏ ବସି
ଇଏ କାଠ ଇଏ ପଥର ॥୦॥

ମୟୂର କି କେବେ କାହାକୁ ପଚାରେ
କରିବ କି ନାହିଁ ନୃତ୍ୟ ।
କୋଇଲି କେବେ କି ବସି ବସି ଭାବେ
ଗାଇବ କି ନାହିଁ ଗୀତ ।
ଶିଶିର କେବେ କି ଭାବିଚିନ୍ତି ଝରେ ଇଏ ଦୂବ ଇଏ ପତର ॥୧॥

ଚନ୍ଦନ କେବେ କି ଭାବି ଚିନ୍ତି ବାସେ
ଇଏ ରାଜା ଇଏ ପ୍ରଜା
ଦେବତା କି କେବେ ଭାବିଚିନ୍ତି ହସେ
ଇଏ ନାତି ଇଏ ଅଜା ।।
ଜୋଛନା କି କେବେ ଭାବିଚିନ୍ତି ଝରେ ଇଏ କଇଁ ଇଏ ଟଗର ॥୨॥

ସୂର୍ଯ୍ୟ କି କେବେ ବସି ଭାବୁଥାଏ
ଇଏ ବଡ଼ ଇଏ ସାନ
କାହାକୁ ଅଳପ କାହାକୁ ଅଧିକ
କିରଣ କରେ କି ଦାନ ।
ଆହା ପଦ ପାଇଁ ମଣିଷର ହାଏ କେତେ ଅଙ୍କକଷା ବେପାର ॥୩॥

●●●

# ଭିଜା ପବନ

ମୁଁ ଯେ ଆଶାର ଶ୍ରାବଣ ହୋଇ
ଦିନେ ଯିବି ଛୁଇଁ ବଇଶାଖି ଭୁଇଁ
ଚନ୍ଦନ ପରଶ ନେଇ ॥୦॥

ବିଜୁଳି ନୁହେଁ ଏ ମମତା ଝଲକ
ଘଡ଼ଘଡ଼ି ମୋର ଅନ୍ତରର ଡାକ
ଭିଜା ପବନରେ ଝୁମର ଝୁଲିବି ବନ-ଗିରି-ଦରି ଭୂଇଁ ॥୧॥

ସବୁଜ କେଦାରେ ହସିବ ଧରଣୀ
ନଦୀରେ ଆସିବ ନୀଳ ନୀଳ ବେଣୀ
ବନେ ଉପବନେ ହସୁଥିବ ଫୁଲ ନରମ ନୟନେ ଝୁହିଁ ॥୨॥

ପାଇବାକୁ ନୁହେଁ ଯଶ ଗଉରବ
ଅବା ଆନନ୍ଦର ମଧୁ ସଉରଭ
କାହା ଆଦେଶରେ ମୁଁ ଚଳ ଚଞ୍ଚଳ ତାହା ମୁଁ ତ ଜାଣି ନାହିଁ ॥୩॥

●●●

# ସ୍ମୃତିରେଖା

ମୁଁ ଶୁଣିଛି କେତେ ବିହଙ୍ଗ କାକଳି ଗହନ କାନନେ ଭ୍ରମି
ମୁଁ ଦେଖିଛି କେତେ ତଟିନୀ ତଟର ସୁଜଳା ସୁଫଳା ଭୂମି ॥୧॥

ମନ୍ଦିର, ମଠ, ମସ୍‌ଜିଦ୍ ପୁଣି ଗୀର୍ଜା ଶୀତଳ ଛାଇ
ମୋ' ପ୍ରାଣ ଭୂମିରେ ଶାନ୍ତି ଆଣିଛି ମଧୁର ପରଶ ଦେଇ ॥୨॥

ଗୀତା, ଭାଗବତ, କୋରାନ୍, ପୁରାଣ ପୁଣି ବାଇବେଲ୍ ଗ୍ରନ୍ଥ
ପଢ଼ିଛି, ଶୁଣିଛି ଏତିକି ଜାଣିଛି ସବୁରେ ଏକଇ ସତ୍ୟ ॥୩॥

ରୋଜା ମୁଁ ପାଳିଛି କେତେ ବାର ପୁଣି ରାଇଦାମୋଦର ବ୍ରତ
ଖ୍ରୀଷ୍ଟ ମାସର ବତୀ ମୁଁ ଜାଳିଛି ହୋଇଛି ଆନନ୍ଦେ ମଗ୍ନ ॥୪॥

କାମନା ବିନାଶେ ଦୁଃଖ ବିନାଶ ଶୁଣିଛି ମୁଁ ମନ ଦେଇ
କେବଳୀ ଭାବର ନିରାଜନା କରି ଶାନ୍ତି ପାଇଛି ମୁହିଁ ॥୫॥

ଭସ୍ମ ହୋଇଛି ଦେହ କେତେ ବାର ମିଶିଛି ସାଗର ଜଳେ ।
କଫିନ୍ ଭିତରେ ଶୋଇଛି ନିଦରେ ରହିଛି ମାଟିର କୋଳେ ॥୬॥

କ୍ଳାନ୍ତ ହୋଇନି ତଥାପି ଏବେ ମୁଁ ଆଗକୁ ଯିବାକୁ ଚଳି
ନୂଆ ନୂଆ ଆଶା, ନୂଆ ଉନ୍ମାଦନା ମନେ ମୋ ରହିଛି ଭରି ॥୭॥

ଝରିଯାଇଅଛି ଘଟଣାର ଫୁଲ ଜୀବନ ଲତାରୁ କେତେ
ପ୍ରତିଟି ଫୁଲର ସୁବାସ ରହିଛି ଚୈତ୍ୟ ମଳୟ ସାଥେ ॥୮॥

●●●

# ମାଟିଗନ୍ଧ

କିଛି ନେବା ପାଇଁ ଆସିନି ମଣିଷ
ଏ କଥା ତ ମନ ଜାଣେ
ସବୁ ବୁଝିଲେ ବି କେଜାଣି କାହିଁକି
ଏଇ ମାଟି ମନ ଟାଣେ ।।୦।।

ମାଟି ବୋଲି ଯାହା, ମାଟି ନୁହେଁ ତାହା
ମାଟିର ମମତା ମୁକତିର ରାହା
ମାଟିର ମଣିଷ ମାଟି ପାଇଁ ଝୁରେ ଶରଧାର ମଧୁଗାନେ ।।୧।।

ମାଟିରୁ ଯାଇଛି ରୂପ, ରସ, ବାସ,
ଚରାଚରେ ତା'ର ମୋହନ ବିଳାସ
ଟାଣି ଆଣିଛ ସେ ଆକାଶୁ ଆଲୋକ, ପ୍ରୀତିଭରା ଆବାହନେ ।।୨।।

ଥିଲା ବୋଲି ସବୁ ଫୁଟି ବାହାରୁଛି
ନଥିଲେ କି କେବେ ବାହରନ୍ତା କିଛି
ଆନନ୍ଦ ଲହରୀ ଭରିଦେଉଅଛି ଉଦାସୀ ବେସୁରା ପ୍ରାଣେ ।।୩।।

## ଜୁଆର

ମନ ଛୁଇଁ ଯାଏ ବହି ମଧୁର ମଳୟ
ରଚିଯାଏ ଅନୁରାଗେ ନୀଳିମ ବଳୟ ।।୦।।

କେରିକେରି ବନଫୁଲ ଭୁରୁଭୁରୁ ବାସେ ଗୋ
ନୀଳାକାଶେ ପୂର୍ଣ୍ଣଶଶି ମିଠା ମିଠା ହସେ ଗୋ
ମରତେ ଯାଏ କି ଝରି ସରଗର ଅମିୟ ।।୧।।

ଦିଗେ ଦିଗେ ବାଜେ ଆହା କାହା ବଂଶୀ ମଧୁର
ଆନନ୍ଦରେ ଯାଏ ନାଚି ଜୁଆରିଆ ସାଗର
ଦେହେଭରି ଶିହରଣ ରଚେ ମଧୁ ବଳୟ ।।୨।।

ମାଟିଗନ୍ଧ ଧୀରଛନ୍ଦ କହିଯାଏ ଅଳସେ
ନୂଆ ନୂଆ ଅନୁଭବେ ସାରା ଧରା ବିଳସେ
ପୁରୁଣା ପତର ଝରେ, ଆସେ ଯେ କିଶଳୟ ।।୩।।

●●●

# ଅଭିମାନ

ଶୀତ ପରେପରେ ବସନ୍ତ ଆସିବ
ଏ କଥା ବୁଝେନି ମନ
ବୁଝୁଥାନ୍ତା ଯେବେ ଏଇକଥା ଟିକ
କରନ୍ତା କି ଅଭିମାନ ? ॥୦॥

ଝଡ଼ିପଡ଼େ ପରା ପାଦପ ପତର
ନବ କିଶଳୟ ପାଇଁ
ମନ କିନ୍ତୁ କହେ ଝଡ଼ିଲେ ପତର
ଆଉ ତ ଆସିବ ନାହିଁ
ପ୍ରତିଟି ଗୋଧୂଳି କହିଦେଇ ଯାଏ ପ୍ରଭାତର ଆଗମନ ॥୧॥

ନଈ ବହୁଥାଏ ଆଗକୁ ଆଗକୁ
ନୂଆନୂଆ ପାଣି ନେଇ
ପୁରୁଣାର ପାଖେ ନୂଆ ରହିଥାଏ
ସତେ କି ଦେହର ଛାଇ
ଓ୍ରୁଠ ପଥରର କାନେ କହିଯାଏ ଆସୁଛିରେ ନୂଆ ଦିନ ॥୨॥

ଏକ ପକ୍ଷୀ ଗାଏ, ଆନ ଶୁଣୁଥାଏ
ରାଗ ଆଶାବରୀ ସ୍ୱର
ଜଣେ ଖାଉଥିଲେ ଆନ ପେଟ ପୂରେ
ଗୋଟିଏ ଗଛରେ ଘର
ସେ ସ୍ୱରରେ ଥାଏ ଦୂର ଦିଗନ୍ତର ସୁଧାଝରା ଆବାହନ ॥୩॥

●●●

# ଚଲାବାଟ

ବାଟ ତ ଅନେକ ଏକା ମୁଁ ପଥିକ
ସାଥି ମୋର ବଣଫୁଲ ମହୁଆ ମହକ ॥୦॥

ପାଦତଳ ଘାସ କହେ ହୁଅନା ହତାଶ
ବେଳେବେଳେ ନଇଁ ଆସେ ଆଶାର ଆକାଶ
ମମତାର ଭରାବାସେ ପୂରେ ମନ ମୂଳକ ॥୧॥

ପବନରେ ବନ୍ଧୁଭାବ କିଏ ଆଣି ପରଷେ
ନରମ ଓଠରେ ମୋର ମୃଦୁ ହସ ବରଷେ
ଦେହେ ଭରେ ଶିହରଣ ଅଜଣା ସେ ପୁଲକ ॥୨॥

କାହାସୁର ଶୁଭେ ଦୂରେ ବୀଣାଜିଣା ବାଣୀରେ
ଯେତେଦୂର ଗଲେ ଶୁଭେ ଆଉ ସେତେ ଦୂରରେ
ଶ୍ରାବଣର ମେଘଫାଙ୍କେ ସେ ବିଜୁଳି ଆଲୋକ ॥୩॥

ଗିରି ଝରଣାର ଗୀତ କହିଯାଏ କାନରେ
ଏମିତି ରହନା ବନ୍ଧୁ ଏ ଉଦାସୀ ମନରେ
ପାଇବାକୁ ଅଛି ପରା ଅନୁଭୂତି ଅନେକ ॥୪॥

•••

# ବଉଳ

ବସନ୍ତ ଯାଇଛି ଫେରି ଆମ୍ବ ବଉଳରୁ
କୁହୁଡ଼ି ଆସିଛି ନଇଁ ଗଛ ଲତା ଦିଶୁ ନାହିଁ
କୋଇଲିର ସ୍ୱର କାହିଁ ଶୁଭୁନାହିଁ ଅନେକ ବେଳରୁ ॥୦॥

ସୂରୁପେ ଦେଇଛି ଢାଙ୍କି, କି ମନ୍ତର ଦେଇ ଫୁଙ୍କି
ମାଟିକି ପାରୁନି ଛୁଇଁ ଟିକେ ଖରା, ସଜ ସକାଳରୁ ॥୧॥

ଏ ଦମ୍ଭ ରହିବ ନାହିଁ କୁହୁଡ଼ି ଯିବ ଉଭେଇ
ଏ କଥା ମନରେ ଭାବି ସୂର୍ଯ୍ୟହସେ ଅନ୍ତର ଭିତରୁ ॥୨॥

ପଡ଼ିଯିବ ପୁଣି ଖରା ହସିବ ଏ ଧୂଳି ଧରା
ମୃଦୁହସ ଉକୁଟିବ ଶ୍ୟାମବନ ଲାତ ବିତାନରୁ ॥୩॥

ଦିଗହେବ ପରିମଳ ନଦୀଧାର ନିରିମଳ
ଶୁଭିବ ବିହଙ୍ଗତାନ ନିରନ୍ତର ଦୂରବନାନୀରୁ ॥୪॥

# ନୀରବତା

ନଦୀ ଯାଏ ଝୁଲି ଝୁଲି ଲହରୀ ଦୋଳିରେ
କୁଳୁକୁଳ ଗୀତ ଗାଇ କିବା ଭାଳିଭାଳିରେ ॥୦॥

କାହା ଭାବପ୍ରବଣତା  ଆଉ କା'ର ନୀରବତା
କାହା ହୃଦୟର ବ୍ୟଥା ଥାଏ ସେ ଗୀତରେ ଲେଖା
କାହା ମାନ ଅଭିମାନ ଅନୁରାଗ
ଗୀତିସୁରେ ଯାଏ ଝରି ଝରିରେ ॥୧॥

ବନ ଫୁଲ ଝଡ଼େ ଖସେ ଲହରୀରେ ଯାଇ ମିଶେ
କେବେ ଅକୂଳରେ ଭାସେ ବେଳେବେଳେ କୂଳେ ଦିଶେ
ହତାଶାର ଅନ୍ଧାରରେ ତା'ର ମନ କେତେ ଝୁରେ
ଦୀର୍ଘଶ୍ୱାସେ ଯାଏ ଜଳିଜଳିରେ ॥୨॥

ଭାବନାର ଓଦାଜାଲେ ନିଜ ପାଦ ନିଜେ ଛନ୍ଦି
ବୁକୁଭରା କୋହ ଚପି ନିଜ ଦେଶେ ନିଜେ ବନ୍ଦୀ
ବୁଝିହୁଏ ନାହିଁ କିଛି ବେଳ ଯାଏ ବୃଥା ଚାଲି
ଦିନରାତି ଖାଲି ଭାଳିଭାଳରେ ॥୩॥

## ହସଲୁହ

ବୁଝି ନ ବୁଝିଲେ ଜୀବନ ମିଛ,
ଖୋଜି ଖୋଜୁଥିଲେ ଜୀବନ ସତ
ହଜାଇ ଅଳପ ପାଇଛି ଅନେକ
ବୋଲି କହୁଥିଲେ ଜୀବନ ତୀର୍ଥ ॥୦॥

ଅନ୍ଧାରେ ଆଲୋକ, ଆଲୋକେ ଅନ୍ଧାର
ମନେ ହୁଏ କେହି ନୁହନ୍ତି କାହାର
ସଲିଳରେ ଘଟ, ଘଟରେ ସଲିଳ,
ଏ ଦୁଇଟି କଥା ସତ ॥୧॥

ହସ ପାଖେ ଲୁହ, ଲୁହ ପାଖେ ହସ
ଏକ ଆନ ପାଇଁ ପାଇଛି ଆୟୁଷ
ମାଟିରେ ରହିଛି ଅଶେଷ ପୁଲକ,
ଝରୁଅଛି ଅବିରତ ॥୨॥

●●●

## ମାଟିଘର

ମାଟିରେ ମଧୁ ଅଛି,
ମାଟିରେ ବନ୍ଧୁ ଅଛି
ମାଟିକୁ ଦିଅନା ଦୋଷ, କହନା ଡୁ ଛି ଛି ॥୦॥

ମାଟିରୁ ଆସିଛି ଫୁଲେ ଫୁଲେ ରଙ୍ଗ
ଆସିଅଛି ଏତେ ବାସ
ମାଟିର ଘଟରେ ଫୁଟି ଉଠୁଅଛି
ମଧୁଭରା ମୃଦୁହସ
ମାଟିରେ ବହୁଛି ମମତା ଝରଣା, ସରଗର ସୁଧା ବିଞ୍ଚି ॥୧॥

ଆକାଶ ବୁଝିଛି ଏ ମାଟିକୁ ବୋଲି
ଆପେ ଆସିଅଛି ନଇଁ
ପବନ ପକାଏ ଆଲଟ ଚାମର
ଆପେ ଆନମନା ହୋଇ
ଆଲୋକ, ପୁଲକ, ଅମୃତ, ମାଧୁରୀ ଏ ମାଟିରେ ରହିଅଛି ॥୨॥

# ଘେରାବାଲି

ସିଏ କି ଚନ୍ଦରେ ଲେଖା ଯାହାର ଚନ୍ଦିନି ନାହିଁ
ସିଏ କି ଦେଖାରେ ଲେଖା ଯହିଁ ଧାରେ ହସ ନାହିଁ ।।୦।।

ସିଏ କି ଶ୍ରାବଣେ ଲେଖା ଯହିଁ ନାହିଁ ମେଘମାଳା
ସିଏ କି ଫଗୁଣ ଯହିଁ ନାହିଁ ପିକ କୁହୁଧାରା,
ସେ ଫୁଲ କି ମନ ଟାଣେ ଯହିଁରେ ସୁବାସ ନାହିଁ ।।୧।।

ସେ ମନ ଥାଇ କି ଲାଭ ଯହିଁରେ ମମତା ନାହିଁ
ସେ ପରାଣେ ଅଛି କିସ ଯହିଁରେ ଆନନ୍ଦ ନାହିଁ ।
ସେ କିବା ଭୋଜନେ ଲେଖା, ଆଦର ଯେଉଁଠି ନାହିଁ ।।୨।।

ସେଇ ଲୁହ, ଲୁହ ନୁହେଁ ଯାହା ଝରେ ନିଜ ପାଇଁ
ସେଇ ପ୍ରେମ, ପ୍ରେମ ନୁହେଁ ଯହିଁରେ ସହିବା ନାହିଁ
ସିଏ କି ମନ୍ଦିରେ ଲେଖା, ଯହିଁରେ ଦେବତା ନାହିଁ ।।୩।।

# ପଦ୍ମମଧୁ

ଦୂର ଆକାଶର ତୁମେ ଅନନ୍ତ ନୀଳିମା
ସାଗରରେ ଭଙ୍ଗା ଭଙ୍ଗା ବୀଚି ମଧୁରିମା ॥୦॥

ଫୁଟାଫୁଲ ପାଖୁଡ଼ାରେ ତୁମେ ମାଦକତା
ଜୀବନେଜୀବନେ ତୁମେ ପ୍ରୀତିପ୍ରବଣତା
ପ୍ରାଚୀନଭ ଧାରେଧାରେ ଶୁଭସଜସକାଳରେ
ତୁମେ ଉଷାଲୋକର ସୁଷମା ॥୧॥

ମନଗହନରେ ତୁମେ ଆଶା ପଦ୍ମମଧୁ
ଆନନ୍ଦର ଅଭିଷେକ ମମତାର ସିନ୍ଧୁ
ଝରଣାର ଝରଝର ଗୀତରେ ମଧୁରସୁର
ତୁମେ ନିଜେ ତୁମର ଉପମା ॥୨॥

●●●

# ଫଟାଭୂଇଁ

ଅନେକ ବରଷା ଝରିଗଲା ପରେ
ଭିଜିଲାନି ଫଟାଭୂଇଁ
ଲୁହର ଶିଶିର ବରଷିଲା ପରେ
ଭିଜିଲାନି ଆଖି ଦୁଇ ।।୦।।

କେତେ ଯେ ବସନ୍ତ ହସି ଚାଲିଗଲେ
ଜୀବନର ଚଲାବାଟେ
ସ୍ମୃତିର ପାଖୁଡ଼ା କେତେ ଭାସିଗଲା
ମନ ନୀଳ ନଈ ତୁଠେ
ସବୁଜ ବନରେ ଅବୁଝା ତାନରେ
ଗଲା କିଏ ଗୀତ ଗାଇ ।।୧।।

ଅନେକ ସପନ ସରିଗଲା ପରେ
ରାତି ତ ପାହିଲା ନାହିଁ
ଅନେକ ଆଶାର କଇଁ ମଉଳିଲା
ଜହ୍ନ ତ ଉଇଁଲା ନାହିଁ
ନାଟକ ସରିନି ନାୟକ ରହୁଁଛି
ଦର୍ଶକ ସାଜିବା ପାଇଁ ।।୨।।

# ଅଦିନ କୁହୁଡ଼ି

ସବୁଧନ ହଜିଗଲା ଦୂରେ ବହୁଦୂରେ
ଲିଭିଗଲା ଇନ୍ଦ୍ରଧନୁ ଶ୍ରାବଣୀ ମେଘରେ ।।୦।।

ବେଦରୁ ଗାୟତ୍ରୀ ମନ୍ତ୍ର ଗଲା କାହିଁ ଚାଲି
ରାକାରଜନୀରୁ ଜହ୍ନ କଲା କିଏ ଚୋରି
ରାମ ଗଲେ ବନବାସ ଅଭିଷେକ ବେଳେ ।।୧।।

ପ୍ରଭାସ ତୀର୍ଥରେ ହେଲା ଯଦୁବଂଶ ନାଶ
ଅଦିନ କୁହୁଡ଼ି କଲା ନବ ରବି ଗ୍ରାସ
ଫୁଟିଲା ଆଗରୁ କଢ଼ି ଝଡ଼ିଲା ମହୀରେ ।।୨।।

ଝରିଲା ବରଷା ହେଲେ ପୂରିଲାନି ନଦୀ
ନ ବାଜି ଘୁଙ୍ଗୁର ଦେଲା ପାଦ ଦୁଇ ଛନ୍ଦି
ବେସୁରା ରାଗିଣୀ ବାଜେ ଅନ୍ତର ଭିତରେ ।।୩।।

●●●

# ମରମର ଭାଷା

ଆକାଶେ ଚନ୍ଦ୍ରମା ତୁମେ
ସାଗରେ ନୀଳିମା ତୁମେ
ସରସୀରେ ଢଳ ଢଳ
ଛଳ ଛଳ କଇଁ ଫୁଲ
ଅଭିମାନୀ ଗୋଧୂଳିର ଯାମେ ।।୦।।

ବସନ୍ତର ହସ ତୁମେ
କୁସୁମରେ ବାସ ତୁମେ
ଆଲୋକର ଶିଖା ତୁମେ
ମରମର ଭାଷା ତୁମେ
ଦୂର ବନାନୀର ଘନ ସବୁଜିମା,
ମଳୟେ ମହକ ତୁମେ ।।୧।।

ତୁମେ ହୃଦୟରେ କ୍ଷମା
ପ୍ରୀତିର ଶୁଭସୁଷମା
ଅନ୍ତରେ ଅସୀମ ଆଶା
ନାହିଁ ତୁମର ଉପମା
ଭାବପ୍ରବଣତା ଦୀପାଳି ଶିଖାର
ଲାଜୁଆ କିରଣ ତୁମେ ।।୨।।

●●●

# ନୂଆ ସୁର

ଲଳିତ ମଳୟ ଢଳେ ଶୀତଳ ଚାମର
କାନେ କାନେ ଦେଇ ଯାଏ ଶୁଭ ସମାଚାର ।।୦।।

ବଣଫୁଲ ବାସ ନେଇଧୀରେ ଧୀରେ ଆସେ ବହି
ମୃଦୁମୃଦୁ ହସି ହସି ତନୁ ମନ ଯାଏ ଛୁଇଁ
ଲଳିତ ରାଗିଣୀ ତା'ର ନୁହେଁ ଭୁଲିବାର ।।୧।।

ଆଗାମୀ ମଧୁବାରତା ଦେଇ ଧୋଇନିଏ ବ୍ୟଥା
ଆଶାର ଚନ୍ଦନ ମାଖି ଦୂର କରି ମନୁ ଚିନ୍ତା
ବିଞ୍ଚିଯାଏ ସ୍ୱର୍ଗସୁଧା ଦିବ୍ୟଚେତନାର ।।୨।।

ପ୍ରାଣ ହୁଏ ବିମୋହିତ ତନୁରେ ରୋମାଞ୍ଚ ଶତ
ମନ କୁଞ୍ଜେ ଫୁଟେ କେତେ ଆଶା କୁସୁମ ଲଳିତ
ଆନନ୍ଦର ବୀଣାତାରେ ବାଜେ ନୂଆ ସୁର ।।୩।।

# ଜୋଛନା ରାତି

ନୀଳ ଆକାଶର ଭସା ମେଘମାଳା
ଅଶିଣ ଆକାଶ ସାଥି
ବନ ଗହନର ଫାଙ୍କରେ ଫାଙ୍କରେ
ତୁମେ ତ ଜୋଛନା ରାତି ॥୦॥

ନୀରବ ବିଜନ ନଦୀ ଉପକୂଳେ
ନିଜ ଛାଇ ଦେଖି ନିଜେ ଯେବେ ଡରେ
ଝରାପତରରେ ଭରି ଯାଏ କେତେ
ପଉଷ ମଉଳା ଗୀତି ॥୧॥

ସବୁଜ ସୁନ୍ଦର କ୍ଷେତ ଧାରେ ଧାରେ
ଶୀତଳ ପବନ ଲୁଚକାଳି ଖେଳେ
ଗାଇ ଯାଏ କାନେ ସୁରତାଳହୀନ
ହା' ହୁତାଶର ଗୀତି ॥୨॥

# ବିରହ ବଇଁଶୀ

ନୀଳ ଆକାଶର ନୀଳିମା ସେପାରେ
କିଏ ସେ ଭାବୁଛି ବସି
ସେ ଭାବନା କେତେ କରେ ଆନମନା
ମରତ ମାଟିକୁ ଆସି ।।୦।।

ସ୍ମୃତିଫୁଲ କୁଞ୍ଜବନେ ସେ ଭାବନା ଆସି
ବଜାଇ ଦେଉଛି ଧୀରେ ବିରହ ବଇଁଶୀ
ଏ ପବନ ଆଣିଦିଏ ବେସୁରା ରାଗିଣୀଟିଏ,
ବୁଣି ଦେଇ କଣ୍ଟା ରାଶିରାଶି ।।୧।।

ଗୋଧୂଳି ଲଗନେ କେତେ ଉଦାସ ମନରେ
ପକ୍ଷୀଟିଏ ବସି ଭାବେ ଗହନ ବନରେ
ଯିବା ପାଇଁ ହେବ ତାକୁ ଆଉ ବହୁ ଦୂରପଥ
ଏହା ଭାବି ଦିଏ ଖାଲି ହସି ।।୨।।

ନଈ ଯାଏ ବହି ତା'ର ଆପଣା ବାଟରେ
ଚିହ୍ନ ରଖି ଯାଏ ଚାଲି ଅନେକ ଘାଟରେ
ସେ ଚିହ୍ନକୁ ଦେଖି ଦେଖି ଆଖି ମୋର ଯାଏ ଲାଖି
କିଛି କହିପାରେନା ଭରସି ।।୩।।

●●●

# ଛାଇ ଆଲୁଅ

ଦୂର ଦିଗନ୍ତର ଅଭିନନ୍ଦନକୁ
ପାଦରେ ଦେବନି ତୁମେ ଠେଲି
ସାଗର ସିକତା ଧାରେ ଧାରେ ଦେଖ
ଜହ୍ନ ହସୁଅଛି ଖିଲିଖିଲି ॥୦॥

ନିଜକୁ ଖୋଜୁଛି ମାଟିର ମହକ
ଛାଇ ଆଲୁଅର ଧାରେ ଧାରେ
ଶିଶିର ପଖଳା ନରମ ଫୁଲରେ
ଆଖି ଲାଖି ଯାଏ ଥରେଥରେ ।
ମଳୟପବନ ଛୁଇଁଯାଏ ତାକୁ
ଦେଇ ଶିହରଣ ଦେହେ ଭରି ॥୧॥

ମାଟିରମଣିଷ ମନମୁକୁଟରେ
ମଣିମୁକୁତାର ଅନୁଭବ
ଲଳିତଲବଙ୍ଗ ଲତାରେ ଆସିଛି
ନବ କିଶଳୟ ମଉଛବ
ପରାଣ ଗହନେ ତୁମ ପାଇଁ ଫୁଟେ
କେତେ ସଜଫୁଲ କେରିକେରି ॥୨॥

# ଆହ୍ୱାନ

ଶ୍ରାବଣୀ ବାଦଲ ବୁକେ
ଘୋର ଘଡ଼ଘଡ଼ି,                ଗମ୍ଭୀର ସ୍ୱରେ
କିଏ ଆସି ମତେ ଡାକେ ॥୦॥

ପ୍ରିୟତମ ! ଏ କି ତୁମରି ଆହ୍ୱାନ
ପ୍ରୀତି ସଉରଭେ ପବିତ୍ର ମହାନ
କାହିଁ କେତେଦୂରେ ନାହିଁ ତୁମ ଦେଖା,
ବସିଛି ମୁଁ କାରାକକ୍ଷେ ॥୧॥

କମ୍ପନ ଜାଗେ କିଁପା ଏ ଅନ୍ତରେ
ନବ ଚେତନାର ନଦୀ ଧାରେ ଧାରେ
ତୁମରି ସୌମ୍ୟ ଲଳିତ ମୂରତି
ବସି ହୃଦପଟେ ଆଙ୍କେ ॥୨॥

ବିଜୁଳି ଝଲକ ଯାଏ ଦେଇ ଦେଖା
କହେ କରିବାକୁ ଆହୁରି ଅପେକ୍ଷା
ରାତି ଗଲେ ପାହି ସୁନେଲି କିରଣ
ଦିଶିବ ଗବାକ୍ଷ ଫାଙ୍କେ ॥୩॥

# ରଜନୀଗନ୍ଧା

ତୁମେ ପୂର୍ଣ୍ଣିମା ରାତି ହୋଇ
କେବେ ଯେବେ ଆସି ମୃଦୁ ମୃଦୁ ହସି
ସପନରେ ଯିବ ଛୁଇଁ ॥୦॥

ଫୁଟିଥିବ ଫୁଲ ରଜନୀଗନ୍ଧା ସେ
ବାରି ଅଗଣାରେ ମୋର
ଦେହରେ ଥିବ ମୋ କଦମ୍ବ ରୋମାଞ୍ଚ
ମନେ ପ୍ରୀତିଫୁଲ ହାର
ମୋ ମନରେ ଥିବ ଚେତନା ପଦକ
ତୁମ ନାଆଁ ଥିବ ଯହିଁ ॥୧॥

ଗାଉଥିବ ତୁମେ ମଧୁର ରାଗିଣୀ
ମମତାରେ ବାସଭରା
ମନର କଳସୀ ପଡ଼ିବ ଉଚ୍ଛୁଳି
ଫୁଟିବ ପାହାନ୍ତିତାରା
ପରଶେ ତୁମର ମୋ ମନେ ଆସିବ
ଆଶାର ସୂରୁଯ ଉଇଁ ॥୨॥

❀❀❀

# ଅରୁଣିମା

ତୁମେ ମମତା କୁସୁମ କୁଞ୍ଜ
ତୁମେ ଫଗୁଣ ଫୁଲର ସଞ୍ଜ
ମମତାର ମଧୁମଳୟ ପବନେ
ଦରହାସ ମିଶାଲାଜ ।।୦।।

ବନ୍ଧୁ ! ତୁମେ ଆଶା କଦମ୍ବର କଢ଼ି
ନୂତନ ଭାଷାର ସୁର ସୁଧାଝରି
ନବ ଭାବନାର ନୀଳ ସରସୀରେ
ଶୁଭ୍ର ଶତଦଳ ସଜ ।।୧।।

ଦିଗ ଦିଗନ୍ତରେ ତୁମ ଧୀର ଚଲି
ମୃଦୁମୃଦୁ ହସ ପଡ଼େ ସୁଧା ଝରି
ମନ ଆକାଶରେ ଅରୁଣ କିରଣ
ଅନୁରାଗ ଭରାସାଜ ।।୨।।

●●●

## ସଉରଭ

ନରମ ଖରାରେ ଧୀର ପବନରେ
ସଜଫୁଟା ଫୁଲ ଅଳସରେ ଝୁଲେ
କାହା ପାଇଁ ହସେ ସିଏ
କିଏ ମନ ଚୋର ଆସିବ ବୋଲି କି
ଆଖି ମେଲି ଚାହିଁଥାଏ ॥୦॥

ଦୂର ଆକାଶର ନୀଳ ବଇଭବ
ବିଞ୍ଚି ଦିଏ ଆଣି ପୁଣ୍ୟ ସଉରଭ
ଜାଳିଦିଏ ତା'ର ମନ ଅଗଣାରେ
ପ୍ରୀତିର ଦୀପାଳିଟିଏ ॥୧॥

ଗୀତିର ଗୁଞ୍ଜନେ ମନଭୁଲାସୁର
କରେ ମନ ତା'ର ଆନନ୍ଦେ ଅଧୀର
ଲାଖିଯାଏ ଆଖି ଚଲାପଥିକର
ଭାବକୁ ଭାଷା ନ ପାଏ ॥୨॥

•••

# କୁଆଁତାରା

ତୁମ କବରୀର ଝରା ହୀରା ଫୁଲ
ନୀଳ ଆକାଶର କୁଆଁତାରା ତୁଲ
ଲାଖି ରହେ ଆଖି ଧାରେ
ତୂଳୀକାର ତୂଳୀ ମୂନରେ ସେ କିବା
ସରଗ ସୁଷମା ଗାରେ ॥୦॥

ମଳୟ ପବନ ଝୁଲଣାରେ ଝୁଲି
ତମେ ହସୁଥାଅ ମଧୁରିମା ଢାଳି
ଜୋଛନା ପରାଗ ଦିଗହରା ହୋଇ
ମେଘଫାଙ୍କେ ବାଟ ଭୁଲେ ॥୧॥

ମନର ବଣିକ ବୋଇତରେ ଆସି
ଭାବେ କିଣି ନେବ ତୁମ ଶୋଭାରାଶି
ଆଗକୁ ନଯାଇ ପଛକୁ ନ ଫେରି
ନିଜ ଛାଇ ଦେଖି ଡରେ ॥୨॥

# ନୀଳକଇଁ

ଚେତନା ସେ ଢଳ ଢଳ
ସେ ତ ଏକ ନୀଳକଇଁ ଫୁଲ
ସପନମଧୁବରଷି ହସାଇ ସେ ହସି ହସି
ଲାବଣ୍ୟ ଲହରୀ ଛୁଇଁ
ଦିଶେ କେତେ ଝଲମଲ ॥୦॥

ଆଶାଭ୍ରମର ଗୁଞ୍ଜନେ ତନୁ ଭରେ ଶିହରଣେ
ଚହଲିଯାଏ ପରାଣ ବିଜନେ ମଧୁଲଗନେ
କାହାସ୍ମୃତି ନିରାଜନା ପାଇଁ ବୀଣାର ମୂର୍ଚ୍ଛନା
କରିଦିଏ ମନକୁ ଅଧିର ॥୧॥

ଭାବନାର ଓଦା ଜାଲ ପାଦ କେବେ ଦିଏ ବାନ୍ଧି
ନୀରବରେ ଲୁହଧାରେ ମନ ହୁଏ କେବେ ବନ୍ଦୀ
ସକାଳ ପବନ ଆସି କହିଯାଏ କାନେ ହସି
ଯିବା ପାଇଁ ଅଛି ବହୁଦୂର ॥୨॥

## ଝରାଫୁଲ

ଝରାଫୁଲ ଯେତେ ସାଉଁଟି ବସିଲି
ଝରିଗଲା ସବୁ ପାଖୁଡ଼ା ତା'ର
ଝରାପାଖୁଡ଼ାରେ ତଥାପି ଗନ୍ଥୁଛି
ସପନର ମୋର ଗଜରା ହାର ॥୦॥

ଗୋଧୂଳି ଗଗନ ଆଜି ଫିକା ଫିକା ଦିଶେ
ଉଦାସୀ ପ୍ରଦୋଷ ତାରା ବିଷାଦ ବରଷେ
ଭାଜି ତ ଯାଇଛି ଆଶାର ମିନାର
ଯାହା ଥିଲା କାଲି ନିଜର ॥୧॥

ଜୀବନର ବନବୀଥି ଧାରେ ପାଦ ଥାପି
ଚଲିବାକୁ ହେବ ଗିରିଶିଖେ ଲକ୍ଷ୍ୟ ରଖି
ଶୁଣିବାକୁ ହେବ ମନ ବୃନ୍ଦାବନେ
ମୋହନ ମୁରଲୀ ମଧୁର ॥୨॥

# ନଈ ବହିଯାଏ

ଗୋଧୂଳିଗଗନ ଧାରେ ତାରାଟିଏ ଆସି
ନଦୀ ବକ୍ଷେ ନିଜ ଛବି ଦେଖୁଥାଏ ବସି ।।୦।।

ଜାଗର ଦୀପାଳି ଜାଳେ କାହା ପାଇଁ ସିଏ
ପ୍ରୀତିର ମଧୁଝରଣା ଝରି ଝରି ଯାଏ,
ଲୋହିତ ବରଣା ମେଘ
ଯାଏ ଭାସି ଭାସି ।।୧।।

ଦୂରୁଦୂରୁ ଶିରିଶିରି ବହେ ଧୀର ବାଆ
ବନଲତା ଫୁଲକୁଞ୍ଜ ଗାଏ ଗୀତ ନୂଆ
ନଦୀ ଯାଏ ବହି ବହି
ମୃଦୁ ମୃଦୁ ହସି ।।୨।।

ଦେହରେ ରୋମାଞ୍ଚ ଜାଗେ ପ୍ରାଣରେ ପୁଲକ
ଏକ ଲୟେ ଚହେଁ, ତା'ର ନ ପଡ଼େ ପଲକ
ଜୀବନ ଲତାରେ ଫୁଟେ
ଆଶାଫୁଲରାଶି ।।୩।।

# ବିଜନ ବେଳା

ବିଜନେ ବାଜେ ବଇଁଶୀ ଶ୍ରାବଣୀ ଧାରାରେ
ଲୁହର ଯମୁନା ନାଚେ ତରଙ୍ଗ ଦୋଳାରେ ॥୦॥

ରୋମାଞ୍ଚ କଦମ୍ବ କେତେ
ଫୁଟେ ଦେହ ବୃନ୍ଦାବନେ
ବନମାଳତୀ ସୁରଭି
ଛୁଟେ ନିଃଶ୍ୱାସ ପବନେ
ଆଶାର ବିହଙ୍ଗ ଲୁଚେ
ଭାଷା ତରୁ ଡାଳରେ ॥୧॥

ମନ ଆକାଶ ଦେଶରେ
ଘୋଟେ ନୀଳ ମେଘମାଳା
ସୁନାର ଝବୁକ ପରି
ତହିଁ ଚମକେ ଚପଳା
ବ୍ୟଥାରେ କାତର ଚିତ୍ତ
ଏ ମଉଳା ବେଳାରେ ॥୨॥

# ଆନନ୍ଦ ସଂଗୀତ

ଆଲୋକର ବୀଣାବାଜେ ଦୂର ନୀଳଗଗନେ
ପୁଲକରେ ଭିଜେ ମାଟି ଏଇ ମଧୁଲଗନେ ॥୦॥

କିଏ ଯାଏ ଗାଇ ଆଜି
ଆନନ୍ଦର ସଂଗୀତ
ମୃଦୁ ହସି ଚ଼ହିଁ ଚ଼ହିଁ
ଦେଇ ଶୁଭଇଂଗିତ
ଚହଲା ଚମକ ଲାଗେ ମନ ଶ୍ୟାମକାନନେ ॥୧॥

ପାଖୁଡ଼ା ପାଖୁଡ଼ା ମେଲି
ଫୁଲ ଫୁଟେ ସଧୀରେ
ଘେରାଇ ସୁବାସ ତା'ର
ବାଆ ବହେ ଅଧୀରେ
ଆଶାର ପ୍ରଣବ ଧ୍ୱନି ଉଠେ ଲତା ବିତାନେ ॥୨॥

ସାଗର ସେପାରେ ଉଏଁ
ସକାଳର ସୂରୁଯ
ବୁଣିଦିଏ ଦିଗେ ଦିଗେ
ମମତାର ମୁରୁଯ
ନୂତନ ଜୀବନ ଜାଗେ ବିହଙ୍ଗ ନିଃସ୍ୱନେ ॥୩॥

## ମଳୟ ପରଶ

ତୁମେ ମଳୟପବନ ହୋଇ
ମୋ ମନ ଗବାକ୍ଷ ଫାଙ୍କରେ ଆସିବ
ଦିନେ ଫୁଲବାସ ନେଇ ॥୦॥

ବସିଥିବି ମୁହିଁ ହୋଇ ଆନମନା
ଆଙ୍କୁଥିବି ଛବି କେତେ ଅନାବନା
ତନୁରେ ଭରିବ କେତେ ଶିହରଣ
ଅଳପ ଅଳପ ଛୁଇଁ ॥୧॥

ବଉଦ ଫାଙ୍କରୁ ରେଶମୀ ଜୋଛନା
ଝରି କରୁଥିବ ସୁଷମା ରଚନା
ଆଶା କଇଁଫୁଲ ଫୁଟି ଯାଉଥିବ
ମୃଦୁ ମୃଦୁ ହସି ଦେଇ ॥୨॥

●●●

# ଲୁଚକାଲି

ଦିଗହଜା ମରୁବାଲି ସରେ ନାହିଁ ଚାଲି ଚାଲି
ପାଦଦୁଇ ଥକିଯାଏ
ଲାଗେ ସବୁ ଖାଲି ଖାଲି
କଣ୍ଠ ଯାଏ ଶୁଖିଶୁଖି ବାଟ ରହିଯାଏ ବାକି
ବିଜନତା ଭାଙ୍ଗିଦିଏ
ମରୁ ପକ୍ଷୀର କାକଳି ॥୦॥

ଜଳବେଣୀ ପରି ଦିଶେ କେତେ ମରୀଚିକା ହସେ
ଶୋଷ ବଢ଼ିଯାଏ ବେଶି
ଦେଖି ତା'ର ଲୁଚକାଲି ॥୧॥

ଚଲାବାଟେ କଣ୍ଟାଫୁଲ ଫୁଟି ଦିଶେ ଝଲମଲ
ଛୁଇଁ ଦେଲେ ଫୁଟେ କଣ୍ଟା
ହାତ ହୋଇଯାଏ ଚିରି ॥୨॥

ଶୂନ୍ୟେ ଶୁଭେ କାହା ସୁର ଲାଗେ ବଡ଼ ଆପଣାର
ଚମକି ଚାହିଁଲେ କାହିଁ
ଯାଏ ସେହି ସୁର ଚାଲି ॥୩॥

# ଅଭିଷେକ

ଦିଗେ ଦିଗେ ଝରିଯାଏ ଆଲୋକର ଧାରା
କିଏ ଗୀତ ଗାଏ ବସି ଛଣା ସୁଧାଧାରା ॥୦॥

ଆକାଶରୁ ନୀଳ ରଙ୍ଗ ଝରିଆସେ ମାଟିପରେ
କହିବାକୁ ସ୍ୱର୍ଗବାଣୀ ଶୋକପାଶୋରା ॥୧॥

ବିଷାଦର ବିଷଜ୍ୱଳା ଯାଏ ଦୂରେ ଅପସରି
ମଣିଷର ମନେ ଆସେ ପୁଲକ ଧାରା ॥୨॥

ନଦୀ ଗାଏ କଳତାନ ଜଡ଼ ହୁଏ ସଚେତନ
ଆନନ୍ଦର ଅଭିଷେକ ହୁଅଇ ପରା ॥୩॥

ଲଳିତଲାବଣ୍ୟରେଖା ଚରାଚରେ ଦିଏ ଦେଖା
ମନ ବୀଥି ଧାରେଧାରେ ହସେ ପ୍ରୀତି ପସରା ॥୪॥

## ସୁରସୁଧା

ପବନ ଗାଉଛି ଗୀତ ରାଗ ଯେ ବସନ୍ତ
ଦୂରେ ଦୂରେ ଶୁଭୁଅଛି ନୂପୂର ଲଳିତ
ହସି ହସି ଖେଳୁଅଛି କେତେ ଲୁଚକାଳି
ସ୍ମୃତିର ଅଳତାଧାରା ଦେଉଅଛି ଢାଳି
ମନର କୁସୁମ କୁଞ୍ଜ ହୁଏ ସୁବାସିତ ॥୧॥

ସାଗରରୁ ଆଣିଅଛି କେତେ ଉଦାରତା
ବସୁଧାରୁ ଆଣିଅଛି ସହନଶୀଳତା
ନଦୀ ଠାରୁ ଶିଖିଅଛି ଚଳିବାକୁ ପଥ ॥୨॥

ହଜିଯାଇଅଛି ସିଏ ଆପଣା ଭିତରେ
ଖୋଜିବୁଲୁଛି ନିଜକୁ ଦେଶଦେଶାନ୍ତରେ
ଆଶାର ପସରା ତା'ର ଅସୀମ ଅନନ୍ତ ॥୩॥

## କାଶତଣ୍ଡୀ

ଶରତ ଆକାଶେ ଧଳାମେଘ ଯାଏ ଭାସି
କହେ ବନ୍ଧୁ ରହଁ ଥରେ ନୟନ ମେଲି
ନଦୀ ପଠା ହୁଏ ମଣ୍ଡି ଫୁଟି ଫୁଲ କାଶତଣ୍ଡୀ
ମିଠାମିଠା ଲାଜ ମିଶା ଅଳସେ ଝୁଲି ॥୦॥

ନଦୀ ବହେ ଗାଇ ଗୀତ
ସାଗରକୁ ମନାସି
ଦୂରେ ଦୂରେ ବାଜେ କାହା
ମଧୁଝରା ବଇଁଶୀ
ଧୀର ଧୀର ପବନରେ ମନ ଯାଏ ଚହଲି ॥୧॥

ଗଙ୍ଗଶିଉଳି ବାସରେ
କଇଁଫୁଲ ହସରେ
ଜୋଛନା ଯାଉଛି ଝରି
ବନଗିରି ଦେଶରେ,
ମାଟିରେ ସୁଧାବରଷି କେତେ ଯେ ତରଙ୍ଗ ତୋଳି ॥୨॥

❖❖❖

# ନୀଳ ସରସୀ

ପୂର୍ଣ୍ଣିମାର ଜହ୍ନ ନୀଳ ଆକାଶରେ
ମିଠା ମିଠା ହସି ଉଇଁଲା
ସରେ କୁମୁଦିନୀ ଓଢ଼ଣା ଫାଙ୍କରେ
ଲାଜେ ଲାଜେ ଭିଜି ଚହିଁଲା ॥୦॥

ବାଙ୍କ ଚହାଣୀରେ ସରଗର ସୁଧା
ଝରାଇ ଭିଜାଇ ଦେଲା ସେ ବସୁଧା
ଫେରା ପବନରେ ଢଳିଢଳି କାହା
ଆଗମନୀ ଗୀତ ଗାଇଲା ॥୧॥

ଅକୁହା ବେଦନା କହି ତ ହୁଏନା
ନ କହି ମରମେ ସହି ତ ହୁଏନା,
ଆଖିରେ ଆଖିରେ ସପନ କାହାଣୀ
କଇଁଫୁଲ ହସି କହିଲା ॥୨॥

ଦୁରୁ ଦୁରୁ ଛାତି ତନୁଭରା ତାତି
ଅଜଣା ପୁଲକେ ମନ ଗଲାମାତି
ମନର ମାନସୀ ସାଜି କୁମୁଦିନୀ
ନୀଳସରସୀରେ ରହିଲା ॥୩॥

## ଦୂର ଆକାଶ

ଏ ଆକାଶେ ଜହ୍ନ ଗୀତ ଗାଏ କାହା ପାଇଁ
ସୁର ଭଲ ଲାଗେ ଗୀତ ବୁଝି ହୁଏ ନାହିଁ ॥୦॥

ସେ ସୁରରୁ ଝରିଯାଏ ପ୍ରୀତିର ମଳୟ
ସରଜନା କରେ ସିଏ ଆନନ୍ଦ ବଳୟ
ରେଣୁ ରେଣୁ ଜୋଛନାରେ ବାଜେ ଶାହାନାଇ ॥୧॥

ଜୋଛନାରେ ଭିଜି ଯାଏ ଶେଫାଳିର ପାଖୁଡ଼ା
ଆକାଶରୁ ଝରି ଯାଏ ଶିଶିରର ଗଜରା
ତାରାମାନେ ଚାହିଁଥାନ୍ତି ଆନମନା ହୋଇ ॥୨॥

ଛୁଇଁଯାଏ ଫୁଲବନ ଧୀରଧୀର ପବନ
ଝରାପାଖୁଡ଼ାରେ ଲେଖା କେତେ ମଧୁସପନ
ସେ ଲେଖାକୁ ପଢ଼ିବାକୁ ମନ ରହେ ଚାହିଁ ॥୩॥

# ମେଘମାଳା

ଆଷାଢ଼ର ଏଇ ଆକାଶ ଦେଶରେ
ଆସେ ଯେବେ ମେଘମାଳା
ସୁରବାଳା ଚାରୁ ପଣତ କାନିରୁ
ଝରିପଡ଼େ ମୁକ୍ତାମାଳା ॥୦॥

ଧରାର ଆସନେ ସବୁଜ ଶୋଭାର
ହେବ ବୋଲି ଅଭିଷେକ
ମାଦଳ ବଜାଏ ବାଦଲ ଆକାଶେ
ବିଜୁଳି ଦିଏ ଆଲୋକ
ଚାତକର ଚିତ୍ତ ହୁଏ ଉଲ୍ଲସିତ, ମୟୂର ଯେ ମତୁଆଲା ॥୧॥

ବଣମଲ୍ଲୀ ବାସ ସାଜେ ଧୂପବାସ
ଧରା ନିରାଜନା ପାଇଁ
ମାଟିର ଦେହରେ ଶତ ଶିହରଣ
କଦମ୍ବ ରୋମାଞ୍ଚ ହୋଇ
ମାଟି ଆକାଶର ମଧୁର ମିଳନ ଦଶଦିଗ ଆତ୍ମହରା ॥୨॥

ତାପର ପ୍ରତାପ ଭୁଲି ଅଛି ଧରା ।
ଶୀତଳ ପରଶ ପାଇଁ ।
ବେଙ୍ଗ ବେଙ୍ଗୁଲୀଏ
ନାଚନ୍ତି ଆନନ୍ଦେ
ବରଷାର ଯଶ ଗାଇ
ସଧାବ ବୋହୂର ଧୀରଧୀର ଚାଲି ସତେକି ମାଝା ॥୩॥

# ଅନୁଭାବନା

ଶୁଣିଛ କି କେବେ ନୀରବରେ ବସି
ବନ ଝରଣାର ଗାନ
ଦେଖିଛ କି କେବେ ଏକାଏକା ବସି
ନିଶୀଥ ପୂର୍ଣ୍ଣିମା ଜହ୍ନ ।।୦।।

ସାଗର ବେଳାରେ ବସି ନିରୋଳାରେ
ହସିଛ କି ମନେମନେ
ଶରତ ମେଘର ଝୁଲଣାରେ ବସି
ଝୁଲିଛ କି କେବେ ଦିନେ
କାହା ବାଟ ଚାହିଁ ବସିଛ କି କେବେ ସକାଳରୁ ଅପରାହ୍ନ ।।୧।।

ଦୂର ପାଟବିଲ ଝିଁ ଝିଁ ସ୍ୱନ
ଆଣିଛି କି ଭାବାନ୍ତର
ଦୂର ଦିଗନ୍ତରୁ ଶୁଭିଛିକି କେବେ
ରାଗ ଆଶାବରୀ ସୁର
ପାଚିଲା ପତରେ ପଢ଼ିଛ କି କେବେ ବ୍ୟଥାର କରୁଣ ଗାନ ।।୨।।

ଟିକି ଟିକି କଢ଼ି ଫୁଟି ଯାଇଛି କି
ଝିରିଝିରି ଫୁଲ ହୋଇ
ମିଠାମିଠା ବାସେ ଭରି ଯାଇଛି କି
ମନ ନିଧୂବନ ଭୂଇଁ
ମଳୟ ମିଳନେ କୋଇଲିର କୁହୁ କରିଛି କି ଆନମନ ।।୩।।

ଫାଟି ଆସୁଥିବା ସିନ୍ଦୂରା ଭିତରେ
ଦେଖିଛ କି ନବାରୁଣ
ହତାଶା ଭିତରେ ଆଶା ଆଲୋକରେ
କରିଛ କି କେବେ ସ୍ନାନ
ଭିଜି ଯାଇଛି କି କେବେ ଦୁଇ ଆଖି କରି ପ୍ରିୟ ଦରଶନ ।।୪।।

●●●

# ଅବୁଝା ମନ

ମଉଳା ପବନ ବାଉଳା ଗୀତି
ଅବୁଝା ମନରେ ଅନେକ ତାତି
ଭାବିଲେ ଦିଶୁଛି ମାନସ ଲତାରେ
କଢ଼ ଧରଅଛି ଅନେକ ସ୍ମୃତି ।।୦।।

ଚିତ୍ର ପରି ହୋଇ ମନରେ ଆଙ୍କି
ଲିଭିଲିଭି ଗଲା ନିଜକୁ ଢାଙ୍କି
ଉଜାଣି ଲହରୀ ପରିଗଲା ଫେରି
ଅଧାଲେଖା ଚିଠି ନ ହେଲା 'ଇତି' ।।୧।।

ସବୁଜ ପତର ପଡ଼ିଲା ଫିକା
ପତ୍ର ଝଡ଼ି ଗଛ ହେଲା ତ ଫାଙ୍କା
ଯେତେ ହିମଖଣ୍ଡ ଭାଙ୍ଗି ପଡୁଥିଲା
ସେତେ ବଢୁଥିଲା ଅନ୍ତରେ ତାତି ।।୨।।

ଚନ୍ଦନ ବନରେ ଲାଗିଲା ନିଆଁ
ଜଳିଲା ଯେତିକି ସେତିକି ଧୂଆଁ
ସେ ଧୂଆଁରେ ଆଉ ଦିଗ ନ ଦିଶିଲା
ବାରିହେଲା ନାହିଁ ପାଦର ଗତି ।।୩।।

ଦିନ ରହିଲାନି ରହିଲା ଚିହ୍ନ
ସେହି ଚିହ୍ନ ହେଲା ସ୍ମୃତିର ଧନ
ସେହି ଧନଗଣି ଦିନ ହେଲା ରାତି,
ରାତି ପାହିହୋଇଗଲା ପାହାନ୍ତି ।।୪।।

ତଥାପି ଅବୁଝା ମନରେ ଆଶା
ଖୋଜି ପାଇବାର ମହୁଆନିଶା
ବସନ୍ତ କାନନ ବନଲତା କୁଞ୍ଜେ
ଆସିବ ମଞ୍ଜରୀ ପେନ୍ଥିକି ପେନ୍ଥି ।।୫।।

❀❀❀

# କିଏ ତୁମେ ?

ପ୍ରଥମ ଦେଖାରେ ମନ ନେଲ କିଣି
ଦେଇଗଲ ମଧୁ ବାସ
ସେଇ ଦିନରୁ ମୁଁ ଭୁଲିପାରୁ ନାହିଁ
ତୁମର ସେ ଅଧାହସ ॥୦॥

ଚାରୁ ଚାହାଣିରୁ ଝରି ପଡୁଥିଲା
ମୋହନ ମାଦକ ମାଳି
ଭାଙ୍ଗି ପଡୁଥିଲା ସାଗର ଲହରୀ
ସିକତାରେ ଯାଇ ମେଲି
ଝାଉଁ ବନ ବୀଥି ଗାଉଥିଲା ଗୀତି ଶୁଣିଶୁଣି ମନତୋଷ ॥୧॥

ଆଉ ଥରେ ତୁମ ଦେଖା ମିଳନ୍ତା କି
ଜୀବନର ଚଲାପଥେ
ପ୍ରୀତି ପାରିଜାତ ଫୁଟିଯାଆନ୍ତା କି
ଅପେକ୍ଷାର ପଥପ୍ରାନ୍ତେ
ମରତ ମାଟିରେ ବିରାଜନ୍ତା ଆସି ଚୈତ୍ରରଥୀ ମଧୁମାସ ॥୨॥

ଝରା ସଂଜୀବନୀ ମୋହିନୀ ପରଶ
ଛୁଅଁନ୍ତା ମୋ ତନୁ ମନ
ନିଜ ଆଇନାରେ ନିଜକୁ ଦେଖନ୍ତି
ଭୁଲି ମୋ ଅବୁଝାପଣ
ନିଜକୁ ହଜାଇ ନିଜେ ମୁଁ ଖୋଜନ୍ତି ସେଇ ଦିବ୍ୟ ଅବକାଶ ॥୩॥

ନିଜକୁ ପାଇଲେ ସବୁ ମୁଁ ପାଆନ୍ତି
ଡେଇଁ ବନ୍ଧନୀର ରେଖା
ନିଜକୁ ଦେଖିଲେ ସବୁ ମୁଁ ଦେଖନ୍ତି
ପାଆନ୍ତି ସଭିଙ୍କ ଦେଖା
ତୁମ ବାଟ ଚାହିଁ ବହୁ ଆଶା ନେଇ ବସିଛି ନିଶି ଦିବସ ॥୪॥

❁❁❁

# ବର୍ଷା

ଏଇ ଆଷାଢ଼ ଆକାଶେ
ଯେବେ ବର୍ଷା ଆସେ
ଯେବେ ବର୍ଷା ଆସେ
କାହା ସ୍ମୃତି ବୀଣା ବାଜେ
ମନ କାହିଁ ଦୂରେ ହଜେ ।।୦।।

କଦମ୍ବ ଫୁଲର ମହୁଆ ମହକ
ପବନ ଦୋଳିରେ ଖେଳେ
ଲତାର ଖୋସାରୁ ମାଳତୀ କୁସୁମ
ଝରି ପଡୁଥାଏ ତଳେ
ଝିରି ବରଷାରେ ମନ ତାତିଯାଏ, ଦେହସିନା ଖାଲି ଭିଜେ ।।୧।।

ପତରେ ପତରେ ଭରା ସବୁଜିମା
ମାଟିରେ ଅଳସୀ ନିଦ
ସବୁଜ କେଦାରେ ଶୀତ ଶିହରଣ
ପବନରେ ଧୀରଛନ୍ଦ
କାହା ହାତର ସେ ନରମ ପରଶେ, ସକାଳ ସପନ ଭାଙ୍ଗେ ।।୨।।

## ଆଶା

ବେଳେବେଳେ ଲାଗେ ଚାରିପଟେ ତୁମେ
ରହିଅଛି ମୁଁ ମଝିରେ
କଇବଲ୍ୟ ତୁମେ ସରଗ ଶୋଭନ
ବଇକୁଣ୍ଠ ଗନ୍ତାଘରେ ।
ମନ୍ଦାକିନୀ ତୁମେ ମାନସ ମୋହନ ଅଳକାର ଧାରେଧାରେ ॥୧॥

ବେଶୀ ବେଳ ତୁମେ ରହ ନାହିଁ କାହିଁ
ଯିବା ପାଇଁ ଛନ୍ନଛନ୍ନ
ଲଳିତ ଅଧର ହସର ରେଖାରେ
ପ୍ରଫୁଲ୍ଲିତ ତନୁ ମନ
ଆସିବା ବାଟକୁ ଚାହିଁଥାଏ ମୁହିଁ ଅପେକ୍ଷାର ତରୁ ତଳେ ॥୨॥

ନିଦାଘରେ ତୁମେ ବରଷା ଶୀତଳ
ଛଳଛଳ ମେଘମାଳା
ଶୀତର ସକାଳେ ଗଛର ଫାଙ୍କରେ
ବଢ଼ି ଆସୁଥିବା ଖରା
ତରୁ ଚୂଡ଼ା ଶୋଭୀ ସରୁ କିଶଳୟ ତୁମେ ନବ ବସନ୍ତରେ ॥୩॥

# ଆଲୋକ ତୀର୍ଥ

ଗଭୀର ନିଶୀଥେ ଗାଉଅଛି ବସି
ଏ ପକ୍ଷୀ କାହାର ଗୀତ
ଯେତେ ଶୁଣିଲେ ବି ନୂଆ ନୂଆ ଲାଗେ
ଚିତ୍ତ ପ୍ରୀତି ପୁଲକିତ ।।୦।।

ଗଛ ଡାଳେଡାଳେ ପବନ ଅଟକେ
ସେ ଗୀତ ଶୁଣିବ ବୋଲି
ପତର ଧାରରେ ଗୀତ ଶୁଣିବାକୁ
ଜୋଛନା ରହିଛି ଝୁଲି
ଝରା ଶିଶିରର ଶବଦ ପିଠିରୁ ଓହ୍ଲାଇ ପଡୁଛି ଶୀତ ।।୧।।

ଉଦାସୀ ଦିଗନ୍ତ କାହା କଥା ଭାବି
ସତେ କେତେ ଆନମନା
ନୀରବ ଭାଷାରେ କରେ ମନେମନେ
କାହା ମୁଗ୍ଧ ବନ୍ଦାପନା
ତାରାର ଦୀପାଳି ଯାଉଅଛି ଜଳି, ଆକାଶ ଆଲୋକ ତୀର୍ଥ ।।୨।।

କୁନ୍ଦଫୁଲକଢ଼ି କବରୀରେ ଖୋସି
ମାଟି କି ଭାବୁଛି ବସି
ସେଇ ଭାବନାକୁ ଚହଲାଇ ଦିଏ
କିଏ ମିଠାମିଠା ହସି
ଆନନ୍ଦ ରାଇଜ ରାଜକୁମାର ସେ ସଜଫୁଟା ପାରିଜାତ ।।୩।।

ଘୁମନ୍ତ ପାହାଡ଼ ଚମକି ପଡୁଛି
ଏଇ ପକ୍ଷୀ ଗୀତ ଶୁଣି
ଏ ସୁରରେ ଅଛି କୁହୁକ ପରଶ
ମନ ନେଉଅଛି କିଣି
ଯେତେ ଶୁଣିଲେ ବି ନୂଆ ଲାଗୁଅଛି, ମୁଖୁଡ଼ା ଅନ୍ତରା ପ୍ରାନ୍ତ ।।୪।।

# ଭାବନାର ଜାଲ

କେତେକେତେ ଭାବନାର ଜାଲେ ମନପକ୍ଷୀ
ଉଡ଼ିଉଡ଼ି ଯାଉଯାଉ ଯାଏ ଯଦି ଲାଖି
ଆକାଶର ଆଇନାରେ ନିଜ ମୁହଁ ଦେଖି ଥରେ
ମାଟିକୁ ଫେରାଏ ତା'ର ଉଦାସିଆ ଆଖି ॥୦॥

ଆକାଶରେ ଘୋଟି ଆସେ କାହୁଁ କଳାମେଘ
ମାଡ଼ି ଆସେ ବତାସର ପ୍ରଳୟ ତାଣ୍ଡବ
ଝରଝର ବରଷାରେ ଭିଜାଭିଜା ପର ଦେହେ
ହତାଶା ଯେ ନିଜ ନାଁ ଯାଏ ତହିଁ ଲେଖି ॥୧॥

ଘଡ଼ଘଡ଼ି ଶବ୍ଦରେ ଛାତି ଦକଦକ
ଚାହୁଁ ଚାହୁଁ ସବୁ ଲାଗେ ଅନ୍ଧାରି ମୂଳକ
ଲାଗେ ଆସିଗଲା ସତେ ଶିକାରୀ ପିଞ୍ଜରା ହାତେ
ଧରି ନେଇ ପିଞ୍ଜରାରେ ଦବ ଏବେ ରଖି ॥୨॥

କେଉଁ ଅଦେଖା ହାତର ଇସାରାରେ ଆସି
ମୂଷାଟିଏ କାଟି ଦିଏ ଜାଲଟିକୁ ବସି
ଜାଲ ସବୁ କଟିଯାଏ ବନ୍ଧନ ଯେ ତୁଟିଯାଏ
ଆଚମ୍ବିତ ଲାଗେ ଖାଲି ଏଇ କଥା ଦେଖି ॥୩॥

●●●

# ନଦୀ ଓ ସାଗର

କିଏ ଦେଲା ନଦୀପାଦେ ଏମିତିକା ଶକତି
ଯିବା ପାଇଁ ଧାଇଁଧାଇଁ ପାରାବାର କତିକି
ବନ୍ଧବାଡ଼ ପକାଇଲେ ସେ ଶକତି ଯାଏ ବଢ଼ି
ମଥା ପିଟେ ବାରମ୍ବାର କର ମାରି ଛାତିକି ।।୦।।

ନଦୀ କିବା ଗୋପବାଳା ସାଗର ମୁରଲୀ ଧରା
ମୁରଲୀ ତାନ କି ଶୁଭେ ଦୂର ନଦୀ ଶ୍ରୁତିକି ।।୧।।

ନଦୀ ଆକୁଳରେ ଧାଏଁ ସାଗର ବି ବାଟ ଚାହେଁ
ଲହରୀ ନେତ୍ରରେ ଚାହେଁ ଝାଉଁବନ ବୀଥିକି ।।୨।।

ଅମାପ ସେ ଅନୁରାଗ ସରି ତା'ର କିବା ହେବ
ତେଜ ତା'ର ସରି ନୁହେଁ ହୀରା ଲୀଳା ମୋତିକି ।।୩।।

ଭଲପାଇବାର ଗୀତି ଗାଏ ନୀଳ ସିନ୍ଧୁ ନିତି
ନଦୀ ଏକା ବୁଝିପାରେ ସେଇ ଗୀତି ରୀତିକି ।।୪।।

ନଦୀ ସାଗରର ପ୍ରୀତି ଅପ୍ରାକୃତ ପ୍ରେମ ମୂର୍ତ୍ତି
ଏକ ବିନା ଆରେକର ନାହିଁ ଗତି ମୁକ୍ତିକି ? ।।୫।।

ଅସୀମେ ସସୀମ ଆଶା ସସୀମେ ଅସୀମ ନିଶା
ଦୁହେଁ ଦୁହିଁଙ୍କରୁ ବଳେ, ନାହିଁ କିଛି ଯୁକ୍ତିକି ।।୬।।

❖❖❖

# ଏତେ ସବୁ ଯୋଜନା

ଏ ରାତିରେ ବୁଣିଦେଲା କିଏ ଏତେ ଜୋଛନା
ଜୋଛନାରେ ତାରକସୀ ମନଲୋଭା ରଚନା ॥୦॥

ମାଟିଯାଏ ପ୍ରେମେ ଭିଜି
ନିଜକୁ ପାଏନା ଖୋଜି
କାହାସ୍ମୃତି ବୀଣାସୁରେ ଚିହ୍ନା ଲାଗେ ଅଚିହ୍ନା ॥୧॥

କଇଁଫୁଲ ଖେଳେ ଦୋଳି
ସରସୀରେ ଝୁଲିଝୁଲି
ନିଜ ରୂପ ନିଜେ ଦେଖେ ନୀଳଜଳ ଆଇନା ॥୨॥

ବନାନୀ ଚହଲିଯାଏ
କୁହୁକ କି ତାକୁ ଛୁଏଁ
ତା'ପାଦେ କେ ଆଙ୍କିଦିଏ ଚିତ୍ରଛାୟା ଆଲ୍‌ପନା ॥୩॥

ଶେଫାଳି କୁସୁମ ରାଜି
ଭୁରୁଭୁରୁ ବାସେ ଆଜି
ପଥିକର ମନେ କରେ ଭାବାନ୍ତର ରଚନା ॥୪॥

ରଜାପୁଅ କେତେ ଦୂରୁ
ଆସୁଛି କି ସରଗରୁ
ସତେ ଅବା ଏତେ ସବୁ ତା' ପାଇଁ କି ଯୋଜନା ॥୫॥

ରାଗ ଆଶାବାରୀ ସୁର
ଆଣେ ମନେ ଭାବାନ୍ତର
ମରତ ହେବ ସରଗ ନାହିଁ ତା'ର ତୁଳନା ॥୬॥

●●●

# ମୂଲ୍ୟବୋଧ

ଚାହିଁ ରହିଛନ୍ତି ତୁମରି ବାଟକୁ
କେତେ ନାରୀ କେତେ ନର
ଧୀର ପାଦ ଥାପି ତୁମେ ଆସନ୍ତ କି
ହସନ୍ତା ଏ ଚରାଚର ।।୦।।

ଆଶାର ମୁକୁଳ ଭରିଯାଆନ୍ତା କି
ମନ ବନ ଲତା କୁଞ୍ଜେ
ପ୍ରୀତିର କଳିକା ମେଲିଯାଆନ୍ତା କି
ଅଳସୀ ଫଗୁଣ ସଞ୍ଜେ
ଆନନ୍ଦ ସୁବାସ ଅଳସ ଭାଙ୍ଗନ୍ତା ଝୁଲିଝୁଲି ନିରନ୍ତର ।।୧।।

ସମବେଦନାର ଚନ୍ଦନ ପ୍ରଲେପ
ମାଖି ହୋଇଯାନ୍ତା ଆସି
ମଧୁ ମମତାର କୁହୁକୁହୁ ତାନ
ଆସୁଥାନ୍ତା ଭାସିଭାସି
ଶୁଭ ଭାବନାର ଗଙ୍ଗାତରଙ୍ଗରେ ଅରୁଣିମା ଝଲମଲ ।।୨।।

ଏକତାର ଛନ୍ଦେ ହସି ମନ୍ଦେମନ୍ଦେ
ବିରାଜନ୍ତା ଦଶ ଦିଶ
ସମଭାବନାର କସ୍ତୁରୀ ଗନ୍ଧରେ
ବାସନ୍ତା କି ମନ ଦେଶ
ଅଳପ ହସର ନରମ ପରଶେ ଆସୁଥାନ୍ତା ଭାବାନ୍ତର ।।୩।।

ଚେତନାର ଚାରୁ ଚନ୍ଦ୍ରମଣ୍ଡଳରେ
କେତେ ତାରା ଦୀପ ଶିଖା
ଭଲ ପାଇବାର ରେଶମୀ ସୂତାରେ
ବୁଣା ସରୁପାଟ ମଠ
ଫୁଟନ୍ତା ସେଦିନ ଧରା ଉପବନେ ନନ୍ଦନ ବନର ଫୁଲ ।।୪।।

●●●

# ବନମାଳା




ଡକ୍ଟର ଶରତ ଚନ୍ଦ୍ର ରଥ
ଏମ୍.ଏ., ଏମ୍.ଫିଲ୍. ପିଏଚ.ଡ଼ି

ପ୍ରକାଶ କାଳ : ୨୦୦୧
ପ୍ରଚ୍ଛଦ : ବିଭୁ ପ୍ରସୂନ ଦାସ

# ଅଗ୍ରଲେଖ

ବନମାଳା ଶବ୍ଦର ଆଭିଧାନିକ ଅର୍ଥ ହେଉଛି ବନଫୁଲରେ ଗୁନ୍ଥାମାଳା। ଆଲୋଚ୍ୟ ପୁସ୍ତକରେ ଭିନ୍ନ ଭିନ୍ନ ଭାବବ୍ୟଞ୍ଜକ କେତେକ ଗୀତିକବିତା ସନ୍ନିବେଶିତ ହୋଇଥିବାରୁ ଏପରି ନାମକରଣ।

ବିଭୁଭକ୍ତି, ଦେଶପ୍ରୀତି, ସାମାଜିକ ବ୍ୟଙ୍ଗଭିତ୍ତିକ ଗୀତିକବିତା ଏଥିରେ ସ୍ଥାନ ପାଇଛି। ଏହା ପୂର୍ବରୁ ମୋର ପାଞ୍ଚଗୋଟି ଗୀତିକବିତା ପୁସ୍ତକ ପ୍ରକାଶ ପାଇଛି। ସେଗୁଡ଼ିକ ପ୍ରତି ସୁଧୀବୃନ୍ଦଙ୍କର ଆଶାତୀତ ଆଦର ଏହି ପୁସ୍ତକ ପ୍ରଣୟନ ନିମିତ୍ତ ମତେ ପ୍ରେରଣା ଯୋଗାଇଛି। ତେଣୁ ଏହି ଅବକାଶରେ ପାଠକମାନଙ୍କ ନିକଟରେ ମୋର କୃତଜ୍ଞତା ଜଣାଉଛି।

ଆତ୍ମସନ୍ଧାନ ହେଉଛି ମଣିଷର ସହଜାତ ପ୍ରବୃତ୍ତି। ଆତ୍ମସନ୍ଧାନର ଅନ୍ୟନାମ ଭଗବତ୍ ସନ୍ଧାନ। ଆକାଶର ତାରାରେ ତାରାରେ ମଣିଷ ନିଜକୁ ଖୋଜିବୁଲେ। ବରଷାର ଧାରାରେ ଧାରାରେ ଭିଜି ଭିଜି ନିଜକୁ ଖୋଜି ବୁଲେ। ମନସାଗରର ଅତଳ ଗଭୀରତାରୁ ମମତାର ମୁକ୍ତାଆଣି ତହିଁରେ ଗୁନ୍ଥିଦିଏ ସରିସରି ମାଳା ଓ ସେହି ମାଳାକୁ ଧରି ଅନାଗତଙ୍କୁ ସେ ଅପେକ୍ଷା କରି ରହିଥାଏ। ସେହି ଅପେକ୍ଷାରେ ନଥାଏ ବିରକ୍ତି, ଥାଏ ଅନୁରକ୍ତି। ଏହି ଅନୁରକ୍ତିରୁ ଅନୁରଣନ, ଅନୁରଣନରୁ ଭକ୍ତି କବିତାର ସୃଷ୍ଟି। ଭୂମା ଆଉ ଭୂମି ଗୋଟିଏ ମୁଦ୍ରାର ଦୁଇପାଖ ପରି ଓତଃପ୍ରୋତ ଜଡ଼ିତ। ଭୂମିବିନା ଭୂମାଙ୍କ ଅଭିବ୍ୟକ୍ତି ନାହିଁ କି ଭୂମାଙ୍କ ବିନା ଭୂମିର ଅସ୍ତିତ୍ୱ ନାହିଁ। ଅନ୍ୟଭାଷାରେ କୁହାଯାଇପାରେ ଭୂମି ଥିବାରୁ ଭୂମା ଏବଂ ଭୂମା ଥିବାରୁ ଭୂମି। ଭୂମାଙ୍କ ଅନୁଚିନ୍ତା ଭୂମିର ଚିନ୍ତା ବ୍ୟତୀତ ଅର୍ଥହୀନ। ମାଟି ପ୍ରତି ଆନ୍ତରିକତା ବିଭୁପ୍ରୀତିର ଆଦୌ ପରିପନ୍ଥୀ ନୁହେଁ ବରଂ ପରିପୂରକ। ଏ ଦୃଷ୍ଟିରୁ ପୁସ୍ତକରେ ଉପସ୍ଥାପିତ ଭୂମିବନ୍ଦନା ଅଯଥାର୍ଥ ନୁହେଁ।

ଅସଜଡ଼ା ଭୂମିରେ ଭୂମାଙ୍କର ପୂର୍ଣ୍ଣ ଅଭିବ୍ୟକ୍ତି ଫୁଟେନାହିଁ। ଅସଜଡ଼ା ସମାଜ ଶାନ୍ତିଦିଏ ନାହିଁ କି ଅସଜଡ଼ା ବସ୍ତୁ ସୁନ୍ଦର ଦିଶେନାହିଁ। ଅସଜଡ଼ା ସମାଜର କୁତ୍ସାରଟନା ନୁହେଁ ବରଂ ତାକୁ ସଜାଡ଼ିଦେବାର ଆଭିମୁଖ୍ୟ ଥାଏ ବ୍ୟଙ୍ଗ ସାହିତ୍ୟରେ। ଏହାର ଆସ୍ତିବାଚକ ମୂଲ୍ୟବୋଧ ଗ୍ରହଣୀୟ ଓ ବରଣୀୟ। ସାମାଜିକ ସୁସ୍ଥତାର ସୁମହତ୍ ଲକ୍ଷ୍ୟ ଓ ଆଭିମୁଖ୍ୟ ନେଇ ସୃଷ୍ଟ ହୋଇଥିବାରୁ ଏଗୁଡ଼ିକ ଅପାଂକ୍ତେୟ ନୁହେଁ, ବରଂ ଆବଶ୍ୟକ। ଏ ଦିଗରୁ ପୁସ୍ତକରେ ପ୍ରକାଶିତ ବ୍ୟଙ୍ଗକବିତାର ମୂଲ୍ୟ ସୁରକ୍ଷିତ।

ଶବ୍ଦକୁ ଶବ୍ଦ ଖଞ୍ଜିଦେଲେ ଗୀତିକବିତା ହୁଏ ନାହିଁ। ଶବ୍ଦର ଶଯ୍ୟାରେ ଭାବର ଝରଣା ହିଁ ସାର୍ଥକ ଗୀତିକବିତା। ଝରଣାର ନିଜସ୍ୱ ଛନ୍ଦ ଅଛି, ସୁଲଳିତ ଧ୍ୱନିମାଳା ଅଛି ଯାହାକୁ ଅନ୍ତଃକର୍ଣ୍ଣରେ ଶୁଣିହୁଏ। ଝରଣାର ନିଜସ୍ୱ ରଙ୍ଗ ଅଛି ଯାହାକୁ ଅନ୍ତଃଚକ୍ଷୁରେ ଦେଖିହୁଏ। ଗୀତିକବିତାର ଗ୍ରାହକତା ନିମନ୍ତେ ସ୍ୱତନ୍ତ୍ର ଭାବପ୍ରବଣତା ଆବଶ୍ୟକ। ସେହି ଗ୍ରାହକମାନଙ୍କୁ ମୁଁ ଏଇ ଅବକାଶରେ ସ୍ୱାଗତ ଜଣାଉଛି।

ଶେଷରେ ପାଠକମାନଙ୍କୁ କୃତଜ୍ଞତା ଜଣାଉଛି।

ବିନୀତ

ଲେଖକ

# ତୁମେ ତ ସାଜିଛ

ତୁମେ ତ ସାଜିଛ ଫୁଲରେ ଫୁଲରେ
ନାନାରଙ୍ଗ ନାନାବାସ,
ପତରେ ପତରେ ତୁମେ ତ ସାଜିଛ
ଶ୍ୟାମବିମୋହନ ରାସ ॥୦॥

ସଜସକାଳର ଆଲୋକଜୁଆରେ
ତୁମେ ତ ନିର ଭାଷା
କୁସୁମ ବିଳାସୀ ଅଳି ଗୁଞ୍ଜରଣେ
ତୁମେ ତ ମହୁଆ ନିଶା
ତୁମେ ତ ପହିଲି ଆଷାଢ଼ରେ ଭିଜା ମାଟିର ସୁରଭି ବାସ ॥୧॥

ଉଦାସ ଗୋଧୂଳି କବରୀରେ ତୁମେ
ଲାଜୁଆ ସଂଜୁଆ ତାରା
ଜୋଛନା ରାତିର ଅଭିଷେକ ପାଇଁ
ତୁମେ ବନଫୁଲମାଳା ।
ମାଟିରୁ ଆକାଶ, ଆକାଶରୁ ମାଟି, ତୁମେ ଯେ ଅଖିଳ ବିଶ୍ୱ ॥୨॥

ମଣିଷ ମନର ଯମୁନା ଜଳରେ
ତୁମେ ପ୍ରେମ ନୀଳବେଣୀ
ଦୂରଦିଗନ୍ତରେ ନବ ଚେତନାର
ତୁମେ ଧ୍ୱନି, ପ୍ରତିଧ୍ୱନି ।
ଭଲପାଇବାର ସାଗରବୁକୁରେ ତୁମେ ତ ଲହରୀରାସ ॥୩॥

●●●

# ଯେ ଦିନୁ ଜାଣିଛି

ଯେଦିନୁ ଜାଣିଛି ତୁମେ ମୋର ପ୍ରଭୁ
କହିଛି ମରମ କଥା
ଭରିଯାଇଅଛି ମନେ ମୋ ଭରସା
ସରିଯାଇଅଛି ଚିନ୍ତା ॥୦॥

ଦୂର ଦିଗହଜା ମରୁବାଲୁକାରେ
ନାଗଫେଣି କଣ୍ଟାକେତେ
ମୋ ମନ କହୁଛି ଆଉ କିଏ ଅଛି
ଚାଲିବାକୁ ମୋର ସାଥେ ।
ଦୂରେ ଶୁଭୁଅଛି ବିହଙ୍ଗ କାକଳି, ବହୁ ଦୂର ମୋରଯାତ୍ରା ॥୧॥

ପାଦରେ ଆସିଛି ଅଶେଷ ଶକତି
ଚାଲିବାକୁ ଦୂର ପଥ
ତୁମ ନାମ ଜପି ଦିବସ ରଜନୀ
ଚିତ୍ତ ପ୍ରୀତିପୁଲକିତ ।
ଗଗନେ ପବନେ ଅବିରତ ଶୁଭେ ତୁମ ଯଶ-ଗୀତି-କଥା ॥୨॥

ଦୂରବାଟଚାଲି ପାରିହେଲେ ବାଲି
ଦିଶିବ ବନଶ୍ୟାମଳ
ବନଲତା ଚୂଳେ ଫୁଲକଢ଼ି ଯେତେ
ହସୁଥିବେ ଝଲମଲ
ମଧୁର ମଳୟ ସୁଲଳିତସୁର କହୁଥିବ ତୁମ କଥା ॥୩॥

•••

# ମୁଁ ଯେ ବୀଣା

ମୁଁ ଯେ ବୀଣା ତୁମେ ପ୍ରଭୁ
ତା'ର ମଧୁ ମୂର୍ଚ୍ଛନା
ମୁଁ ଯେ ଫୁଲ ତୁମେ ତା'ର
ସଉରଭ ରଚନା ।।୦।।

ମୁଁ ଯେ ପ୍ରାଚୀନଭ ତୁମେ ନବ ଉଷା ବିମଳ
ମୁଁ ଯେ ଏକ ବାଲିରେଣୁ ତୁମେ ନୀଳଶଇଳ
ମୁଁ ସବୁଜବନ ତୁମେ ସୁଧାଝରା ଜୋଛନା ।।୧।।

ମୁଁ ଯେ ମେଘ, ତୁମେ ପରା ଇନ୍ଦ୍ରଧନୁ ସୁନ୍ଦର
ମୁଁ ଯେ ମାଟି, ତୁମେ ବାସ ସୁରଭିତ ମଧୁର
ମୁହିଁ ଧୂପଦୀପ ପ୍ରଭୁ, ତୁମେ ମୋର ଅର୍ଚ୍ଚନା ।।୨।।

ମୁଁ ଅଧର, ତୁମେ ହସ, ଭରା ଯହିଁ ପୀୟୂଷ
ମୁଁ ନୟନ ତୁମେ ତାର ଜ୍ୟୋତିରେଖା ସରସ ।
ମୁଁ ଯେ ତୁମ ସେବାଦାସ ଘେନ ମୋର ପ୍ରାର୍ଥନା ।।୩।।

# ବହୁ ବୁଲିବୁଲି

ବହୁ ବୁଲିବୁଲି ବାଟ ଭୁଲିଭୁଲି
ଶେଷରେ ପାଇଛି ବାଟ,
ତୁମ ପାଦତଳେ ମୋ ଜୀବନ ତରୀ
ଶେଷରେ ପାଇଛି ଘାଟ ॥୦॥

ମୋର ବୋଲି ପ୍ରଭୁ ଯାହାକିଛି ଅଛି
ସେସବୁ ତୁମର ଏବେ ମୁଁ ବୁଝୁଛି
ମୋର ଦେହ, ମନ, ସବୁ ତୁମ ଦାନ, ତୁମେ ତ ବିଶ୍ୱସମ୍ରାଟ ॥୧॥

ଅଶୁଝା ଋଣରେ ଏ ଜୀବନ ଋଣୀ
ଦିନ ଯାଉବିତି ତୁମ ଗୁଣ ଗୁଣି
ତୁମରି ଆଶିଷେ କୁସୁମିତ ହେଉ ମୋ ଜୀବନ ଚଲାବାଟ ॥୨॥

ହାତ ଧରିନେବ ଆର ପାର ମତେ
ଦେଖାଇ ଆଲୋକ, ସେ ଅନ୍ଧାର ପଥେ
ତୁମେ ଥିଲେ ପାଶେ ଝଡ଼ଝଞ୍ଜା ଯେତେ ଛାଡ଼ିଦେବେ ମତେ ବାଟ ॥୩॥

•••

# ପୂଜାଫୁଲ ହେଉ

ପୂଜାଫୁଲ ହେଉ ଏଇ ମନମୋର
                    ତୁମ ନିରାଜନା ପାଇଁ
ଚନ୍ଦନ ହେଉ ଭକତି ମୋହର
                    ତୁମ ଅଙ୍ଗ ଲାଗିପାଇଁ ।।୦।।

ମୋ ଚାଲିବା ହେଉ     ତୁମ ତୀର୍ଥ ଭୂଇଁ
                    ନିରଳସ ପ୍ରଦକ୍ଷିଣ
ରସନାରେ ରହୁ ତୁମ ନାମ ଜପ
                    ତୁମରି ମହିମାଗାନ ।
ହାତ ମୋର ଥାଉ ତୁମ ସେବାକାମେ ଜଗତ କଲ୍ୟାଣ ପାଇଁ ।।୧।।

ମୋ ଅଧରୁ ହସ ଝରୁଥାଉ ସଦା
                    ବନର ଝରଣାପରି
ହସ ନୁହେଁ ସେ ତ ତୁମ ପ୍ରୀତିପ୍ରଭା
                    ଅମଉଳା ଫୁଲ ଝରି ।
ଜୀବନ ଯମୁନା ନାଚିଉଠୁ ପ୍ରଭୁ ତୁମରି ପରଶ ପାଇ ।।୨।।

ମୋ ଭାବନା ହେଉ ତୁମ ଦରଶନ
                    ତୁମେ ତ ଜଗତ ସାଇଁ
ମନ ପଡ଼ିଥାଉ ତୁମ ପାଦେ ବନ୍ଧା
                    ଜନମ ଜନମ ପାଇଁ
ସଫଳ ହେଉ ମୋ ମାନବ ଜୀବନ ତୁମ ଯଶଗୀତି ଗାଇ ।।୩।।

●●●

# ତୁମେ ମୋହନ ମୁରଲୀ ଧରା

ତୁମେ ମୋହନ ମୁରଲୀ ଧରା,
ଚାଲି ଧୀରଧୀର ଚାହାଣି ମଧୁର
ଅଧର ପୀୟୁଷେ ଭରା ॥୦॥

ପହିଲି ଆଷାଢ଼ ମେଘମାଳାରଙ୍ଗ
ଦେହେ କେ ଦେଇଛି ମାଖି
ସଜସକାଳର ନୀଳକଇଁଫୁଲ
ସତେ କି ତୁମର ଆଖି ।
ଜରି-କମକୁଟ ପୀତାମ୍ବରୀ-ପାଟ ଆହା କେଡ଼େ ଚିତ୍ତଚୋରା ॥୧॥

ନାଲିନାଲି ପାଦୁଁ ଝରେ ପଦ୍ମମଧୁ
ଭକତ-ପ୍ରେମିକପାଇଁ
ନଖ ନୁହେଁ ସିଏ ମୁକୁତାରୁ ବଳି
ଶୋଭାର ଉପମା ନାହିଁ ।
ପାଦର ନୂପୁର ଲଳିତ ଝଙ୍କାର, ଦେବଧାମ ଗୀତିପରା ॥୨॥

ତୁମେ ଆନନ୍ଦର ଚନ୍ଦନ ସୁବାସ
ଭରିଦିଅ କେତେମନେ
ପ୍ରୀତିର ମନ୍ଦାର ପାଖୁଡ଼ା ଫିଟାଇ
ହସୁଥାଅ ପ୍ରାଣେପ୍ରାଣେ
ହତାଶ-ଚାତକପାଇଁକି ତମେ ତ, ଶ୍ରାବଣ ବରଷାଧାରା ॥୩॥

●●●

# ତୁମେ ମୋର ଆପଣାର

ତୁମେ ମୋର ଆପଣାର ତୁମେ ମୋର ପ୍ରିୟ ।
ମୋଠାରେ କରୁଣାକର କରି ଅନୁଗ୍ରହ ॥୦॥

ତୁମେ ପରା ସର୍ବନାମ କେଉଁ ନାମେ ଭଜିବି
ତୁମେ ପରା ସର୍ବରୂପ କେଉଁ ରୂପେ ପୂଜିବି ।
ମୁଁ ଯେ ଏକ ବଣଫୁଲ ତୁମେ ମଧୁମଳୟ ॥୧॥

କେବେ ଲାଗେ ତୁମେ ଅଛ ଦୂରେ ବହୁଦୂରେ
ପୁଣି କେବେଲାଗେ ଅଛ ଅତି ନିକଟରେ
ଏ ସଂସାର ତୁମଲୀଳା, ତୁମେ ଲୀଳାମୟ ॥୨॥

ଏକା ଏକା ଭାବେ ଯେବେ ତୁମ କଥା ମୁହିଁ
ଧାରଧାର ଅଶ୍ରୁଯାଏ ମୋ ନୟନୁ ବହି
ଚରାଚର ସାଥେ ମୁହିଁ ଗାଏ ତୁମ ଜୟ ॥୩॥

●●●

# ଅନ୍ଧାର ଆସେ ଘେରି

ଅନ୍ଧାର ଆସେ ଘେରି
ହାତଧରି ମୋତେ ନିଅ ମହାବାହୁ
ଘାଟକରି ଦିଅ ପାରି ॥୦॥

ଏକାଏକା ଲାଗେ ବଡ଼ ଅସହାୟ
ପ୍ରତି ପାଦେପାଦେ ମାଡ଼ି ଆସେଭୟ
ଏତେ ବେଳେ ସାହା ନ ହେଲେ ହେ ପ୍ରଭୁ !
ବିପଦ ହେବ ଭଗାରୀ ॥୧॥

ରବି ଅସ୍ତେ କ୍ଷତ ମୃଗୀ ମନୋଭାବ
କାହାକୁ କହିବି କିଏ ବା ବୁଝିବ
ସାଥି ହେବା ପାଇଁ କେହି ନାହିଁ ନାହିଁ,
ସାଥି ଏକା ତୁମେ ହରି ॥୨॥

ମୋର ମୋର ବୋଲି କହୁଛି ମୁଁ ଯାହା
ଅନ୍ଧାର ପଥକୁ କେହି ନୁହେଁ ସାହା
ତମେ ଏକା ସାହା ରାହା ଚଉବାହା,
ଦୀନବନ୍ଧୁ ଦୁଃଖହାରୀ ॥୩॥

●●●

# ମୋ ମଥା ମୁକୁଟ

ମୋ ମଥା ମୁକୁଟ ଭାଙ୍ଗିଦେଇ ପ୍ରଭୁ
ଗଢିଦିଅ ତୁମ ପାଦ ନୂପୁର
ପାଇବାର ଆଶା ଶେଷକର ପ୍ରଭୁ
ଚାହିଁବାର ଆଶା ମୋ ଶେଷକର ।।୦।।

ତପତ ପରାଣେ ସିଞ୍ଚି ଦିଅ ମୋର
ଚାରୁ ଚନ୍ଦନ ଶୀତଳଧାରା
ଉଷରଭୂଇଁରେ ବିଞ୍ଚି ଦିଅ ମୋର
ତୁମ ପ୍ରେମଫୁଲ ପରାଗଝରା ।
ସଜସକାଳର ଶିଶିରରେଭିଜା ହେଉ ମୋ ଜୀବନ
ବନତମାଳ ।।୧।।

ତୁମ ପାଦତଳେ ହେ ମହାମହିମ
ବନ୍ଧାରଖ ମତେ ଏଇ ମୋ ଅଳି.
ତୁମରି ଆଶିଷ ଅରୁଣକିରଣେ
ଫୁଟୁ ମୋ ଚେତନା କମଳକଳି ।
ତୁମରି ମହିମା ଗାଇଗାଇ ପ୍ରଭୁ ବିତିଯାଉ ଏଇ
ଜନମ ମୋର ।।୨।।

ମରଣ ଦୁଆରେ ହାତଧରି ମୋର
ଚଲାଇ ନେବଟି ତୁମରି ପଥେ
ନିବିଡ଼ ତିମିରେ ଆଲୋକର ରେଖା
ନୂତନ ଆଳାପ ନୂତନ ଗୀତେ ।
ଅଖିଳ ବିଶ୍ୱର ରାଜରାଜେଶ୍ୱର ତୁମେ ତ ତୁଳନା
ଏକା ତୁମର ।।୩।।

# ଭିତରେ ବାହାରେ ତୁମେ

ଭିତରେ ବାହାରେ ତୁମେ ରହିଅଛ ପୂରି
ତୁମେ ମୋ' ପରାଣବନ୍ଧୁ ଦୟାମୟ ହରି ॥୦॥

ତୁମଠାରୁ ଦୂରେ ମତେ ରଖେ ଅହଂକାର
ତୁମ ପଥେ ଚାଲିବାକୁ ମନା କେତେ ତାର
ଭାଙ୍ଗଦିଅ ଅହଂକାର ତୁଙ୍ଗ ମେରୁଗିରି ॥୧॥

ଆସୁ ମୋର ଅନ୍ତରରେ ଏଇ ନୂଆ ଭାବ
ତୁମେ ଯିଏ ମୁଁ ସିଏ ଏଇ ଅନୁଭବ
ମୋର ବୋଲି ଯାହା ଅଛି ସବୁ ତ ତୁମରି ॥୨॥

ତୁମେ ତ କରତା ପ୍ରଭୁ ତୁମେ ଯେ କରମ
ତୁମେ ତ କରଣି ତୁମେ ବିଶ୍ୱ-ବିମୋହନ
ତୁମେ ରଥ, ତୁମେ ରଥୀ, ପଥ ଯେ ତୁମରି ॥୩॥

ଆଲୋକରେ ଆଶା ତୁମେ ଆଶାରେ ଆଲୋକ
ପୁଲକେ ମହକ ପୁଣି ମହକେ ପୁଲକ ।
ତୁମେ ଭାଷା, ତୁମେ ଭାବ, ବାରତା ତୁମରି ॥୪॥

•••

# ତୁମେ ଦେଇଅଛ ବୋଲି

ତୁମେ ଦେଇଅଛ ବୋଲି
ପାଇଛି ମୁଁ ସବୁ ।
ତୁମ ପାଦେ ମନ ମୋର
ରହୁ ମହାପ୍ରଭୁ ॥୦॥

ସବୁ ତୁମ ଲୀଳା ତୁମେ ଲୀଳାମୟ ହରି
ବୃଥାରେ ମୁଁ କହେ ଖାଲି ମୋର ମୋର ବୋଲି
ମୋ ହୃଦୟ ଅଧୀଶ୍ୱର ମୋର ପ୍ରାଣବନ୍ଧୁ ॥୧॥

ସାତରଙ୍ଗ ସାଜିଅଛ ବାସବଧନୁରେ
ସାଜିଛ ମଧୁ ସୁବାସ ଚାରୁଚନ୍ଦନରେ ।
ଏ ସଂସାର ବୀଚିମାଳା ତୁମେ ନୀଳ ସିନ୍ଧୁ ॥୨॥

ତୁମେ ହୋଇଛ ଆନନ୍ଦ ମାନବ ମାନସେ
ହତାଶା ମରୁରେ ଆଶା ଫୁଲଫୁଟି ବାସେ ।
ମୋ' ଜୀବନ କୁମୁଦିନୀ, ତୁମେ ପୂର୍ଣ୍ଣଇନ୍ଦୁ ॥୩॥

ବାଟରେ ପଡ଼ିଲେ ଝୁଣ୍ଟି ମନେ ଆସେ ଖେଦ
ମନ ବୁଝେନାହିଁ ତୁମ ଦଣ୍ଡ ବି ପ୍ରସାଦ
କର ମତେ ପ୍ରେମୀ ପ୍ରଭୁ ଦେଇ ପ୍ରେମମଧୁ ॥୪॥

# ହସେ ସଜଫୁଲ

ହସେ ସଜଫୁଲ ବନେଉପବନେ
ତୁମ ପୂଜାଫୁଲ ସାଜି
ତୁମରି କରୁଣା ବାରି ବରଷଣେ
କୋଟି ମନ ଯାଏ ଭିଜି ॥୦॥

ଚରାଚର ଗାଏ ତୁମରି ମହିମା
ନୀରବ ମଧୁରସୁରେ
ଦିନରାତି ଆସେ ତୁମରି ଆଦେଶେ
ଏ ଧୂଳି ଧରଣୀପରେ
ତୁମ ପ୍ରେମବୀଣା ଲଳିତ ତାନରେ ଭକ୍ତ ମନ ଯାଏ ମଜ୍ଜି ॥୧॥

ଦୂରେ ବହୁଦୂରେ ପୁଣି ନିକଟରେ
ଭିତରେ ବାହାରେ ତୁମେ
ତୁମେ ନବଉଷା, ତୁମେ ଘନନିଶା
ନିଜେ ବନ୍ଧା ନିଜ ପ୍ରେମେ ।
ଦୂବଠାରୁ ଦାରୁଯାଏ ଅଛ ପୂରି, ଆପଣାକୁ ଆପେ ଖୋଜି ॥୨॥

ତୁମରି ଆନନ୍ଦ ଲହରୀମାଳାରେ
ଜୀବନସାଗର ନାଚେ ।
ସବୁ ନାଟକରେ ଅଭିନେତା ତୁମେ
ଦୁନିଆଁର ରଙ୍ଗମଞ୍ଚେ ।
ଏ ସାରା ସଂସାର ତୁମ କଳେବର, ତୁମେ ଗଛ ତୁମେ ମଞ୍ଜି ॥୩॥

•••

## ମୋ ପରାଣ କୁଞ୍ଜେ

ମୋ ପରାଣ କୁଞ୍ଜେ ଫୁଟିବ ପ୍ରଭୁ ହେ
ତୁମରି ଆନନ୍ଦ ନନ୍ଦନଫୁଲ
ତୁମ କଥା ଶୁଣି ମୋ ମନ ସାଗରେ
ନାଚୁଥିବ ବୀଚି ମାଳକୁମାଳ ॥୦॥

ତୁମରି ମହିମା ଗାନରେ ରସନା
ମଜ୍ଜିଯିବ ସଦା ହୋଇ ଆନମନା
ତୁମ ନାମାବଳୀ ହେବ ମୋ ପାଇଁକି,
ରଙ୍କଗଳା-ଶୋଭୀ-ରତନମାଳ ॥୧॥

ଚଲାପଥେ ହେବ ତୁମେ ପ୍ରଭୁ ସାହା
ଅମାରଜନୀରେ ଆଲୋକର ରାହା
ଚାରୁ ଚରଣରେ ବନ୍ଧାରଖ ମତେ,
ଏତିକି ମାଗୁଣି ମୋ' ଘେନା କର ॥୨॥

ହାତଧରି ମୋର ନେବ ଆରପାରେ
କୃପାକରି ପ୍ରଭୁ ଅଧମ ଜନରେ ।
ଅଶ୍ରୁଝାରଣରେ ଋଣୀ ହୋଇଥିବି,
ଜନମେଜନମେ ଦୟାସାଗର ॥୩॥

●●●

# ଭାବନାରେ ବେଳ ଯାଉଛି ଚାଲି

ଭାବନାରେ ବେଳ ଯାଉଛି ଚାଲି
ଚାଲିବାକୁ ହେବ ଏ ମରୁବାଲି
ଭୁଲିବାକୁ ହେବ ଭବଯାତନା
ବୁଲିବୁଲି ବାଟ ହୁଅନା ବଣା
ନିରାଶ ହୁଅନା ଏତେ
ପାହିଯିବ ରାତି, ହୋଇବ ପାହାନ୍ତି ଜୀବନ-ଗଗନ-ତଟେ ॥୧॥

ଦୂର ଦିଗନ୍ତରେ କିଏ ସେ ବସି
ବଜାଉଛି ହସି ମୋହନ ବଂଶୀ
ଶୁଣିବାକୁ କାନ ବସିଲେ ଡେରି
ପାରିବୁ ଶୁଣି ସେ ତାନ ମାଧୁରୀ
ମଧୁର ସେ ଶ୍ୟାମପ୍ରେମ
ସରି ନୁହେଁ ତାରେ ହୀରାନୀଳା ମୋତି, ମହିମା ତା' ଅନୁପମ ॥୨॥

ଭବବ୍ୟାଧିକୁ ସେ ଔଷଧିସମ
ଭବ ଜଳଧିକୁ ତରଣୀ ଜାଣ
ତା'ପାଇଁ ଅଦେୟ ନାହିଁ ତ କିଛି
କରୁଣା ମୁକୁତା ବିଞ୍ଚି ଦେଉଛି
ଶରଣ ତା' ପାଦେ ନେଲେ
ସବୁ ଦୁଃଖ ଦୂର ହୋଇବ ଅଚିରେ ତା'ଠାରେ ବିଶ୍ୱାସ ଥିଲେ ॥୩॥

●●●

# ଅନ୍ତରେ ରହି

ଅନ୍ତରେ ରହି ଚଳାଉଛ ମତେ
ବାହାରେ ମୋ' ହାତ ଧରି
ନିରାଶାର ଅମା- ବିଜନ ନିଶୀଥେ
ଜଳାଉଛ ଫୁଲଝରି ।।୦।।

ଦେଖି ମୁଁ ପାରୁନି ତୁମକୁ ହେ ପ୍ରଭୁ
ତୁମେ ତ ଦେଖୁଛ ମତେ
ମୋ ମନର କଥା ମୋ ପରାଣ ବ୍ୟଥା
ତୁମେ ତ ଜାଣିଛ ଯେତେ ।
ଅପରାଧ ମୋର ଚଳାଇ ନେଇଛ ଆପଣାର ବନ୍ଧୁପରି ।।୧।।

କିଛି ମୁଁ ଦେଇନି ତୁମକୁ ହେ ପ୍ରଭୁ
ତୁମେ ତ ଦେଇଛ ସବୁ
ଆପେଆପେ ମୋର ନଇଁଯାଏ ମଥା
ତୁମ କଥା ଭାବୁଭାବୁ ।
ଏତିକି ମାଗୁଣି ଦିନ ଯାଉ-ବିତି ତୁମ ନାମ ତୁଣ୍ଡେ ଧରି ।।୨।।

# ଯଶଗୀତି

ତୁମେ ମାଟିର ସୁରଭି ଗନ୍ଧେ
ମୋହିନିଅ କୋଟି ଜନମାନସକୁ
ମଧୁରରାଗିଣୀ ଛନ୍ଦେ ॥୦॥

ଅରୁଣ କିରଣ ରାଜେ ଝଲମଲ
ତୁମେ ତ ସାଜିଛ ନାନାଜାତି ଫୁଲ
ତୁମରି ପରଶେ ଚରାଚର ଭାସେ ଆନନ୍ଦର ମକରନ୍ଦେ ॥୧॥

ଧୀର ପବନର ଝୁଲଣାରେ ବସି
ତୁମ ଆସୁଥାଅ ଅଧାଅଧା ହସି
ନୀଳସାଗରର ଫେନିଳଲହରୀ ତୁମରି ଚରଣ ବନ୍ଦେ ॥୨॥

ଶରତ ସକାଳ ଶୋଭା ଅନୁପମ
ବସନ୍ତର ଚାରୁ ଗୋଧୂଳିଲଗନ
ଶ୍ରାବଣବରଷା ଧାରାରେଧାରାରେ ତୁମ ଯଶଗୀତି ଶୁଭେ ॥୩॥

❖❖❖

# ମରମ କଥା

କହିଛି ତୁମକୁ ମୋ ମରମ କଥା
ତୁମେ ଯେଣୁ ପ୍ରିୟତମ,
ମୋ ଜୀବନ ଚିନ୍ତା ଦେଇଛି ତୁମକୁ
ତୁମେ ତ ଅମୃତ ପ୍ରେମ ॥୦॥

ନିରାଶାରେ ଆଶା ଝଲସି ଉଠିଛି
ତୁମରି କରୁଣା ବଳେ
ଦଦରାନାବ ମୋ ଠାବ ପାଇଅଛି
ଆଶାର ଦରିଆ କୂଳେ ।
ଯାଉଅଛି ନଇଁ ଆପେ ମୋର ମଥା ଛୁଇଁବାକୁ ଶ୍ରୀଚରଣ ॥୧॥

ତୁମରି ସେନେହ ସାହସ ଦେଇଛି
ଆଗକୁ ଚାଲିବା ପାଇଁ
କହିଯାଉଅଛି ବହୁଦୂର ପଥ
ଅଛି ପରାଯିବା ପାଇଁ
ଆଗକୁ ଚାଲିଲେ ନଇଁ ଆସିବ ତ ଦୂରରୁ ସରଗଧାମ ॥୨॥

# ପବିତ୍ର ତୀର୍ଥ

ତୁମେ ପ୍ରେମର ପବିତ୍ର ତୀର୍ଥ
ଯାହା ମୋର ଅଛି, ସବୁ ତୁମଦାନ,
ତୁମରି କରୁଣା ଆହେ ମହୀୟାନ
ମୋ ଜୀବନ ନୁହେଁ ବ୍ୟର୍ଥ ॥୦॥

ଏଇ ଦେହ ମୋର ତୁମ ପୂଜାଫୁଲ
ମନର ମମତା ବାସ ପରିମଳ ।
ଦୁର୍ଲ୍ଲଭ ଜୀବନ ପ୍ରଭୁ ତୁମଦାନ, ବୁଝିବାକୁ ତୁମ ତତ୍ତ୍ୱ ॥୧॥

ପ୍ରାଣରେ ପୁଲକ ତୁମ ଗୁଣଗାନେ
ନୟନେ ଲୋତକ ତୁମ ଦରଶନେ ।
ହସ୍ତର ଅଙ୍ଗୁଳି ସାଜି ଜପାମାଳି, ତୁମ ନାମ ଜପୁ ନିତ୍ୟ ॥୨॥

ଶ୍ରବଣେ ଆନନ୍ଦ ତୁମରି ସଂଗୀତେ
ଚରଣ ଚଞ୍ଚଳ ଭ୍ରମି ତୁମ ତୀର୍ଥେ ।
ତୁମେ ମୋ ଜୀବନ ରାଜରାଜେଶ୍ୱର, ହେ ପରମ ପରମାର୍ଥ ॥୩॥

•••

# ଶିରେ ମୟୂରପୁଚ୍ଛ

ଶିରେ ମୟୂରପୁଚ୍ଛ ପାଦେ ନୂପୁର ବନ୍ଧା
ଚାଲି ତା'ର ଧୀରଧୀର ହସ ତା'ର ଅଧାଅଧା
ଗୋବର୍ଦ୍ଧନ ଗିରିଧରା
ତା' ମଞ୍ଜୁ ମୁରଲୀ ସୁରେସୁରେ ଝରେ
ପ୍ରୀତିର ପୀୟୁଷ ଧାରା ॥୧॥

ଅଧିମାନସର ସିଏ ପୂର୍ଣ୍ଣ ଅବତାର
ଆନନ୍ଦ ନୀଳସାଗର, ଉଚ୍ଛୁଳା ଜୁଆର
ଉଜ୍ଜ୍ୱଳ ଆଲୋକଧାରା
ସୁଧାସଂଜୀବନୀ ନରମ ପରଶେ,
ପ୍ରୀତିଲତା ଫୁଲେଭରା ॥୨॥

ଘନ ହତାଶାରେ ସିଏ ଆଶାର ଝଲକ
ମରମେ ମରମେ ସିଏ ମମତା ପୁଲକ
ସିଏ ଭକ୍ତ ଚିତ୍ତଚୋରା
ଲଳିତଛନ୍ଦର ମଳୟଲୀଳା ସେ,
କିଶଳୟ ଏଇ ଧରା ॥୩॥

# ତୁମେ ଦେବମାନବର ଅର୍ଚ୍ଚନା

ତୁମେ ଦେବମାନବର ଅର୍ଚ୍ଚନା
ଏ ସାରା ସଂସାର ବୀଣା ତାରେତାରେ
ଆନନ୍ଦ ମଧୁମୂର୍ଚ୍ଛନା ॥୦॥

ଦୁର୍ଗା ହୋଇ ତୁମେ ରଖ ଏ ଧରାକୁ
ଅସୁର ବିନାଶ କରି
ମହାଲକ୍ଷ୍ମୀ ହୋଇ ଧୀର ପଦଚାଳି
ଫୁଟାଅ କମଳ କଢ଼ି।
ତୁମେ ଥିଲେ ପାଶେ ରଜନୀ ଦିବସେ ରହେ ନାହିଁ କିଛି ଶୋଚନା ॥୧॥

ଚରାଚରେ ତୁମେ ବିରାଜିତା ମାଆ
ଗଗନ ପବନ ଭରି
ତୁମପାଇଁ ଫୁଟେ ବନେ ଉପବନେ
ସଜଫୁଲ କେରିକେରି
ସେ ଫୁଲସୁବାସ ତୁମପାଇଁ କରେ ଦିବାନିଶି ଧୂପ ରଚନା ॥୨॥

# ତୁମେ ଚେତନାର ମଧୁମୂର୍ଚ୍ଛନା

ତୁମେ ଚେତନାର ମଧୁମୂର୍ଚ୍ଛନା
ତୁମେ ସୁର-ନାଗ-ନର ଅର୍ଚ୍ଚନା ।
ଜୀବନେ ଜୀବନେ ପ୍ରୀତିପ୍ରବଣତା
ସୁଧାଝରା ଶୁଭଭାବନା ॥୦॥

ତୁମକୁ ପ୍ରଣାମ କରେ ଦିବାନିଶି
ଅଖିଳ ଗଗନେ ତୁମେ ପୂର୍ଣ୍ଣଶଶି ।
ହେଲେ ତୁମେ ସାହା ମିଳଯାଏ ରାହା
ରହେ ନାହିଁ କିଛି ଶୋଚନା ॥୧॥

ତୁମେ ତ ନାବିକ, ପୁଣି ତୁମେ ନାଆ
ତୁମେ ତ ଆହୁଲା, ଅନୁକୂଳ ବାଆ
ବତୀଘର ତୁମେ ସାଗରକୂଳରେ
ବିପଦେ ନୀରବ ସାନ୍ତ୍ୱନା ॥୨॥

ମନରେ ତୁମକୁ ହୁଏନାହିଁ ବୁଝି
ସ୍ନେହରଣ ତୁମ ହୁଏନାହିଁ ଶୁଝି
ହୃଦୟବେଦୀରେ ମମତାକୁସୁମେ
ତୁମେ ସଉରଭ ରଚନା ॥୩॥

# ତୁମେ ଭକ୍ତନୟନ ତାରା

ତୁମେ ଭକ୍ତ ନୟନ ତାରା
ପ୍ରୀତି ପୁଲକିତ ଲଳିତ ସଂଗୀତ
ଆଳାପ ମଧୁଧାରା ॥୦॥

ଶ୍ୟାମ ବନାନୀର ତୁମେ ଶ୍ୟାମଳିମା
ସବୁଜକେଦାରେ ଘନ ସବୁଜିମା
ଦୂରଆକାଶର କବରୀରେ ତୁମେ, ଆଶାର ପାହାନ୍ତିତାରା ॥୧॥

ଦେହରେ ଦେହରେ ଶିହରଣ ତୁମେ
ପ୍ରେମ ଧୂପବାସ ପରାଣେ ପରାଣେ
ମନ-ବନବିଥି ଧାରେଧାରେ ତୁମେ ମମତାଝରଣାଧାରା ॥୨॥

ପାରିଜାତ ତୁମେ ଜୀବନକାନନେ
ମନ୍ଦାକିନୀ ତୁମେ ମରତ ଭୁବନେ
ଧୂସରଧରଣୀ ତୁମରି ପରଶେ, ଅଳକା ସୁଷମା-ଭରା ॥୩॥

# ଫୁଟିଛି କୁସୁମ କେତେ

ଫୁଟିଛି କୁସୁମ କେତେ କୁଞ୍ଜ କାନନେ
ତୁମ ପାଇଁ ପୂଜାଫୁଲ ଆଜିର ଦିନେ ॥୦॥

ଭଅଁର ବଜାଏ ବୀଣା ବନଗହନରେ
ମଧୁକର ଗାଏ ଗୀତ ଫୁଲପାଖୁଡ଼ାରେ
ଶୀତଳପବନ ବହେ ଏଇ ଶୁଭ ଲଗନେ ॥୧॥

ତୁମ ନାମ ଯଶ ଗାଏ ବନର ପକ୍ଷୀ
ନଦୀ କହେ ତୁମ କଥା ମମତା ମାଖି
ତୁମରି ମହିମାଗାଏ ମେଘ ଦୂର ଗଗନେ ॥୨॥

ଭରିଯାଏ ସ୍ନେହ ସୁଧା ଦିଗଦିଗନ୍ତରେ
ବନର ଝରଣା ନାଚେ ଅଧୀରେ ବିଭୋରେ
ମଗନ ଏ ଚରାଚର ମଧୁଭରା ସପନେ ॥୩॥

# ଦୟାକର ଦୟାମୟୀ

ଦୟାକର ଦୟାମୟି !
ତୁମପାଦତଳେ ଶରଣ ନେଲି ମୁଁ
ସାହା ଆଉ କେହି ନାହିଁ ॥୦॥

ପଙ୍କରୁ ତୁମେ ପଦ୍ମ ଫୁଟାଅ
ଘନ ଅନ୍ଧାରୁ ଆଲୋକ ଛୁଟାଅ
ତୁମ କରୁଣାରେ ମରୁ ବାଲୁକାରେ ବହିଯାଏ ଭରାନଈ ॥୧॥

ତୁମ କୃପା ହେଲେ ଦୂବ ହୁଏ ଦାରୁ
ଫୁଲରୁ ନରମ ହୁଏ ମହାମେରୁ
ମୂକ ମୁଖେ ଫୁଟେ ଭାଷା ବଇଭବ, ପଙ୍ଗୁ ଲଙ୍ଘେ ଗିରିଭୂଇଁ ॥୨॥

ବରଷାର ଧାରା ତୁମେ ଚାତକର
ଅଭାବରେ ମାତା, ବନ୍ଧୁ ବିପଦର
ତୁମେ ଗୁରୁ ତୁମେ ମମତାସାଗର ଅଶେଷ କଲ୍ୟାଣମୟୀ ॥୩॥

ତୁମକୁ ଦେବାକୁ ନାହିଁ କିଛି ମୋର
ମୋର ବୋଲି ଯାହା ସବୁ ତ ତୁମର
ନିରନ୍ତର ମତେ ଚଳାଇ ନିଅ ମାଆ, ଅବିରାମ ପାଖେ ରହି ॥୪॥

•••

# ଚୈତନ୍ୟମୟୀ ଦେବୀ

ଚୈତନ୍ୟମୟୀ ଗୋ, ଦେବୀ ଦୁର୍ଗତିନାଶିନୀ
ସତ୍ୟମୟୀ ପରମେ ତୁ ଶକ୍ତିସ୍ୱରୂପିଣୀ ॥୦॥

ଦୁଷ୍ଟଜନବିନାଶିନୀ ସନ୍ଥସନ୍ତାନପାଳିନୀ
ଖଡ୍‌ଗଖର୍ପରଧାରିଣୀ
ମାଆ ଗୋ ଭବାନୀ ॥୧॥

ଚରାଚରେ ତୋର ଲୀଳା ତୋ ସର୍ଜନା ଚନ୍ଦ୍ରତାରା
ଆଦିମାତା ଯୋଗମାୟା
ତିନିଜଗତ ଜନନୀ ॥୨॥

ତୋ କରୁଣା ହେଲେ ଊଣା ଐରାବତ ପଥବଣା
ତୋ ଆଶିଷେ ମୂକ ମୁଖେ
ଫୁଟେ ଭାଷା କମଳିନୀ ॥୩॥

ଅନ୍ତରେ ବାହାରେ ଭରି ରହିଅଛ ମହେଶ୍ୱରୀ
ମହାକାଳୀ ରୂପେ ତୁହି
ଉଭା ନୃମୁଣ୍ଡ ମାଳିନୀ ॥୪॥

ମହାଲକ୍ଷ୍ମୀ ଶୋଭାମୟୀ ସର୍ବଜୀବେ ସଦାସ୍ନେହୀ
ମହାସରସ୍ୱତୀ ତୁହି
ବୀଣାପୁସ୍ତକ ଧାରିଣୀ ॥୫॥

ଚରଣେ ଶରଣ ତୋର କ୍ଷମାମୟୀ ମାଆମୋର
ତ୍ରିତାପ ବିନାଶ କର
ମୋର ଏତିକି ମାଗୁଣି ॥୬॥

•••

# ଶୁଭ ସକାଳର ତୁମେ

ଶୁଭସକାଳର ତୁମେ ମୁଗ୍ଧମଧୁରିମା
ବାରୁଣୀ ଗଗନ ତଟେ ମଉଳା ସୁଷମା
ତପନର ତେଜ ତୁମେ ଜହ୍ନର ଜୋଛନା
ତୁମେ ଅନନ୍ତ ଆକାଶ ଶୋଭନ ନୀଳିମା ॥୦॥

ତୁମେ ଆଶା ପାରିଜାତ ମାନବ ମାନସେ
ଆନନ୍ଦର ସଉରଭ ବିମଳ ବିଳାସେ ।
ସୋହାଗ ଚନ୍ଦନେ ବାସେ ହୃଦୟର ସୀମା ॥୧॥

ଘଟେ ଘଟେ ତୁମଲୀଳା ମୋହନ ମାଧୁରୀ
ପ୍ରୀତିର ସରଗ ସୁଧା ପଡ଼େ ତହୁଁ ଝରି
ଶାନ୍ତି ପ୍ରଲେପ ଆଣେ ତୁମରି କରୁଣା ॥୨॥

ବିଜୟିନୀ ଶକ୍ତି ତୁମେ ଅସୁରନାଶିନୀ
ମୁକ୍ତକେଶା ରଣରଙ୍ଗା ଅଟ୍ଟାଟ୍ଟହାସିନୀ
ହାଟକବରଣା ଦେବୀ ମୂର୍ତ୍ତିମତୀ କ୍ଷମା ॥୩॥

ସାରଦା ରୂପରେ ଉଭା ମହାସରସ୍ୱତୀ
ଜ୍ଞାନରାଜରାଜେଶ୍ୱରୀ ପ୍ରଶାନ୍ତ ମୂରତି
ସବୁଠାରେ ବିରାଜିତା ଅରୂପା ଅସୀମା ॥୪॥

•••

# ଦୁଃଖ ମୁଁ ପାଇଲି ବୋଲି

ଦୁଃଖ ମୁଁ ପାଇଲି ନାହିଁ ମୋର ଦୁଃଖ
ଦୁଃଖ ସହିବାକୁ ଶକ୍ତି ଦିଅ ପଦ୍ମମୁଖ ॥୦॥

ଦୁଃଖରେ ରହିଲେ ସିନା ତୁମକୁ ମୁଁ ଡାକିବି
ତୁମ ଚରଣ କମଳେ ମନ ମୋର ରଖିବି
ମୋ ଚିତ୍ତେ ତୁମ ପ୍ରେମର ହେବ ଅଭିଷେକ ॥୧॥

ଦୁଃଖର ଲହରୀ ଆସି ଯିବ ପୁଣି ଚାଲି
ତୁମେ ପାଖେ ଥିଲେ ପ୍ରଭୁ ନ ଯିବି ମୁଁ ହାରି
ବାଜିବ ଜୀବନେ ମୋର ଜୟଶୁଭଶଙ୍ଖ ॥୨॥

ଏତିକି ଗୁହାରି ମୋର ରଖିବ ଶ୍ରୀପତି
ତୁମ ନାମଥିବ ମୋର ତୁଣ୍ଡେ ଦିବାରାତି ।
ତୁମେ ବନ୍ଧୁ, ତୁମେ ସଖା, ମୋ ପ୍ରାଣନାୟକ ॥୩॥

ମୋ ଚେତନା ବିକଶିତ ହେଉ ଦିନୁଦିନ
ଏତିକି କରୁଣାକର ପ୍ରଭୁ ଭଗବାନ
ଅଗତିର ଗତି ତୁମେ ଆଶିଷଦାୟକ ॥୪॥

❖❖❖

# ମୋର ବୋଲି ଯାହା ଅଛି

ମୋର ବୋଲି ଯାହାଅଛି ସବୁ ତୁମ ଦାନ ହେ
ତୁମେ ବନ୍ଧୁ ତୁମେ ସଖା ଗୁରୁ ଗରୀୟାନ ହେ ॥୦॥

ତୁମେ ଅଖିଳ ଈଶ୍ୱର,
ନାୟକ ସାରାବିଶ୍ୱର
ଗଗନପବନ ଗାଏ
ତୁମ ସଂଗୀତ ସୁସ୍ୱର
ତୁମେ ଧନୀ, ତୁମେ ଦାନୀ, ସବୁ ତୁମ ଧନ ହେ ॥୧॥

ଭିତରେ ବାହାରେ ତୁମେ
ଜଳବେଣୀ ମରୁଭୂମେ
ତୁମେ ମାଟି, ତୁମେ ଘଟ
ଚିତ୍ରକାର ଚିତ୍ରପଟ
ପରମପୁରୁଷ ପ୍ରଭୁ ଜଗତଜୀବନ ହେ ॥୨॥

ତୁମେ ଆଶା ତୁମେ ପ୍ରେମ
ତୁମେ ଭାଷା ଅନୁପମ
ତୁମେ ରଥୀ ତୁମେ ରଥ
ତୁମେ ପଥିକ ଓ ପଥ
ତୁମେ ନାମୀ, ତୁମେ ନାମ, ତୁମେ ସର୍ବନାମ ହେ ॥୩॥

●●●

# ପ୍ରଭୁ ତୁମ କଳାବଦନ

ପ୍ରଭୁ ତୁମ କଳାବଦନ
ଦୁଃଖୀଜନଚିତ୍ତଚାତକ ପାଇଁକି
ସତେ ଅବା ଶୋଭା ସଜଳଘନ ।।୦।।

ଚକାଡୋଳା ତୁମ ସୁନ୍ଦର ସୁକୁମାର ନୀଳ କମଳ
ହସରୁ ତୁମର ଝରିପଡ଼େ ମଧୁ ତା' ଉପମା ନାହିଁ
ତିନିଭୁବନ ।।୧।।

କପାଳରେ ହୀରାଝଲକ ଭରିଦିଏ ମନେ ପୁଲକ
ବଳିଆର ଭୁଜ ଆହାକି ସୁନ୍ଦର କୋଳେ ତୋଳିନେବ
ଜଗତଜନ ।।୨।।

ଭରସାର କଳାଠାକୁର ନିରାଶାରେ ଆଶାମିନାର
ଘଟେଘଟେ ତୁମେ ରହିଅଛ ପୂରି ଲୀଳା କରିବାକୁ
ମନମୋହନ ।।୩।।

ତୁମ ପାଦେ ରହୁ ମୋ ମନ ଏଇମାତ୍ର ମୋ ନିବେଦନ
ଚେତନା ମୋହର ବିକଶିତ ହେଉ ଜନମେ ଜନମେ
ହେ ନାରାୟଣ ।।୪।।

# ତୁମେ ତ ଆସିବ ବୋଲି

ତୁମେ ତ ଆସିବ ବୋଲି
ନନ୍ଦୀଘୋଷେ ଝୁଲିଝୁଲି
ଅଧୀର ବିଭୋର ଆଜି ଏ ଆଷାଢ଼
ହାତରେ କଦମ୍ବକଢ଼ି ।।୦।।

ମୟୂର ନାଚଇ ବନଲତାକୋଳେ
ଅଜଣା ପୁଲକ ତା' ମରମେ ଖେଳେ
ଇନ୍ଦ୍ରଧନୁ ଶୋଭା କିବା ମନଲୋଭା, ଆକାଶ ଯାଏ ଚହଲି ।।୧।।

ସବୁଜ ସୁନ୍ଦର ଦୂବଘାସ ଶିରୀ
ସତେ କି ଦେଇଛି ସିଂହାସନ ପାରି
ତୁମେ ଉଭାହେବ ସେଇ ସିଂହାସନେ, ବରଷି ଆଶିଷ ବାରି ।।୨।।

ଶୀତଳ ପବନ ବିମଳ ବିଳାସ
ଆଣି ସରଗରୁ ଛାଣି ସୁଧାରସ
ସରଜନା କରେ ମରତ ମାଟିରେ ଭକତିର ଫୁଲଝରି ।।୩।।

# ନିରାଶାରେ ଆଶା

ନିରାଶାରେ ଆଶା ଝଲକ ହୋଇ
ମଣିଷ ମନର ବେଦନାକୁ ଦୂର
କରିପାର ମାଆ ସେନେହମୟି ।।୦।।

କରମଲିଖନ ହୋଇଯାଏ ଆନ
ଯେବେ ହୁଏ ମାଆ ତୁମ କରୁଣା
ମରୁବାଲି ବୁକେ ଝରିଝରି ଯାଏ
ନୀଳ-ଢେଉ-ଛନ୍ଦା ଆଶାଝରଣା
ତୁମରି ଆଦେଶ ନ ମିଳିଲେ ମାଆ ଘାସଫୁଲଟିଏ
ଫୁଟଇ ନାହିଁ ।।୧।।

କରି କରାଉଛ ସକଳ କରମ
ଜଗତ ଭିତରେ ବାହାରେ ତୁମେ
ଅଧୀର ସାଗରେ ବଣା ନାବିକର
ଧ୍ରୁବତାରା ତୁମେ ନୀଳଗଗନେ
ଅନ୍ଧାର ପଥରେ ହାତ ଧରି ନେବ ଏତିକି ମାଗୁଣି
ମାଗୁଛି ମୁହିଁ ।।୨।।

ଦିବ୍ୟ ଚେତନାର ମୂର୍ତ୍ତିମତୀ ତୁମେ
ତୁମରି ତୁଳନା ନାହିଁ ତ ନାହିଁ
ଶକ୍ତିମୟୀ ଦେବୀ ଶାନ୍ତିପ୍ରଦାୟିନୀ
ସତ୍ୟମୟୀ ପୁଣି ବିଜ୍ଞାନମୟୀ
ଆନନ୍ଦମୟୀ ମା' କର ଦୋଷ କ୍ଷମା ବିଶ୍ୱଜନନୀ
କଲ୍ୟାଣମୟୀ ।।୩।।

## କୋଟିଏ ପ୍ରଣାମ

କୋଟିଏ ପ୍ରଣାମ ନଅଣ୍ଟ ହୋଇବ
ପ୍ରଭୁ ତୁମ ପାଦ ତଳେ
ଭାବେ ଯେବେ ବସି ତୁମରି କରୁଣା
ନୟନୁ ଲୋତକ ଝରେ ।।୦।।

ମରୁଭୂମି ଥିଲା ଏ ମୋର ଜୀବନ
ସାଜି ଦେଲ ତାକୁ ଫୁଲେ
ଭାବିଲେ ସେ କଥା ନଇଁ ଆସେ ମଥା
ତୁମରି ଚରଣ ତଳେ ।
ହେ ମହାମହିମ ଅନନ୍ତ ଅସୀମ ବିରାଜିତ ଚରାଚରେ ।।୧।।

ଅବନ୍ଧୁ ଜୀବନେ ବନ୍ଧୁ ହେଲ ମୋର
ହେଲ ଗୁରୁ, ହେଲ ସଖା
ପାଖେ ପାଖେ ରହି ନିଜକୁ ଲୁଚାଇ
ମତେ ତ କରିଛ ରକ୍ଷା ।
ଘନ ଅନ୍ଧକାରେ ଆଲୋକର ରେଖା, ଭରସାର ବତୀଘରେ ।।୧।।

ଜନମେ ଜନମେ ତୁମ ପାଦତଳେ
ବନ୍ଧା ଥାଉ ମୋର ମନ
ମୋ ରସନା ଗାଉ ଦିବସ ରଜନୀ
ତୁମରି ମହିମା ଗାନ
ଅନ୍ତରୁ ମତେ ଚଳାଇ ନିଅ ହେ, ଏତିକି ମିନତି କରେ ।।୩।।

•••

# ଉତ୍କଳଗୀତି

ଅନେକ ଦିନରୁ ମାଆର ମହିମା
ଗାଉଛି ଏ ଶ୍ୟାମବନ ଗିରିଝରଣା ।
ବିହଗଗୀତିରେ ସଂଜସକାଳେ
ବାଜୁଛି ମାଆର ଶୁଭଯଶବାଜଣା ।।୦।।

ଐର ଖାରବେଳ ଯଶ ଗାଥାରାଜି
କହେ ହାତୀଗୁମ୍ଫା ଶିଳାଲେଖ ଆଜି
ରତନଗିରିର ପବନଝଙ୍କାରେ
ଶୁଭୁଅଛି କେତେ ପାଠ ଜଣାଅଜଣା ।।୧।।

ଭଞ୍ଜ ବୀରବର କବି ରାଧାନାଥ
ଜ୍ୟୋତିଷ ଭାସ୍କର ପଠାଣିସାମନ୍ତ
ବାଜିରାଉତର ରକ୍ତରେ ଲେଖା
ଆମ ମାଟି ଆମ ମାଆ ପାଦବନ୍ଦନା ।।୨।।

ଆମେ ଲେଖିଯିବା ନୂଆ ଇତିହାସ
ଆନ ମୁଖେ ଭରି ଅମଳିନ ହସ
ନୀଳାଚଳନାଥ ପାଦେ ପ୍ରଣିପାତ
ଢାଳି କରୁଛୁ ସବୁରି ଶୁଭକାମନା ।।୩।।

❁❁❁

# ଭାରତୀୟତା

ବିଳାସ ଆମର କାମ୍ୟ ନୁହେଁ ତ
ଅଳସ ନୁହଁଇ କାମ୍ୟ
ଆମେ ଚାହୁଁ ଆଜି ବିଶ୍ୱଜୀବନେ
ମୈତ୍ରୀ ମମତା ସାମ୍ୟ ॥୦॥

ଦୀପଶିଖା ଆମେ ଅନ୍ଧାରବକ୍ଷେ
ହତାଶାରେ ଆମେ ଆଶା
ନୁହେଁ ଭାଗ୍ୟଲେଖା, କର୍ମକୌଶଳ
ଆମ ଆଶା ପରିଭାଷା ।
ମାନବବାଦର ପୂଜାରୀ ଆମେରେ ଅହିଂସା ଆମର ଧର୍ମ ॥୧॥

ଶୂନ୍ୟମରୁରେ ଫୁଟାଇବୁ ଆମେ
ବସନ୍ତ କୁସୁମ ବାସ
ରିକ୍ତଅଧରେ ଛୁଟାଇବୁ ଆମେ
ଅମଉଳା ମଧୁହାସ ।
ଆମରି ସାଧନା ବଳେ ଗଢ଼ିଦେବୁ ନୂଆଜଗତର ହର୍ମ୍ୟ ॥୨॥

ଜାଗ୍ରତ ଆମେ ଦୀପ୍ତପ୍ରହରୀ
ଏଇ ଆମ ମାଟି ମାଆ
ଭାଷାରେ ଆମର ଫୁଟାଇବୁ ଆମେ
ନୂଆ ଚେତନାର ରାହା ।
ସ୍ୱର୍ଗ ଆସିବ ନଇଁ ଏ ମାଟିକୁ, ରଚିବ ଅଳକାରମ୍ୟ ॥୩॥

***

# ଅନେକରେ ଏକ

ଅନେକ ନଦୀରେ ଆମେ ଏକ ନୀଳସାଗର
ଅନେକ ତାରରେ ଆମେ ଏକ ବୀଣା ଝଙ୍କାର ।।୦।।

ଧର୍ମ ଆମର ହେଲେ ହେଉ ଭିନ୍ନ
କର୍ମ ଆମର ଚିର ମହୀୟାନ
ଦୂରସରଣୀର ଯାତ୍ରୀ ଆମେରେ, ଆମେ ତ
ଦୁର୍ଜ୍ଜୟ ବୀର ।।୧।।

ବନ୍ଦନା ଗାଉ ଆମେ ମାନବ ଜାତିର
ମମତାର ବାସେ ଭରା ଏ ଆମଅନ୍ତର
ନୂଆସକାଳର ଅଭିଷେକ ପାଇଁ ଆମେ ସଜାଡ଼ିବା
ତୋରଣ ଦ୍ୱାର ।।୨।।

ହେଉ ବିଶ୍ୱଗ୍ରାମ, ଏ ଆମ ବାସନା
ଧରଣୀରେ ହେଉ ସରଗ ରଚନା ।
ଚିର ବସନ୍ତର ମଧୁର ମଳୟ ବହୁ
ନିତ୍ୟ ନିରନ୍ତର ।।୩।।

•••

# ଆମେ ଭାରତୀୟ

ଆମେ ଏକଏକ ନଦୀ ମିଶିଲେ ସାଗର
ଅନେକକୁସୁମ ଆମେ ଏକ ବଗିଚାର ।
ମିଳିମିଶି ଆମେ ହସି ହସାଇବୁ
ବିଶ୍ୱହେବ ମଧୁମୟ,
ଏଇ ଆମ ପରିଚୟ ॥୧॥

ମରୁଭୂମି ବାଲି ବୁକେ ଫୁଟାଇବୁ
କେରିକେରି ସୁନାଫୁଲ
ଆମେ ଗାଇଯିବୁ ମମତାର ଗୀତି
ତୋଳି ସୁମଧୁର ସୁର ।
ଗୀତ ହେଉ ପଛେ ଅନେକ ଆମର
ଏକ ଭାବ ଏକ ଲୟ,
ଏଇ ଆମ ପରିଚୟ ॥୨॥

ବେଦ, ବାଇବେଲ, କୋରାନ, ପୁରାଣ
ସବୁରେ ଏକଇ କଥା
ଆମେ ଭାରତୀୟ ସରବେ ସମାନ
ଆମେ ତ ଜଗତଜିତା ।
ଏ ଭାରତ ଭୂମି ଆମର ଜନନୀ
ଆମେ ତା'ର ପୁଅଝିଅ,
ଏଇ ଆମ ପରିଚୟ ॥୩॥

# ଭାରତ ଆମ ମାଆ

ଉଇଁ ଆସୁଅଛି ଚେତନା ସୂରୁଜ
ମଧୁର ମୋହନ ବେଶେ
ମିଠାମିଠା ହସି ଆଲୋକ ବରଷି
ଭାରତଗଗନଦେଶେ ॥୦॥

ସଜଫୁଲ ଫୁଟିହସେ ବନେ ଉପବନେ
ସକାଳ ଶିଶିରଭିଜା ଶୀତଳ ପବନେ
ବାଜେ ଶୁଭଶଙ୍ଖ ଅଳିଗୁଞ୍ଜରଣେ ମମତା ମଧୁବିଳାସେ ॥୧॥

ଗିରିଝରଣାର ସୁଲଳିତ ସୁରେ
ସୁଦୂର ଅତୀତ ଆଳାପ ଯେ ତୋଳେ
ବିହଙ୍ଗ କାକଳି ସାଜେ ହୁଳହୁଳି ଏଇ ଶୁଭ ଅବକାଶେ ॥୨॥

ଏଇମାଟି ଆମ, ମୁକତିର ରାହା
ବିପଦରେ ବନ୍ଧୁ, ଅଭାବରେ ମାଆ
ରାଜରାଜେଶ୍ୱରୀ ଏଇ ଆମ ମାଆ ପ୍ରଣାମ ତା, ପାଦଦେଶେ ॥୩॥

# ଏଇ ଦେଶ ଏଇ ମାଟି

ଏଇ ଦେଶ ଏଇ ମାଟି
ଆମରି ଜନନୀ
ଚରଣେ ପ୍ରଣାମ ତା'ର
ଦିବସ ରଜନୀ ।।୦।।

ଧୂଳି ବାଲି ପଥରରେ
ଗଢ଼ା ତନୁ ତାହାର
ତା' ଅନ୍ତରେ ଭରାମଧୁ-
ମମତାର ଜୁଆର
ସେ ଆମ ଜୀବ ଜୀବନ ଆମ ମଥାମଣି ।।୧।।

ନଇଁ ଆସେ ମେଘମାଳା
ତା'ର ସେବା ପାଇଁକି
ଦିଗନ୍ତ ଛୁଉଁଛି ପାଦ
ନିଜ ମଥା ନୋଇଁକି
ପ୍ରତିଉଷା ଆସେ ହସି ହୋଇ ଶୁଭବରଣୀ ।।୨।।

ଲତାବିତାନରେ ଫୁଟେ
ଫୁଲ କେତେ ଜାତିର
ପୂଜାଫୁଲ ସିଏ ପରା
ଆମରି ଏ ମାଟିର ।
ବିହଗ ଗାନରେ ଶୁଭେ ଭକତିର ରାଗିଣୀ ।।୩।।

# ଏଇ ଆମ ଦେଶ

ଏଇ ଆମଦେଶ ଏଇ ଆମ ମାଟି
ଆମ ମାଟି ଆମ ମାଆ,
ଏ ମାଟିରେ ଅଛି ଯେତିକି ସେନେହ
ଭାଷାରେ ଅକୁହା ତାହା ।।୦।।

ଭାରି ଆପଣାର ଲାଗେ ତା'ର ନାଆଁ
ଭାରି ଭଲଲାଗେ ତା' ଶୀତଳ ବାଆ
ମତେ ଲାଗେ ସତେ ସାରା ମରତରେ ଏଇ କି ସରଗ ରାହା ।।୧।।

ପାଦରେ ଦେଇଛି ଚାଲିବା ଶକତି
ମନରେ ଦେଇଛି ଆଦର ଭକତି
ଯେତେ ଭଲ କଥା ସବୁ ଶିଖାଇଛି, ଦେଖାଇଛି ନୂଆରାହା ।।୨।।

ମାନବିକତାର ଲଳିତ ପରଶେ
ଆମ ମନଫୁଲ ଫୁଟି ହସେ ବାସେ,
ମାଆର ହସରେ ଆମେ ହସିବାରେ ରଖିବା ତାହାରି ନାଆଁ ।।୩।।

●●●

# କିଛି ଅର୍ଥ ନାହିଁ

ନୁହେଁ ଦେଶ ପାଇଁ ଅବା ଜାତି ପାଇଁ
କେବେ ଦିନେ କିଛି ଭାବିବାର ନାହିଁ
ଖାଲି ବଞ୍ଚିବାଟା ନିଜ ସ୍ୱାର୍ଥ ପାଇଁ
ଏ ଜୀବନରେ କିଛି ଅର୍ଥ ନାହିଁ ॥୧॥

ପରଚର୍ଚ୍ଚା, ଲାଗୁଥାଏ ଭାରିସୁଖ
ନିଜ ପ୍ରଶଂସାରେ ନିଜେ ଶତମୁଖ ।
'ମୁଁ', 'ମୁଁ' ଶବ୍ଦ ଖାଲି ଜପାମାଳି
'କେହି ନାହିଁ ଭଲ ଆଉ ମୋହ ଭଳି
ଏଇମିତି ଦିନ ଯାଏ ବୃଥା ବହି
ଏ ଜୀବନରେ କିଛି ଅର୍ଥ ନାହିଁ ॥୨॥

ଆନ ସୁଖ ଦେଖି ଦେହ ଯାଏ ଜଳି
ଇଚ୍ଛା ହୁଏ ଦେବା ପାଇଁ ପାଦେ ଦଳି
ଆଉ କାହା କଥା ସୁଖ ଲାଗେନାହିଁ
ନିଜ ପ୍ରଶଂସାକୁ କାନ ଥାଏ ଚାହିଁ
ଏ ଜୀବନରେ କିଛି ଅର୍ଥ ନାହିଁ
ଖାଲି ବଞ୍ଚିବାଟା ନିଜ ସ୍ୱାର୍ଥ ପାଇଁ ॥୩॥

ଆଉ କ୍ଷମତା ଟିକିଏ ହୁଏ ଲୋଡ଼ା
ଯେହ୍ନେ ବଟା ବେସରକୁ ବଡ଼ିଖଡ଼ା
ମିଛ କଥା କହି ଅବା ନୋଟ ଦେଇ
ଯେନତେନପ୍ରକାରେଣ ଭୋଟ ପାଇ
ଦେଶ ଖୋଳ କରିଦେଲେ ଖାଇଖାଇ
ଏ ଜୀବନରେ କିଛି ଅର୍ଥ ନାହିଁ ॥୪॥

ଦେଶସେବା କରିବାକୁ ଭାରିମନ
ତେଣୁ ଆପଣା ପ୍ରଚାର ରାତିଦିନ ।
ପୁଣି ଭାଷଣ ମଞ୍ଚରେ ଗଲେ ବସି
ଛୋଟ ଠାକୁର ପରାୟ ଯାଏ ଦିଶି

ସେ ଭାଷଣରେ କିଛି ଅର୍ଥ ନାହିଁ
ଭାଷଣଟା ନିଜ ସ୍ୱାର୍ଥ ପାଇଁ
ଏ ଜୀବନରେ କିଛି ଅର୍ଥ ନାହିଁ ।।୫।।

ମହା ମହାଯନ୍ତ୍ରୀ ତାଙ୍କ ଠାଣି ଦେଖି
ଆଖି ଟେରା ହୋଇଯାଏ ରହେ ଲାଖି
ତୁଣ୍ଡେ ତୁଣ୍ଡେ ଥୁଆ ତାଙ୍କ ଅଙ୍କପାଠ
ଆଗ ପାଉଣାଟା ପରେ କର୍ମବାଣ୍ଟ ।
ପୋଲ ଭାଙ୍ଗିଯାଉ ଅବା ଯାଉ ଧୋଇ
ସେ ଦିଗକୁ ଟିକିଏ ନିଘା ନାହିଁ ।
ଖାଲି ବଞ୍ଚିବାଟା ନିଜ ସ୍ୱାର୍ଥ ପାଇଁ
ଏ ଜୀବନରେ କିଛି ଅର୍ଥ ନାହିଁ ।।୬।।

ବଡ଼ ଡାକ୍ତରଖାନାରେ ଡାକତର
ଖାଲି ଚିଡ଼ିଚିଡ଼ି ଆଉ ତରତର ।
ରୋଗୀ ହତାଶ ଏ ସବୁ ହାଉଆରେ
ଶେଷେ କ୍ଲିନିକ୍ ଯିବାକୁ ରିକ୍ସା ଧରେ
ସେଠି ଡାକ୍ତରଙ୍କ ଆଉ କ୍ରୋଧନାହିଁ
ମନ ଭାରି ଖୁସି ଟଙ୍କା ଚାହିଁଚାହିଁ
ଖାଲି ବଞ୍ଚିବାଟା ନିଜ ସ୍ୱାର୍ଥ ପାଇଁ
ଏ ଜୀବନରେ କିଛି ଅର୍ଥ ନାହିଁ ।।୭।।

ଯେତେ ଛୁଟି ହେବ ହେଉ ସେତେ ଭଲ
କଲେଜରେ ଲାଗିଥାଉ ଗୋଳମାଳ ।
ପାଠ ପଢେଇଲେ ହୁଏ ମନଦୁଃଖ
ଆକଥାକ ଟିଉସନେ ମନସୁଖ
ପାଠ ବିକ୍ରୀ ହୁଏ ମୋଟା ଧନ ନେଇ
ମନ ଖୁସି ଥାଏ ସେହି ଧନ ପାଇ ।
ଖାଲି ବଞ୍ଚିବାଟା ନିଜ ସ୍ୱାର୍ଥ ପାଇଁ
ଏ ଜୀବନରେ କିଛି ଅର୍ଥ ନାହିଁ ।।୮।।

●●●

## ପବନ ଯୁଗ

ପବନ ଯୁଗ ଚାଲିଛି ପରା
ପବନ ଯୁଗ ଭାଇ
ହାଉଆକଲେ ଡେଣି ଫୁଲେଇ
ପାରିବୁ ଜିଣି ମହୀ ॥୧॥

ଲାଭ ନିଜର ନଥାଉ ପଛେ
ଆନର କଲେ ହାନି
ଦେଖିବୁ ତତେ ଡରିବେ ଲୋକେ
ଯିବେ ତୋ କଥା ମାନି ॥୨॥

କଥେ ଭାବିବୁ କଥେ କହିବୁ
ଆଉ ପ୍ରକାରେ କାମ
ଅଳପ ହସି କାଟିବୁ ଚେର
ସଭିଙ୍କୁ ଦେବୁ ନାମ ॥୩॥

ସରଳ ପରି ଜଣାପଡ଼ିବୁ
ଗରଳ ଭରି ମନେ
ବଡ଼ ଲୋକଙ୍କ ଲାଙ୍ଗୁଡ଼ଟାକୁ
ଧରିଥିବୁଟି ଟାଣେ ॥୪॥

ବଡ଼ଲୋକଙ୍କ ନାତ ଖାଇଲେ
କରିବୁ ନାହିଁ ଦୁଃଖ
ମନକୁ ତୋର ବୁଝାଇ ଦେବୁ
ସେତ ସରଗ ସୁଖ ॥୫॥

ନେତାଙ୍କ ସଙ୍ଗେ ସରିସା ହେବୁ
ପଛରେ ଥିବୁ ଧାଇଁ
ଉପରେ ପଡ଼ି କଥା କହିବୁ
ଆଜ୍ଞା ଆପଣ ହୋଇ ।।୬।।

ଯାହା କହିବେ 'ହଁ' ଭରିବୁ
'ନାହିଁ' କରିବୁ ନାହିଁ
ସକଳ ତୀର୍ଥ ତାଙ୍କ ଚରଣେ
ଏମିତି ମନ ନେଇ ।।୭।।

ସକାଳୁ ଉଠି ଗାଧୋଇ ପଡ଼ି
ସଫା ପୋଷାକ ପିନ୍ଧି
ଧୋବଲା ବିଡ଼ି ଖଣ୍ଡିଏ ଟାଣି
ବସିବୁ ପାଦଛନ୍ଦି ।।୮।।

ଆପଣା ଘରେ ଚଉକି ପରେ
ଯିବୁ ତୁ ଦମ୍ଭେ ବସି
କାହୁଁ ଦୂରରୁ ଦୁଃଖୀଜନତା
ପହଞ୍ଚିଯିବେ ଆସି ।।୯।।

ଦୂର ବଦଳି ପାଖକୁ ହେବ
ମଉଳା ମୁହଁ ନେଇ
ଅଫିସ ବାଲା କହିବେ ଆସି
ଶୁଣିବୁ ମନ ଦେଇ ।।୧୦।।

ଆଶାର ବାଣୀ ଶୁଣାଇ ଦେବୁ
ଆପଣା ଲୋକ ମଣି
କାମ ପଛକେ ନହେଲା ନାହିଁ
ପଇସା ନେବୁ ଟାଣି ।।୧୧।।

ପାଠୁଆ ବାବୁ ଚାକିରି ନାହିଁ
ବଡ଼ଦୁଃଖରେ ଦୁଃଖୀ
ଆଶା ଭରସା ଦେଇ କହିବୁ
କଥାଟି ମନଲାଖି ॥୧୨॥

ଖଣ୍ଡି ଇଂରାଜୀ ଅଭ୍ୟାସ କରି
କହିବୁ ବଙ୍କା ବଙ୍କା
ମଉକା ଦେଖି ପକାଇ ଦେବୁ
ତାଙ୍କଠୁ ମୋଟା ଟଙ୍କା ॥୧୩॥

ଚାକିରି ପାଇଁ ଚାହିଁ ଚାହିଁକା
ଘରକୁ ଥିବେ ଧାଇଁ
ଘର ଲୋକଙ୍କୁ ବତାଇ ଦେବୁ
କହିବେ ଘରେ ନାହିଁ ॥୧୪॥

ଯଦିବା କେବେ ପଡ଼ିବୁ ଧରା
ଶୁଖାଇ ଦେବୁ ମୁହଁ
କହିବୁ ମୋର କାଲିଠୁ ଭାଇ
ବେରାମ ଅଛି ଦିହ ॥୧୫॥

ଭରସା ରଖ ଚାକିରି ହେବ
ବିଶ୍ୱାସ କର ମୋତେ
ରେଜେଷ୍ଟ୍ରିରେ ଚିଠି ପାଇବ ବାବୁ
ଦୁଃଖ କରନା ଏତେ ॥୧୬॥

•••

# ପାଠରେ ପାଠ

ପାଠରେ ପାଠ ପାଠରେ ପାଠ
ପଢ଼ିଛି ଖାଲି ହୁରି
ପାଠ ପଢ଼ିଲେ ଚାକିରି କଲେ
ଦାମ୍‌ଟା ଯାଏ ବଢ଼ି ॥୧॥
ପାଠ ପଢ଼ିଲେ ଶିକ୍ଷିତ ହେବ
ଏମିତି ମାନେ ନାହିଁ
ସବୁପାଠୁଆ ଶିକ୍ଷିତ ନୁହେଁ
ଜାଣିରଖିଥା ଭାଇ ॥୨॥
କଲେଜ କଥା କହନା ଆଉ
ହେଲାଣି ଭୂତଖାନା
ନଲେଜ ସେଠୁ ଗଲାଣି ଚାଲି
ବହୁ ଦୂରକୁ ଅନା ॥୩॥
ପରୀକ୍ଷା ପରେ ଛାତ୍ରମାନଙ୍କୁ
ମାଡ଼ି ଆସୁଛି ଚିନ୍ତା,
ଜାଣିବା ପାଇଁ କେଉଁଠି ପରା
ପଢ଼ିଲା ତାଙ୍କ ଖାତା ॥୪॥
ଖବର ପାଇ ଠିକଣା ବୁଝି
ଯାଇଣ ବୀରଦର୍ପେ
ପରୀକ୍ଷାର୍ଥୀ ସେ ପହଞ୍ଚୁଛନ୍ତି
ପରୀକ୍ଷକଙ୍କ ପାଖେ ॥୫॥
ନୀତିଅନୀତି ବାଛି ବସିବା
ଏ ଦେଶ ନୀତି ଥିଲା,
ସେଦିନ ଆଜି ନାହିଁ ତ ଆଉ
ନୂଆ ଯୁଗ ଏ ହେଲା ॥୬॥

# ଜୀବନ କଥା

କହନା କହନା ସମାଜର କଥା
କହିଲେ ହୋଇବ ପୋଥି
ଖତ ଖାଇଯାଏ ମଣିଷ ପଣିଆ
ସବୁ ଏଠି କାଳିଆତି ।।୧।।

ଜୀଇଁବାରମାନେ ଘୋଡ଼ାର ଦଉଡ଼
ଆଶା ତପ୍ତ ବୈତରଣୀ
ପୋକକାଟି ଦିଏ ସଜୁଫୁଟା ଫୁଲ
ରସ ସବୁ ନିଏ ଟାଣି ।।୨।।

ଆଖି ଯାହା ଅଛି ଗାନ୍ଧାରୀର ଆଖି
ଶୋଷିଲା ସେ ବହୁକାଳ
ଜାଣୁନାହିଁ ସିନା ଶୋଷି ନେଉଅଛି
ଆପଣା ନଦୀର ଜଳ ।।୩।।

ଓଟ ଖାଉଅଛି ନାଗଫେଣିକଣ୍ଟା
ଏ ଆଡ଼େ ସେ ଆଡ଼େ ଚାହିଁ
ସାରୀ ଗାଉଅଛି ସିନେମା ସଂଗୀତ
ଡେଣା ପକ୍ଷୀ ଝାଡ଼ିଦେଇ ।।୪।।

ସବୁଜ ଶୋଭନ ପତ୍ରଗହଳକୁ
ଲହଲହ ଜିହ୍ୱା ଧରି
ଡଉଲ ଡାଉଲ ପୋଷା ଏଣ୍ଡିପୋକ
ନିଃଶବ୍ଦେ ଯାଆନ୍ତି ଚରି ।।୫।।

ପିତା ଲାଗୁଅଛି ମହାଜନ ପନ୍ଥା
ଚାଲିବାକୁ ବେଳନାହିଁ
ଚିତାକାଟିବାଟା କେବଳ ରହିଛି
ଆସୁରୀ ଆନନ୍ଦ ପାଇଁ ।।୬।।

ଗାଧୁଆ ତୁଠରେ ମୁଦି ହଜିଗଲେ
ଖୋଜିବାକୁ ନାହିଁ ବେଳ

ଗୁଣିଆ ଡାହାଣି ଡାହାଣି ଗୁଣିଆ
ଖାଲି ଲୁଚକାଳି ଖେଳ ॥୭॥

ଦିଗ ଦିଗନ୍ତରେ ସାରୁଗଛ ମୂଳେ
ଗୀତ ଗାଉଛନ୍ତି ଭେକ
ସେହି ଗୀତ ଶୁଣି ନିଜକୁ ଲୁଚାଇ
ପିକମାନେ ଏବେ ମୂକ ॥୮॥

ହସ ବଦଳରେ ଲୁହ ମିଳୁଅଛି
ଲୁହ ବଦଳରେ ହସ
ପଣା ବଦଳରେ ପାଣି ମିଳୁନାହିଁ
କାହାକୁ କହିବା କିସ ॥୯॥

ଢୋଲ ବାଜୁଅଛି ଆପଣା ହାତରେ
ଶବଦେ କମ୍ପୁଛି ମହୀ
ବୀଣାର ଲଳିତ ସୁମଧୁର ସ୍ୱର
ଶୁଣିବା ସୁଯୋଗ ନାହିଁ ॥୧୦॥

ଦେବତା ବସିଛି ଭୋକ ଉପାସରେ
ମନ୍ଦିର ଗମ୍ଭୀରି ଘରେ
ମୁଖଶାଳା ଏଣେ ଝଲସି ଉଠୁଛି
ଝଲମଲ ଲିଚୁମାଳେ ॥୧୧॥

କାହାକୁ କହିବା ଆଜିର ଏକଥା
ବାଡ଼ ଖାଇଯାଏ କ୍ଷେତ
ବଡ଼ ବୋଲାଉଛି ମଣିଷ ନିଜକୁ
ଆନେ ମାରି ଯୋଡ଼ିନାତ ॥୧୨॥

ଆସିବ ଆଲୋକ ରେଖା ଚଉଦିଗେ
ତୁଟିବ ଏ ଅନ୍ଧକାର
ନୂଆ ମଣିଷର ମନ ଉପବନେ
ଫୁଟିବ ଚେତନା ଫୁଲ ॥୧୩॥

❖❖❖

# ପ୍ରେତନାଚ

ନୀତିବନ୍ଧନ ଯାଇଅଛି ତୁଟି
ସମାଜ ଅଜି ମୁକ୍ତ,
ମୁକ୍ତ ସମାଜ ହୋଇଯାଇଅଛି
ସ୍ୱେଚ୍ଛାଚାରରେ ଯୁକ୍ତ ॥୧॥
ବିବେକ ବିଚାର ମଣିଷ ମନରୁ
ଯାଇଅଛି ଅପସରି,
ହିଂସା, ଛଳନା ମିଥ୍ୟାଚାରର
ବିଷଯାଇଅଛି ଚରି ॥୨॥
ମମତ୍ୱବୋଧର କୁସୁମ ସୁବାସ
ଯାଇଅଛି ଦୂରେ ଚାଲି,
ବସ୍ତୁବାଦର ଭଷ୍ମଲାଭାରେ
ଜୀବନ ଯାଉଛି ଜଳି ॥୩॥
ଉଗ୍ରସ୍ୱଭାବ ମଣିଷ ମନକୁ
କରିଅଛି କଳୁଷିତ
ଈର୍ଷା ଅନଳେ ମଣିଷର ମନ
ଜଳୁଅଛି ଅବିରତ ॥୪॥
ଶିକ୍ଷା ଆଲୋକ ପାଇବା ପାଇଁକି
ଆଉ କା'ର ନାହିଁ ମନ
ବିଦ୍ୟା ନାମରେ ଅବିଦ୍ୟା କରୁଛି
ପ୍ରେତନାଚ ନିଶିଦିନ ॥୫॥
ମନର ବିକାଶ ହୋଇଅଛି ବୋଲି
ମଣିଷ ନାମଟି ଭାଇ
କାମରେ ହୋଇଛି ରାକ୍ଷସ ସମ
ଧ୍ୱଂସ କରୁଛି ମହୀ ॥୬॥

•••

# ଅନୁଚିନ୍ତା

ସମାଜ ଯେଉଁଠି ଛନ୍ଦ ବିହୀନ
ସ୍ୱାର୍ଥ ଯେଉଁଠି ସବୁ
ଶୋଷଣ ଯେଉଁଠି ଶାସକ ଆସନେ
ଅର୍ଥ ଯେଉଁଠି ପ୍ରଭୁ ॥୧॥

ସେଇଠି ଖୋଜୁଛ ତରୁଣ ପଥିକ
ନନ୍ଦନ ଚାରୁବାସ
ବ୍ୟର୍ଥ ପ୍ରୟାସୀ ବୋଲି ପୁରବାସୀ
କରିବେଟି ପରିହାସ ॥୨॥

ମୁଁ କିନ୍ତୁ କହିବି ପ୍ରୟାସ ତୁମର
ବ୍ୟର୍ଥ ହୋଇବ ନାହିଁ
ଆଶାରେ ମିଳିବ ଖୋଜିବାର ମୂଲ
ସ୍ୱର୍ଗ ଆସିବ ନଇଁ ॥୩॥

ଗୋଟିଏ ଦୀପରେ ଆଲୁଅ ଜଳିଲେ
ନାଶିବ ସେ ଅନ୍ଧକାର
କୋଟିଏ ଦୀପକୁ ଜଳାଇ କରିବ
ନିରାଜନା ଆଲୋକର ॥୪॥

ଗୋଟିଏ କଣ୍ଠୁ ଝରିଯିବ ଯେବେ
ମାନବିକତାର ଗୀତ
କୋଟିଏ କଣ୍ଠ ସେ ଗୀତରେ ହେବ
ଚାରୁ ଚନ୍ଦନ ସିକ୍ତ ॥୫॥

ଗୋଟିଏ ବୋଲି ତ ଅଲୋଡ଼ା ନୁହେଁ ସେ
କୋଟିଏର ଜନ୍ମଦାତା
ଶୂନ୍ୟଦିଗନ୍ତେ ପୁଣ୍ୟ ଆହ୍ୱାନ
ଆଜିର ଏ ଅନୁଚିନ୍ତା ॥୬॥

●●●

# ମହିଷମର୍ଦ୍ଦିନୀ

କଇଁଫୁଲେ ଫୁଲେ ପାଦଥାପି ଥାପି
ତୁମେ ଆସିଅଛ ଆଜି
ଗଙ୍ଗଶିଉଳିର ମିଠା ମିଠା ବାସେ
ମହିଷମର୍ଦ୍ଦିନୀ ସାଜି ।।୧।।

ମହିଷାସୁରକୁ ମାରିବା ପାଇଁକି
ଦେବତାଏ କଲେସଭା
ସବୁ ଦେବତାଙ୍କ ତେଜରୁ ଆସିଲ
ଦଶଭୁଜା ଦେବୀଦୁର୍ଗା ।।୨।।

ବିଷ୍ଣୁ ଦେଇଥିଲେ ମାଆ ଯେ ତୁମକୁ
ଶଙ୍ଖ-ଚକ୍ର-ଗଦା-ପଦ୍ମ ।
ନାଗଫାଶ ଦେଲେ ଦେବଗଣପତି
ଆବର୍ତ୍ତନଚକ୍ର ସୂର୍ଯ୍ୟ ।।୩।।

ବୈଶ୍ୱାନର ଦେଲେ ନୀଳଚକ୍ର ଆଣି
ଖଡ଼୍‌ଗ ଦେଲେ ବିଶ୍ୱଦେବା
ଅସୁର ନାଶିବା ପାଇଁ ଦେଇଥିଲେ
ବଜ୍ରଚକ୍ର ଯେ ମଘବା ।।୪।।

ସିଂହବାହିନୀ ଅବତରି ଥିଲ
ଚଣ୍ଡୀ ଚାମୁଣ୍ଡା ଆଟ
ତେଜମୟୀ ଦେବୀ ଦୁର୍ଗତିନାଶିନୀ
ପିନ୍ଧି ଅମଳାନ ପାଟ ।।୫।।

ଗୋଟିଏ ଅସୁର ମାରିବା ପାଇଁକି
ଥିଲା ଏତେ ଆୟୋଜନ
ଏବେ କୋଟିକୋଟି ଅସୁର ଦାଉରେ
ଚରାଚର ହୀନିମାନ ॥୬॥

କୋଟିଏ ତ୍ରିଶୂଳ ଲୋଡ଼ା ହେବ ଏବେ
ଗୋଟିଏ ତ୍ରିଶୂଳ ନୁହେଁ,
ରାଜନୀତି ଛତ୍ର ଛାୟାରେ ଅଛନ୍ତି
ତାଙ୍କୁ ବା ପାରିବ କିଏ ॥୭॥

କେତେ କେତେ ରୂପେ ଆସିଲେ ହଟିବେ
ଆଜିର ଅସୁର ଦଳ
ଭାବିଲେ ସେକଥା ଘୂରିଯାଏ ମଥା
ବହେ ଦେହୁ ଝମଝାଳ ॥୮॥

ଦାନବ ଦଳିନୀ ତୁମ ତେଜ ବଳେ
ଅସୁର ହୋଇବେ ନାଶ
ଦିବ୍ୟଚେତନା ଅରୁଣ କିରଣେ
ଝଲସିବ ଦଶଦିଶ ॥୯॥

ବହିବ ମଳୟ ଦିବସ ରଜନୀ
ପୁଲକିତ ହେବ ମହୀ
ବିକଶି ହସିବ ନାନାଜାତି ଫୁଲ
ଅମୃତ ବରଷି ଦେଇ ॥୧୦॥

ସରଗ ହୋଇବ ଏହି ଧୂଳିଧରା
ମଧୁଭରା ହେବ ମନ
ଅପସରି ଯିବ ଅମା ଅନ୍ଧକାର
ଆସୁଛି ନୂତନ ଦିନ ॥୧୧॥

# ତୁମେ ଓ ମୁଁ

(ରହସ୍ୟବାଦୀ ରୋମାଣ୍ଟିକ ଗୀତିକବିତା)




ଡକ୍ଟର ଶରତ ଚନ୍ଦ୍ର ରଥ

ପ୍ରକାଶ କାଳ : ୨୦୧୨
ପ୍ରଚ୍ଛଦ : ବିଭୁ ପ୍ରସୂନ

# ପ୍ରାକ୍‌କଥନ

ବିନ୍ଦୁରେ ସିନ୍ଧୁ ଦର୍ଶନର କ୍ଷମତା ହିଁ ଗୀତିକବିତାର ସାର୍ଥକତା । ଗୀତିମୟତା ଓ କବିତ୍ୱର ସମନ୍ୱିତ ବର୍ଣ୍ଣବିଭାରେ ସମୁଜ୍ଜ୍ୱଳ ଗୀତିକବିତାର ପ୍ରଭାବ ଓ ପ୍ରତିଷ୍ଠା ସୁଦୂରପ୍ରସାରୀ । ସଂକ୍ଷିପ୍ତତା, ସରଳତା, ସ୍ୱତଃସ୍ଫୁର୍ତ୍ତତା, ଆବେଗଧର୍ମିତା ସହିତ ଏକ ମୁଖୀନତା ଏହାର ମୌଳିକତା । ଯଥାଯୋଗ୍ୟ ଶବ୍ଦର ଶଯ୍ୟାରେ ଭାବର ପ୍ରବାହ ଯୋଗୁଁ ଗୀତିକବିତା ହୋଇଥାଏ ସୁଖପାଠ୍ୟ ଓ ଅନୁଭବ୍ୟ । ସଂପ୍ରତି ଏହି ସାହିତ୍ୟିକ ବିଭବର ଚଲାପଥ ପ୍ରଶସ୍ତ ଓ ପରିବ୍ୟାପ୍ତ ହେବାରେ ଲାଗିଛି । ଏହାର ଭବିଷ୍ୟତ ଯେ ଉଜ୍ଜ୍ୱଳ ଏଥିରେ ଦ୍ୱିମତ ନାହିଁ ।

ଏହା ପୂର୍ବରୁ ମୋର ଗୀତିକବିତା ପୁସ୍ତକ କେତେଗୋଟି ପ୍ରକାଶିତ ହୋଇଛି । ସେଗୁଡ଼ିକ ପାଠକୀୟ ଆଦୃତିଲାଭ କରିଛି । ତନ୍ମଧ୍ୟରେ 'ଧୂପବାସ', 'ଆରାଧନା', 'ବନମାଳା', 'ନବଚେତନା', 'ମାଟିମହକ', ପ୍ରଭୃତି ଅନ୍ତର୍ଭୁକ୍ତ । ଉକ୍ତ ପୁସ୍ତକଟିରେ ସ୍ଥାନିତ ରଚନାଗୁଡ଼ିକରୁ ବହୁଳାଂଶ ରହସ୍ୟବାଦୀ ରୋମାଣ୍ଟିକ ଭାବଧର୍ମ ସମ୍ବଳିତ । ସୁକୁମାର ଚିତ୍ତବୃତ୍ତିର ସୁଲଳିତ ପରିପ୍ରକାଶ ସହିତ ଜୀବନର ବାସ୍ତବତାର ଉପସ୍ଥାପନା ଏଥିରେ ରହିଛି । ଏଥିରେ ପ୍ରକାଶିତ ରଚନାଗୁଡ଼ିକ ମଧ୍ୟରୁ ବହୁ ରଚନା ଭିନ୍ନଭିନ୍ନ ପତ୍ରପତ୍ରିକା ଏବଂ ସମ୍ବାଦପତ୍ରରେ ପୂର୍ବରୁ ମୁଦ୍ରିତ ହୋଇଛି । ତନ୍ମଧ୍ୟରେ ଝଙ୍କାର, ସାବିତ୍ରୀ, ସହକାର, ନବରବି, ସପ୍ତର୍ଷି, ଇସ୍ତାହାର, ଜନସୁଧା, ଅମୃତାୟନ, କାଦମ୍ବନୀ, ଶତଦ୍ରୁ, ସଚିତ୍ର ବିଜୟା, ଚିରସମର୍ଥା, ଶ୍ୱେତସଙ୍କେତ, ଦିଗ୍‌ବଳୟ, ଗୀତିଗଙ୍ଗୋତ୍ରୀ, ସାଗରିକା ପ୍ରଭୃତି ପତ୍ରିକା, ଦୈନିକ 'ଧରିତ୍ରୀ'ର ସାହିତ୍ୟ ପୃଷ୍ଠା ଓ ଦୈନିକ 'ସମୟ'ର ସାହିତ୍ୟ ପୃଷ୍ଠା ଅନ୍ତର୍ଭୁକ୍ତ । ଏହି ଅବକାଶରେ ସଂପୃକ୍ତ ସଂପାଦକ/ସଂପାଦିକାମାନଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି ।

ପିଲାଦିନରୁ ଗୀତିକବିତାରେ ରୁଚି ରଖିଥିବା ମୋର ଭାବସତ୍ତାଟି ଯେଉଁ ବନ୍ଧୁ, ଆତ୍ମୀୟସ୍ୱଜନ, ତଥା ପାଠକପାଠିକାମାନଙ୍କ ଦ୍ୱାରା ଗୃହୀତ ହୋଇଛି ସେମାନଙ୍କୁ ଏଇ ଅବସରରେ କୃତଜ୍ଞତା ଜଣାଉଛି । ଏଇ ଅବସରରେ ମୋ ବୋଉ ଶ୍ରୀମତୀ ମନୋରମା ଦେବୀଙ୍କୁ ତାଙ୍କର ଅଶେଷ ପ୍ରେରଣା ନିମନ୍ତେ ଗଭୀର କୃତଜ୍ଞତା ଜଣାଉଛି ।

ପୁସ୍ତକର ପାଣ୍ଡୁଲିପି ପଢ଼ି ଆମ ବିଭାଗର ପ୍ରଫେସର ସୁଲେଖିକା, କବି ଡକ୍ଟର ସଂଘମିତ୍ରା ମିଶ୍ର ତାଙ୍କର ଅଭିମତ ପ୍ରଦାନ କରିଥିବାରୁ ତାଙ୍କୁ ଅଶେଷ କୃତଜ୍ଞତା ଜଣାଉଛି । ସୁଲେଖିକା, କବି ଡକ୍ଟର ତୁଳସୀ ଓଝାଙ୍କ ମତାମତ ପାଇଁ ତାଙ୍କୁ ଏ ଅବକାଶରେ ଅସୀମ କୃତଜ୍ଞତା ଜଣାଉଛି । ମୋର ଗୁରୁପ୍ରତିମ କବି, ବିଶିଷ୍ଟ ନାଟ୍ୟକାର ପ୍ରାଧ୍ୟାପକ ରମେଶ ଦାସଙ୍କ ମତାମତ ପାଇଁ ତାଙ୍କୁ ଅଶେଷ କୃତଜ୍ଞତା ଜଣାଉଛି । ପୁସ୍ତକ ପ୍ରକାଶନରେ ସହଯୋଗ କରିଥିବାରୁ ଦିବ୍ୟ ପ୍ରକାଶନୀ ପ୍ରକାଶନ ସଂସ୍ଥାକୁ ଧନ୍ୟବାଦ ଜଣାଉଛି । ପ୍ରଚ୍ଛଦପଟ ଅଙ୍କନ କରିଥିବାରୁ ବିଭୁ ପ୍ରସୂନଙ୍କୁ ଅଶେଷ ଧନ୍ୟବାଦ ।

ପୁସ୍ତକଟି ପାଠକୀୟ ଶ୍ରଦ୍ଧା ଅର୍ଜନ କଲେ ଶ୍ରମ ସାର୍ଥକ ମଣିବି ।

**ଡକ୍ଟର ଶରତ ଚନ୍ଦ୍ର ରଥ**
ପ୍ରଫେସର, ଓଡ଼ିଆ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର

# ତୁମେ

ତୁମେ ପୂଜା ବେଦୀ ପ୍ରଦୀପର ଶିଖା
ମେଘର ଜଳ ତରଙ୍ଗ
ଜଳଦ ବିଳାସୀ ଆକାଶରେ ତୁମେ
ଇନ୍ଦ୍ରଧନୁ ରେଖା ରଙ୍ଗ ॥୦॥

ରସିକତା ତୁମେ ରାଜସିକତାର
ସରସତା ତୁମେ ଶରଦଶଶୀର
ନୀଳ ସରସୀର ଲହରୀ ଝୁଲାରେ କଇଁଫୁଲ ପ୍ରତିବିମ୍ବ ॥୧॥

ଜୀବନ ସୂତାରେ ମମତାର ମାଳି
ସବୁଜ କେଦାରେ ପବନର ଦୋଳି
ଗବାକ୍ଷ ଫାଙ୍କରେ ଚହାଣି ବାଙ୍କରେ ମନଲାଖି ଅନୁଭବ ॥୨॥

ରାଗ ବସନ୍ତର ଭରା ସଉରଭ
ଅଳକା ଭୁବନ ବାସନ୍ତୀ ବିଭବ
ବହୁ ଦୂରଗାମୀ ବନ ଝରଣାର କୁଳୁକୁଳୁ ଚରୁ ଛନ୍ଦ ॥୩॥

ଶୁଭ ଅଭିଷେକ ମାହେନ୍ଦ୍ର ବେଳାର
ଅନୁଲମ୍ବ ତୁମେ ଦିବ୍ୟ ଭାବନାର
ଜୀବନ ବେଦର ଅନୁଭାଷ୍ୟ ତୁମେ ଅନୁଭୂତି ଅବଲମ୍ବ ॥୪॥

ତରୁଣ ମନର ସୀମାପାର ଆଶା
ପ୍ରଣୟୀ ଆଖିର ମଧୁଛନ୍ଦା ଭାଷା
ଗନ୍ଧର୍ବ ନଗରୀ ରଙ୍ଗରେଖା ତୁମେ ସଂଗୀତର ଅନୁବନ୍ଧ ॥୫॥

❁❁❁

# ତୁମେ ତ ଆସିଲ ନାହିଁ

ଆସିବ ଆସିବ କହି କହି ତୁମେ
କାହିଁ ତ ଆସିଲ ନାହିଁ
ସକାଳରୁ ସଞ୍ଜ, ସଞ୍ଜରୁ ସକାଳ
ବେଳ ଗଲା ବାଟ ଚାହିଁ ।।୦।।

ସକାଳକୁ ମାଗିଥିଲି ଦେବ ବୋଲି
ତୁମପାଇଁ ନୀଳକଇଁ
ବନ ମଇନାକୁ ଗୀତ ଗାଇବାକୁ
ଆଗରୁ ଥିଲି ମୁଁ କହି
ପାଛୋଟି ଆଣିବି ଭାବିଲି ତୁମକୁ,
ଚାହିଁଲା ବେଳକୁ ନାହିଁ ।।୧।।

ଦେବଦାରୁକୁ କେତେ ମାଗିଥିଲି
ଖରା ବେଳେ ଦେବ ଛାଇ
ପବନକୁ କହିଥିଲି ବହିବାକୁ
ପଦ୍ମପୋଖରୀକୁ ଛୁଇଁ
ଶୁଭୁଥିଲା ତୁମ ପାଦର ଶବଦ
ଚାହିଁଲା ବେଳକୁ ନାହିଁ ।।୨।।

ଫୁଟିବ ବୋଲି ମୁଁ ଚାହିଁ ବସିଥିଲି

ସଞ୍ଜବେଳେ ହେନା ମଲ୍ଲୀ

ଫୁଲ ତ ଫୁଟିଲା ବାସ ଛୁଟିଗଲା

ସଞ୍ଜୁଆ ପବନେ ଝୁଲି ।

ଲାଗୁଥିଲା ମତେ ଏଇ ତ ଆସିଲ,

ଚାହିଁଲା ବେଳକୁ ନାହିଁ ॥୩॥

ନୀଳନିଶୀଥକୁ ମାଗିଥିଲି ମୁହିଁ

ଜୋଛନାର ରୁପାନଈ

ସେ ନଈ କୂଳରେ ତୁମେ ଆଉ ମୁଁ

ବସିଥିବା ଖୁସି ହୋଇ

ପାହିଗଲା ରାତି ହୋଇଲା ପାହାନ୍ତି,

ତୁମରି ବାଟକୁ ଚାହିଁ ॥୪॥

***

# ମୁଁ ଖୋଜିଯିବି

ତୁମକୁ ମୁଁ ଖୋଜିଯିବି ତାରାରେ ତାରାରେ
ନୀହାରିକା ଧାରେ ଧାରେ ନୀଳ ଆକାଶରେ ॥୦॥
ଦେଖାପାଇବି କି ନାହିଁ
ଏବେ ବି ଜାଣିନି
ଦେଖା ପାଇବାର ଆଶା
କେବେ ବି ଛାଡ଼ିନି ।
ଅଶେଷ ଆନନ୍ଦ ମୋର ପାଇବା ଆଶାରେ ॥୧॥
ଝିରି ଝିରି ଜୋଛନାର
ଲାବଣ୍ୟ ଜୁଆରେ
ମଦନ ମାଦକଭିଜା
ଚନ୍ଦ୍ରମଣ୍ଡଳରେ
ନୀଳପରୀ ଦେଶ କୁଞ୍ଜେ ମଧୁ ଗୁଞ୍ଜନରେ ॥୨॥
ବଉଦର ଫାଙ୍କେ ଫାଙ୍କେ
ତୁମକୁ ଖୋଜିବି
ତୁମ ଲେଖା ଗୀତଗାଇ
ପ୍ରେମରେ ମଜ୍ଜିବି ।
ରାମଗିରିରୁ ଅଳକା ଆଦ୍ୟ ଆଷାଢ଼ରେ ॥୩॥
ପାଇବାର ସପନରେ
ପରାଣେ ପୁଲକ
କୁସୁମିତ ସୀମାନ୍ତରେ
ଅନ୍ଧାରେ ଆଲୋକ
ଲଳିତ ଲବଙ୍ଗଲତା ମହୁଆ ବାସରେ ॥୪॥
ତୁମ ମିଠା ମିଠା ହସ
ମୁକୁଳା ଆବେଗ
ମାଖି ଦେବ ମନେ ମୋର
ଲାବଣ୍ୟ ପରାଗ
ଝଲସିବ ଏ ଜୀବନ ନୂଆ ଆଲୋକରେ ॥୫॥

●●●

# ଗୋଧୂଳି ତାରା

(ତୁମେ) ଗୋଧୁଳି ଗଗନ ତାରା
ତୁମେ ମୋର କେତେ ଆପଣାର ସତେ
ମରୁବାଲି ଜଳଧାରା ॥୦॥

ତୁମ ହସ ଦେଖି ଲାଜେ ଭିଜିଯାଏ
ସୁବର୍ଣ୍ଣ ଦୀପର ଶିଖା
ଝାଉଁଳି ପଡ଼ଇ ଲାଜକୁଳି ଲତା
ମୁହଁ ତାର ଲାଜମଖା ।
ନଇଁନଇଁ ଆସେ ଲଳିତ ପରଶେ କେତେ ସ୍ମୃତି ଚିତ୍ତଚୋରା ॥୧॥

ଅନେକ ମନର ଗବାକ୍ଷରୁ ତୁମେ
ଆଶାରେଖା ମଧୁମତୀ
ବାରୁଣୀ ବୀଣାରେ ଅବୁଝା ରାଗର
ଆଳାପ ବିହୀନ ଗୀତି
ନୀଳ ଆକାଶରେ ସନ୍ଧ୍ୟାତାରା ତୁମେ ସପନ ଆଲୋକ ଝରା ॥୨॥

ମତେ ଲାଗେ ସତେ ସାଜିଅଛ ତୁମେ
ଉଷାଲୋକ ମୁଖଶାଳା
ଝରାଇ ଦେଉଛ ଆଗାମୀ ମଥାରେ
କନକ ପରାଗ ପରା
ନୀରବ ଭାଷାରେ ଫୁଟି ଉଠେ ତୁମ ମନକଥା ଅପାଶୋରା ॥୩॥

●●●

# ସୋମ ଫୁଲ

ତୁମ ଦେଖା ସତେ ମିଳିବ କି ମତେ
ଆଜି ନ ହେଲେ ବି କାଲି
ସେଇ ଦିନ ମୋର ଭରିଯିବ ଆହା
ନୟନର ଭିକ୍ଷାଝୁଲି ॥୦॥

ତୁମ ହସ ରେଖା ଜଳାଇ ଦେବଟି
ଆଶାର ମାଣିକ ଦୀପ
ତୁମ ଅନୁରାଗ ଲିଭାଇ ଦେବଟି
ମୋ ମନରୁ ଦୁଃଖତାପ
ନ କହି କହିବ ତୁମେ ଯେଉଁ କଥା
ସେ କଥାରେ ତୁଟିଯିବ ମନ ବ୍ୟଥା
ଫୁଟିବ ନରମ କଳି ॥୧॥

ସେତେବେଳେ କିବା ଦେବି ମୁଁ ତୁମକୁ
ବେଳେବେଳେ ଭାବେ ବସି
ଭାବିଲା ବେଳକୁ ମତେ ଲାଗେ ତମେ
ଦୂରେ ଚଳିଯାଅ ହସି ।
ନ ଦେଖିଲା ପରି ଆସ ପୁଣି ଫେରି
ଚହଲା ପବନେ ସୋମଫୁଲ ସରି
ଖେଳି କେତେ ଲୁଚକାଳି ॥୨॥

●●●

# ଗଗନର ତାରା

ଅଶିଣର ଧଳା ତୁଳା ମେଘ ମୁହିଁ
ତୁମେ ଗଗନର ତାରା
ଧାଇଁଛି ତୁମକୁ ଛୁଇଁବା ପାଇଁକି
ସଞ୍ଜରୁ ସକାଳ ପରା ॥୦॥

ଆଶାବରୀ ରାଗ ଶୁଣାଏ ଜୀବନେ
ନୂଆ ମଣିଷର ଭାଷା
ପାହାଡ଼ ପରଶ ଆଉ କେତେବେଳେ
ହଜାଏ ଜୀଇଁବା ନିଶା ।
ତଥାପି ପବନ ଆହ୍ଲୁଲାରେ
ଜାଗେ ଭରସା ତ ମଧୁଭରା ॥୧॥

ସକାଳ ଶିଶିର ଭିଜା ତନୁ ତନିମାରେ
ଅପରାଜିତାର ହସ
ବେଳେବେଳେ ମତେ ହାତଠାରି ଡ଼ାକେ
ଆଲୋକିତ ଦଶଦିଶ
ଧାନକ୍ଷେତ ଦିଏ ସବୁଜ ସଙ୍କେତ
ଢାଳି ଆଶିଷର ଧାରା ॥୨॥

ଗୋଧୂଳି ଲଗନ ନରମପଣରୁ
ଝରେ ଉଦାସର ଲୁହ
ନୀଡ଼ ଫେରା ପକ୍ଷୀ ସାଥେ ଝୁଲିଥାଏ
ସାଇତା ସ୍ମୃତିର ଖିଅ ।
ସେଇ ଖିଅ କେବେ ଲାଖି ଯାଉଥାଏ
ବର ଓହଳରେ ପରା ॥୩॥

❁❁❁

# ଦିବ୍ୟଶାନ୍ତି

ବିଶ୍ୱବାତାୟନ କନକ କିରଣେ
ତୁମେ ଜୀବନର ଗୀତି
ସଜସକାଳର ମଧୁର ହସରେ
ଅସୀମ ଆଶାର କାନ୍ତି ।।୦।।

ସବୁଜ ବନାନୀ ଫାଙ୍କେଫାଙ୍କେ ତୁମେ
ଆଲୋକର ଆଭୂଷଣ
ବନ ଝରଣାର ଧାରେଧାରେ ତୁମେ
ପବନର ଶିହରଣ ।
ସୁନ୍ଦର ଶୋଭନ ବାସବ ଧନୁରେ ବୁଣାବୁଣା ରଙ୍ଗ କାନ୍ତି ।।୧।।

ଚହଲାଚହଲା ଛାଇ ଆଲୁଅରେ
ଅଙ୍କାବଙ୍କା ପାଦ ଚିହ୍ନ
ମାଟି ମମତାର ପ୍ରତିନିଧି ତୁମେ
ଝୁମାଝୁମା ମଧୁଜହ୍ନ ।
ଲିପା ଅଗଣାର ବହଳ ଛାଇରେ ଭରସାର ପ୍ରତିମୂର୍ତ୍ତି ।।୨।।

ହତାଶାର ଝଡ଼ ବତାସ ଶେଷରେ
ଅରୁଣିମା ରଶ୍ମିରେଖା
ଚୋରାବାଲି-ଦୂର ଚଲାପଥେ ତୁମେ
ଗୁରୁ ଗରୀୟାନ ସଖା ।
ତୁମେ କଚ୍ଛପୀର ଓଁକାର ଝଙ୍କାର ଝରେ ଯହୁଁ ଦିବ୍ୟଶାନ୍ତି ।।୩।।

●●●

# ରୁପା ସିଲଟ

ଦୂର ଆକାଶରେ ଜହ୍ନ ଆଇନାରେ
ତୁମ ମୁହଁ ମତେ ଦିଶେ
ସ୍ମୃତି ଓ ସ୍ୱପ୍ନର ରୁପା ସିଲଟରେ
ଜୀବନର ଛବି ଭାସେ ।।୦।।

ଘୁମାଏ ଶାମୁକା ବେଳାର ଶେଯରେ
କାହା ବାଟ ଚାହିଁଚାହିଁ
ଅଳସୀ ମନର ଆଖି ପରଦାରେ
ପଡ଼ିଯାଏ କାହା ଛାଇ
ସେ ବାଟ ତୁମର, ସେ ଛାଇ ତୁମର, ଆଶଙ୍କାର ଭାଗ ଶେଷେ ।।୧।।

ଛନ୍ଦ କବିତାର ଅନୁବନ୍ଧେ ଶୁଭେ
ଭରସାର ଶୁଭ ଶଙ୍ଖ
ଗହନ ମନର ରାଜସିଂହାସନେ
ସେନେହର ଅଭିଷେକ ।
ଅବସୋସ ଆଉ ଶୋଷର ମଝିରେ ରେଶମୀ ରାତି କି ବାସେ ? ।।୨।।

ମଧୁ ଜୋଛନାର ପରଶରେ ହସେ
ସପନର ପାରିଜାତ
ନୀଳପକ୍ଷୀ ଯାଏ ଦୂରେ ଉଡ଼ିଉଡ଼ି
ଗାଇ ନାନା ସୁରେ ଗୀତ ।
ଭାବନା ବାଙ୍କରେ ଭାବର ବାରତା ଧୀର ପବନରେ ମିଶେ ।।୩।।

ମହାଭାବର ଏ ମହୁଆ ବିଭବ
ଭାଷାମାନେ ପରାଜୟ
ମହାପାବନର ମହାନ ପଥିକ
ଗିରି ଶିଖେ ରଖେ ଲୟ
ଦେବ ଭୁବନର ଲଳିତ ଭାଷା କି ମରତ ମାଟିକୁ ଆସେ ? ।।୪।।

❁❁❁

# ପଥର ପାଥେୟ

ପଥର ପାଥେୟ ତୁମେ
ପୁଣି ପଥପ୍ରାନ୍ତ ଛାଇ
ଛାଇ ଆଲୁଅର ଲୁଚକାଳି ଖେଳେ
ଚହଲା ଚହଲା ନଈ ॥୦॥

ଦୂର ଆକାଶର ଚୂନାଚୂନା ମେଘ
ଅଭିସାରେ ଧାଏଁ ମନେ ଅନୁରାଗ
ଅଦୂରେ ଶୁଭଇ ମତେ କାହାସୁର ରହିଁଲା ବେଳକୁ ନାହିଁ ॥୧॥

ସାଗର ସିକତା ବତିଘର ଛୁଇଁ
ଆଶା ରେଖା ଆସେ ପୁଲକିତ ହୋଇ
ସେଇ ପୁଲକରେ ଝଲସି ହସଇ ମନ ବନ ଗିରି ଭୂଇଁ ॥୨॥

ସଂଜ ଦୀପଶିଖା ପବିତ୍ର ପାବନ
ଆଲୋକିତ ପଥ ମାନସ ମୋହନ
ସ୍ଥାଣୁ ପାଦେ ତୁମେ ଚଳଚଞ୍ଚଳତା, ଶ୍ରାବଣୀ ଶ୍ୟାମଳ ଭୂଇଁ ॥୩॥

ମରତ ମାଟିର ମରମ ମାଧୁରୀ
ଦରହସା ଲାଜେ ଶୁଭକାନ୍ତ ଶିରୀ
ମଧୁମଳୟର ପ୍ରଣବ ଝଙ୍କାର ଚେତନାର ନୀଳକଇଁ ॥୪॥

# ଚିତ୍ରଛାୟା

ସ୍ମୃତି ତୁମେ କେତେ ଚହଲା ଛାଇର
ଜ୍ୟାମିତିକ ରଙ୍ଗ ରେଖା
କେତେ ବେଦନାର ତୁଠ ପଥରରେ
ତୁମ ନାମ ଅଛି ଲେଖା ॥୦॥

ପଶାପାଲି ନୁହେଁ ଅଙ୍କ କଷା ପାଇଁ
ଚିତ୍ର ଲିପି ନୁହେଁ ଅଙ୍କା ହେବା ପାଇଁ
ବାରି ଅଗଣାର ତରୁଛାଇ ତୁମେ ନିଜେ ନିଜ ପ୍ରିୟ ସଖା ॥୧॥

ଦୂର ଆକାଶରେ ତୁମେ ଗଲେ ଉଡ଼ି
ତୁମ ନାମ ଲେଖା ପର ପଡ଼େ ଝଡ଼ି
ସେହି ପର ଦିଏ ସିକତାରେ ଜାଳି କେତେ ନୂଆ ଅଗ୍ନିଶିଖା ॥୨॥

ଆପଣା ପଣର ନୀଳ ଜହ୍ନ ତୁମେ
ବାସନ୍ତୀ ବେଳାର ମଧୁକ୍ଷରା ଯାମେ
ଘନ ବିଶ୍ୱାସର ପୂର୍ଣ୍ଣ ମଧୁକୋଷ ଯଉବନ ଚିତ୍ରଲେଖା ॥୩॥

ଚିତ୍ରଛାୟା ତୁମେ ଗୋଧୂଳି ଲଗନେ
ମେରୁ ଜ୍ୟୋତି ନୀଳ ନିଶୀଥ ଗଗନେ
ନବଚେତନାର ନାନ୍ଦୀମୁଖ ତୁମେ ସୁବାସ ସେନେହ ମଖା ॥୪॥

ଭଙ୍ଗା ଭାରଭାର ବଉଳର ବାସ
ତୁମେ ମନ୍ଦମନ୍ଦ ସୁଲଳିତ ହସ
ପ୍ରଣୟ କାବ୍ୟର ଅଳଙ୍କାରେ ତୁମେ ଉପମାର ଝରାଝୁମ୍ପା ॥୫॥

❀❀❀

# ମାଦକତା

ବିଜନ ବନର ଚହଲା ଛାଇରେ
ତୁମେ ଭରା ଶୀତଳତା
ଧୀର ପବନର ଝୁଣ୍ଟିଆ ଝଙ୍କାରେ
ତୁମେ ଭରା ମଧୁରତା ॥୦॥

ଆକାଶ ଯେଉଁଠି ମାଟିକୁ ଛୁଇଁଛି
ସେଇଠି ତୁମରି ଦେଖା
ନୀଳ ସାଗରର ନୀଳିମା ଭିତରେ
ତୁମ କେତେ ନାମ ଲେଖା
ମନୋରମ ସେଇ ଆଳାପ ମଞ୍ଜରୀ ତହିଁ କେତେ ସରସତା ॥୧॥

ଆଶାବୃନ୍ଦାବନ ବାସନ୍ତୀ ମୁକୁଳ
ତୁମ ନାମ ପରିଭାଷା
ନୀରବ ରାତିର ତାରାର ଗୁଞ୍ଜନେ
ରୂପ ପାଏ ତୁମ ଭାଷା
ଶ୍ୟାମଳିମା ତୁମେ ଅଶିଣକେଦାରେ ମନଭୁଲା ନିବିଡ଼ତା ॥୨॥

ମରୁବାଲୁକାର ତୁମେ ଜଳଧାର
ଭରସାର ଧ୍ରୁବତାରା
ବିଳାସୀ ମେଘର ସାଦର ସଂଭାଷ
ଶ୍ରାବଣୀ ବରଷା ଧାରା
ବନକୁସୁମର ପାଖୁଡ଼ାରେ ତୁମେ ଅନୁପମ ମାଦକତା ॥୩॥

•••

# ସାକ୍ଷୀ

ପ୍ରୀତିଭିଜା ମୋର ଅଭିନନ୍ଦନକୁ
　　　　ପାଦରେ ଦେବନି ତମେ ଠେଲି
ମୋ ଆକାଶ ସାରା ସପନ ଜୋଛନା
　　　　ହସୁଅଛି ଦେଖ ଖିଲିଖିଲି ॥୦॥

ସେଇ ଜୋଛନାରେ ଖୋଜୁଛି ନିଜକୁ
　　　　ଛାଇ ଆଲୁଅର ଧାରେଧାରେ
ଶିଶିର ପଖଳା ନରମ ଘାସରେ
　　　　ଆଖି ଲାଖିଯାଏ ଥରେଥରେ ।
ମଳୟ ସମୀର ଲଳିତ ପ୍ରବାହ ଦିଏ ଶିହରଣ ଦେହେଭରି ॥୧॥

ତମେ ମୋର ସବୁ, ମୁଁ ତୁମର ବୋଲି
　　　　ଗଉରବ କରି ସଭିଙ୍କୁ କହେ
ଆସିବା ବାଟକୁ ତୁମର ଚାହିଁଛି
　　　　ସଜ ସକାଳରୁ ସଞ୍ଜଯାଏ ।
ଗୋଧୂଳି ଗଗନେ ସନ୍ଧ୍ୟା ତାରାଟି ମୋହର ଦୁଃଖର ସାକ୍ଷୀପରି ॥୨॥

❁❁❁

# ମରମର ଭାଷା

ଆକାଶେ ଚନ୍ଦ୍ରମା ତୁମେ
ସାଗରେ ନୀଳିମା ତୁମେ
ସରସୀରେ ଢଳଢଳ
ଛଳଛଳ କଇଁ ଫୁଲ
ଅଭିମାନୀ ଗୋଧୂଳିର ଯାମେ ॥୦॥

ବସନ୍ତର ହସ ତୁମେ
ସଲିଳରେ ରସ ତୁମେ
ଆଲୋକର ଶିଖା ତୁମେ
ମରମର ଭାଷା ତୁମେ
ଦୂର ବନାନୀର ଘନ ସବୁଜିମା,
ମଳୟେ ମହକ ତୁମେ ॥୧॥

ତୁମେ ହୃଦୟରେ କ୍ଷମା
ପ୍ରୀତିର ଶୁଭସୁଷମା
ଅନ୍ତରେ ଅସୀମ ଆଶା
ନାହିଁ ତୁମର ଉପମା
ଭାବପ୍ରବଣତା ଦୀପାଳି ଶିଖାର
ଲାଜୁଆ କିରଣ ତୁମେ ॥୨॥

# ରଜନୀଗନ୍ଧା

ତୁମେ ପୂର୍ଣ୍ଣିମା ରାତି ହୋଇ
କେବେ ଯେବେ ଆସି ମୃଦୁ ମୃଦୁ ହସି
ସପନରେ ଯିବ ଛୁଇଁ ॥୦॥

ଫୁଟିଥିବ ଫୁଲ ରଜନୀଗନ୍ଧା ସେ
ବାରି ଅଗଣାରେ ମୋର
ଦେହରେ ଥିବ ମୋ କଦମ୍ବ ରୋମାଞ୍ଚ
ମନେ ପ୍ରୀତିଫୁଲ ହାର
ମୋ ମନରେ ଥିବ ଚେତନା ପଦକ
ତୁମ ନାଆଁ ଥିବ ଯହିଁ ॥୧॥

ଗାଉଥିବ ତୁମେ ମଧୁର ରାଗିଣୀ
ମମତାରେ ବାସଭରା
ମନର କଳସୀ ପଡ଼ିବ ଉଛୁଳି
ଫୁଟିବ ପାହାନ୍ତିତାରା
ପରଶେ ତୁମର ମୋ ମନେ ଆସିବ
ଆଶାର ସୂରୁଯ ଉଇଁ ॥୨॥

## ସୀମାରେଖା

ମୋ ସ୍ମୃତିର ଚଲାପଥେ
ଶିଶିରର ବିନ୍ଦୁଟିଏ
ଝଲମଲ ଦିଶୁଥାଏ
ସୁଗଭୀର ସିନ୍ଧୁଟିଏ ।।୦।।

ପ୍ରବାଳ ଲତିକା ଝୁଲେ
ସ୍ଫଟିକ ପାହାଡ଼ କୋଳେ
ସାତରଙ୍ଗା ଇନ୍ଦ୍ରଧନୁ
ପ୍ରତିବିମ୍ବ ତହିଁ ତୋଳେ
ଅଙ୍କାବଙ୍କା ପାହାଡ଼ର ବେଣୀ ବନ୍ଧା ବନ୍ଧୁ ସିଏ ।।୧।।

ଶିଉଳିର ଶେଯପାତି
ଶୋଇଛି ପାଣିର ରାତି
ସପନର କାନନରେ
ବାଜେ ଗୀତ ସୁତାନରେ
କାହା ହାତତୂଳି ଅଙ୍କା ମନଲାଖି ଚିତ୍ରଟିଏ ।।୨।।

ଆଶା ପୁଣି ନିରାଶାର
ସୀମାରେଖା ସୁକୁମାର
କରିଛି ମୁଁ ତହିଁ ଘର
ଦୁଇପାଖେ ଦୁହେଁ ମୋର
ବେଳେ ହସ ବେଳେ ଲୁହ, ମୋ ଜୀବନ ସାଥି ହୁଏ ।।୩।।

## ୩୯୭ // ତୁମେ ଓ ମୁଁ

ଦୂରଦିଗନ୍ତ ସେପାରେ
ମଧୁବନ ଧାରେ ଧାରେ
କାଚ ନୁହେଁ ହୀରା ମୋତି
ମାଣିକ ଝରଣା ଝରେ
ଚିତ୍ତଚୋରା ଚଇତର ସେଇ ଜଳେ ପୂଜା ହୁଏ ॥୪॥

ଭାବରେ ଭାବନା ମିଶି
ଥାଏ ମୋର ଦିବାନିଶି
ନିଜକୁ ଲାଗେ ଅଚିହ୍ନା
ଦେଶେ ଲାଗେ ପରବାସୀ
ଦେହରୁ ବିଦେହ ଯାଏ ଅତୁଆସୂତା କି ସିଏ ? ॥୫॥

❁❁❁

# ଶୁଭସ୍ମୃତି

ଅଳସୀ ନଦୀର ବେଣୀରେ ଗୁନ୍ଥାମୋ
ସପନର ଶୁଭସ୍ମୃତି
ଭାବପ୍ରବଣତା ପବନରେ ଶୁଭେ
କିଛି କଥା କିଛି ଗୀତି ॥୦॥

ହାତଠାରି ଡାକେ ଦୂରର ପଥର
ଟିକିଏ ରହିବା ପାଇଁ
ବହୁଦୂର ବାଟ ଯିବାକୁ ଅଛି ମୋ
ବସିବାକୁ ବେଳ ନାହିଁ
ଦିଗନ୍ତର ଡାକ କରେ ଆନମନା କିବା ଦିନ, କିବା ରାତି ॥୧॥

କୂଳ କାନନରୁ କାହାର ଏ ଧ୍ୱନି
ପ୍ରତିଧ୍ୱନି ହୋଇ ଶୁଭେ
ଜଣା ନହେଲେ କି ଅଜଣା ନୁହେଁ ସେ
କେଉଁଠି ଶୁଣିଛି ଭାବେ
ନଦୀ ଧାରେ ଧାରେ ଦିଶେ ଅଳ୍ପଦୂରେ ସୋରିଷ ଫୁଲର ଜ୍ୟୋତି ॥୨॥
ଇନ୍ଦ୍ରଧନୁ ରଙ୍ଗ ଦିଶେ ଝଲମଲ
ଲହରୀ ଦୋଳିରେ ଝୁଲି
ଶୀତଳପବନ ମନକରେ ଚୋରି
ଆନନ୍ଦ ଆହ୍ଲାଦ ଢାଳି ।
ଦୂରେ ଡାକୁଅଛି ସୁନୀଳସାଗର ଇନ୍ଦ୍ରନୀଳ ଜିଣାକାନ୍ତି ॥୩॥

ଉଡ଼ିଯାଏ ପକ୍ଷୀ ଝାଡ଼ିଦେଇ ଡେଣା
ପର ଖସେ ନଦୀ ଜଳେ
ଦୁଇଟି କବିତା ଲେଖି ହୋଇଯାଏ
ପରକଲମର ଗାରେ
ଗୋଟିକର ଶେଷ ଅନ୍ୟର ଆରମ୍ଭ, ଏକ ଦିନ ଏକ ରାତି ॥୪॥

●●●

# ରଙ୍ଗମାଟି

ବୟସ ବରଷା ଧୋଇ ନେଇଯାଏ
ସପନର କେତେ ଝୋଟି
ଧୋଇହୁଏନାହିଁ ଚଉଁରା ମୂଳର
ଲିପା ପୋଛା ରଙ୍ଗ ମାଟି ॥୦॥
କିଛି ଶୋଷ ଆଉ କିଛି ଅବସୋସ
ମଝିରେ ଦୂରତା କେତେ
ସବୁ ଭାଜକରେ ଭାଗଫଳ ପରେ
ଭାଗଶେଷ ରହେ ଯେତେ ।
ଭାବନା ବାଙ୍କରେ ଭାବର ଲହରୀ ପଡୁଥାଏ ଖାଲି ଝୁଣ୍ଟି ॥୧॥

ସବୁ ଘାସ ନୁହେଁ ଦୂବ ଘାସ ଆହା
ନଦୀ ନୁହେଁ ମନ୍ଦାକିନୀ
ସବୁ ଶିଳା ନୁହେଁ ଶାଳଗ୍ରାମ ଆହା
ସବୁ ଫୁଲ କମଳିନୀ
ବାଉଳା ବସନ୍ତ ବଢ଼ି ବଢ଼ି ଗଲେ ହୁଏ ବଇଶାଖୀ ତାତି ॥୨॥

କାଗଜର ଡ଼ଙ୍ଗା ଭାସିଭାସି ଚଲେ
ଆଶାନୀଳ ଢ଼େଉ ଭାଙ୍ଗି
ଅଟକାଇ ଦିଏ ବାଟରେ ପଥର
ସପନ ଯାଏ ତା ଭାଙ୍ଗି
ବେଳେବେଳେ ଦିଶେ ଧୂଆଁଧାର ପାରେ ଆଲୋକର ପରିପାଟି ॥୩॥

●●●

# ଲାଜୁଆ ସକାଳ

 କ୍ଷୀର ଅଳତାର ଲାଜୁଆ ସକାଳ
ଖୋଷାରେ ମଉଳାଫୁଲ
ଝରାପତରର ପାଉଁଜିରେ ବାଜେ
ଲାଜଭିଜା ସ୍ମୃତି ସୁର ॥୦॥

ଚହଲା ଲହରୀ ବେଳା ଛୁଇଁ ଭାସେ
ବୁଝିବାର ନିଶା ଖୋଜିବାରେ ମିଶେ ।
ମହୁଆ ବାସରେ ମନ ମହକାଇ ହସେ ଦୂରେ ଧୂଆଁ ଧାର ॥୧॥

ସାଉଁଟା ପଣତ ପୁଣିଯାଏ ଲୋଟି
ଆନମନା ହୋଇ ଉଲୁଉଲୁ ଝୁଣ୍ଟି
କାହା ମିଠା ହସ ଅଦୂରରୁ ଝରେ ଅନୁପମ ସୁକୁମାର ॥୨॥

ଭାବନା ବିଳାସ, ଭଙ୍ଗା ଅଳସରେ
ଭରି ଦିଏ କିଏ ମନ କଳସରେ
ଭାରି ଭଲଲାଗେ ଶୁଣିବା ପାଇଁ କି ତା' ପାଦ ଶବଦ ଧୀର ॥୩॥

ତା' କଥାରୁ ଝରେ ଛଣାସୁଧା ଧାରା
କେରାକେରା ମାଳ କୁସୁମରଝରା
ପରାଗ ରେଣୁରେ ମୋହନ ବେଣୁରେ ବାଜି ଉଠେ ସାତସୁର ॥୪॥

ସେଇ ସାତସୁର ଭରିଦିଏ ଆଶା
ନିଜକୁ ବୁଝିବା ପାଇଁ ଦିଏ ଭାଷା
ଆଗକୁ ଯିବାକୁ ଇଙ୍ଗିତ ଦିଏ ସେ ହୋଇ ଅତି ଆପଣାର ॥୫॥

●●●

# ଅରୁଣିମା

କାନନିକାପାଟ ପଣତ କାନିରୁ
ଝରେ ପୁରୁଣା ପତର
ଭରିଯାଏ ମନେ କେତେ ଭାବାନ୍ତର
ଅଧୀର ଅଧର ତଳ ॥୦॥

କିଏ ଆସି କାନେ ଗାଏ ନୂଆ ଗୀତ
ଗୁଣୁଗୁଣୁ ମିଠା ସୁରେ
ଦୂର ଆକାଶର ଅସୀମତା ନାଚେ
ନଦୀ ନୀଳ ଆଇନାରେ
ନବ କିଶଳୟ ଲଳିତବଳୟ ଦରହସା ମନ ଚୋର ॥୧॥

କାହା ଧୀରଧୀର ପାଦର ଶବଦ
କିଣି ନିଏ ମନଭୂମି
ସିଏ କି ଆସୁଛି ଅଳକା ଭୁବନୁ
ମରତ ମାଟିକୁ ଝୁମି ।
ଦେବ ତରଙ୍ଗିଣୀ ତଟରୁ ସେ କିବା ଆଣିଛି ବାସ-ସମୀର ॥୨॥

କାହାର ପ୍ରତୀକ୍ଷା ଲାଗେ ଏତେ ଭଲ
କାହା ପାଇଁ ବନବୀଥି
ଲୋଟୁଥାଏ ହସି ଅଳସ ବିଳାସେ
ଅବିରତ ଦିବାରାତି ।
ବୁଝି ବସିଲେ ଅବୁଝା ଅଡୁଆ ସୂତାଖିଅ ଭାବନାର ॥୩॥

***

# ସପନପୁରୀ

ତୁମେ ସାଜରେ ସରଗପରୀ
ତୁମେ ଲାଜରେ ରାଜକୁମାରୀ
ତୁମେ ଚଲିରେ ଅଳସୀ ଭାରି
ତୁମେ ନିଦରେ ସପନପୁରୀ ॥୦॥

କେତେବେଳେ ତୁମ ମନବନାନୀରେ
ଲାଗିଯାଏ ଯେବେ ନିଆଁ
ଜଳି ସେ ଜଳାଏ ଗଗନପବନ
ଶିଖା ତା ଆକାଶ ଛୁଆଁ
ଆଉ କେତେବେଳେ କଳାର ମାନସୀ ମମତାର ଫୁଲଝରି ॥୧॥

କେବେ ଝରିପଡ଼େ କରୁଣାରଧାରା
ଲଳିତ ମୋହନ ଶୁଭ
ଭାବପ୍ରବଣତା ଚନ୍ଦନ ସୁବାସେ
ପୁଲକିତ ଦଶଦିଗ
ତୁମେ ଏକା ପରା ତୁମରି ତୁଳନା, କେହିଁ ନାହିଁ ତୁମ ପରି ॥୨॥

ପୂର୍ଣ୍ଣିମାର ଜହ୍ନ ପରି ଶୋଭାବନ
ସରୁସରୁ ତାରକସୀ
ଆଲୋକ ବାହୁରେ ତମସା କି ବନ୍ଦୀ
ଚାହୁଁଛି ଯିବାକୁ ଖସି
ଯାଇ ପାରୁନାହିଁ ରହି ପାରୁନାହିଁ ବସିଅଛି ମନ ମାରି ॥୩॥

•••

# ବାଉଳା ଗୀତି

ମଉଳାପବନ ବାଉଳା ଗୀତି
ସୁରେ ସୁରେ ଝରେ କାହାର ପ୍ରୀତି
ଭାବିଲେ ଲାଗୁଛି ପ୍ରଣୟୀ ମନରେ
କଢ଼ ଧରିଛି କି ଅନେକ ସ୍ମୃତି ॥୦॥

ଚିତ୍ର ପରି ହୋଇ ମନରେ ଆଙ୍କି
ଯାଏ ଲିଭି ଲିଭି ନିଜକୁ ବାଙ୍କି
ଉଜାଣି ଲହରୀ ପରିଆସେ ଫେରି
ଅଧା ଲେଖା ଚିଠି ନାହିଁ ତ ଇତି ॥୧॥

ସବୁଜ ପତର ପଡ଼ିଛି ଫିକା
ନ ଥାଇ ଗୋଧୂଳି ବାରୁଣୀ ଟିକା
ଯେତେ ହିମ ଖଣ୍ଡ ଭାଙ୍ଗିପଡ଼େ ମୁଣ୍ଡେ
ସେତିକି ସେତିକି ଅନ୍ତରେ ତାତି ॥୨॥

ଚନ୍ଦନବନେ କି ଲାଗିଛି ନିଆଁ
ଯେତିକି ଜଳୁଛି ସେତିକି ଧୂଆଁ
ନଷ୍ଟନୀଡ଼ ପକ୍ଷୀ ତଥାପି ଭାବୁଛି
ଖୋଜି ପାଇବ ସେ ଜୀବନ ସାଥି ॥୩॥

ଆଜି ନ ହେଲେ ବି ପାଇବ କାଲି
ଭାବି ଭାବି ଦିନ ଯାଉଛି ଚଳି
ହରାଇ ପାଇବା, ପାଇ ହରାଇବା
ଏକ ଦିନ ହେଲେ ଏକଇ ରାତି ॥୪॥

ତଥାପି ଅବୁଝା ମନରେ ଶଙ୍କା
ହେବ କି ନ ହେବ ରାତି ପାହାନ୍ତା
ଏହା ଭାବି ଭାବି ନିଦ ଯାଏ ହଜି
ନିଜ ଛାଇ ଆଣେ ନିଜକୁ ଭୀତି ॥୫॥

●●●

# କାଚ ଫରୁଆ

ହଜିଯାଇଥିବା କାଚଫରୁଆଟି
ଖୋଜିଲା ବେଳକୁ ହୀରା
ପାଶୋରା ଦିନର ଅପାଶୋରା ସ୍ମୃତି
କେତେ ହସ ଲୁହ ଭରା ॥୦॥

ସବୁଜ ବନରେ ଅଧାଅଧା ବଂଧା
ପବନର ମାଦକତା
ବନ ହରିଣୀର ନରମ ଆଖିରେ
ଢଳଢଳ ନୀରବତା ।
ତୁଠ ପଥରକୁ ଛୁଇଁ ଯାଉଥିବା ଝରାପତ୍ର ପରମ୍ପରା ॥୧॥

ସପନ ଋତୁରେ ଜୀବନ ଲତାରେ
କିଶଳୟ କେରିକେରି
କିଶଳୟ ନୁହେଁ ମାଣିକର ଦୀପ
ଜଳୁଥାଏ ଝିଲିମିଲି ।
ଲଳିତ କାମୋଦୀ ରାଗେ ବାଜୁଥାଏ ମନଲାଖି ଗୀତିଧାରା ॥୨॥

ସେ ଗୀତରେ ଥାଏ ଭରା ଅନୁରାଗ
ପଖଳା ପରଣ ମଣି
ଶିଶିର ଶୀତଳ ନରମ ଘାସରେ
ମୁକୁତା ଦିଅଇ ବୁଣି ।
ଲାଗଇ ଯେମିତି ଏ କି ଦେବବାଳା ପାଦର ପାଉଁଜି ଝରା ॥୩॥

ଭାଙ୍ଗି ପଡୁଥିବା ନୀଳ ତରଙ୍ଗକୁ
ଯୋଡ଼ି ଦେଲେ ଜଳଧାରା
ଅନ୍ଧାର ଆଲୁଅ ଏକାଠି ଯେଉଁଠି
ସେଇ ଏଇ ବସୁନ୍ଧରା ।
ସହିବା ହସିବା ଏକାକଥା ଯହିଁ ସେଇଠି ପାହାନ୍ତି ତାରା ॥୪॥

●●●

# ରୋମନ୍ଥନ

ତୁମେ ଭରା କୁସୁମର ରାତି
କେମିତି ବୁଝିବ ଶ୍ରାବଣୀ ନିଶୀଥେ
ବିରହୀ ବେଦନା ତାତି ॥୦॥

ନିଜ ସାଥେ ଖେଳି ଲୁଚକାଳି ଖେଳ
ରହୁଁ ରହୁଁ ସିନା ଯାଏ ଚାଲି ବେଳ ।
ବନଗହନରେ ବହଳ ଅନ୍ଧାରେ ହଜିଯାଏ ଝରା ମୋତି ॥୧॥

ଘାଟର ନଉକା ଭଉଁରୀରେ ପଡ଼ି
ଦେଖୁ ଦେଖୁ ଅବା ଯିବ ସତେ ବୁଡ଼ି
ପବନ ଝଙ୍କାରେ କାହା ସୁରେ ଶୁଭେ ରାଗ ଆଶାବରୀ ଗୀତି ॥୨॥

ଦୂର ବନଭୂମି ସରୁ କିଶଳୟ
ହରାଇଛି ରଙ୍ଗ ଶୋଭନ ବଳୟ
ପାଥେୟ ବିହୀନ ଦିଗହରା ପାନ୍ଥ ମନରେ ଅନେକ ଭୀତି ॥୩॥

***

# ମାହେନ୍ଦ୍ରବେଳା

ଅନେକ ସ୍ମୃତିର କୁହୁଡ଼ିରେ ଭିଜା
ହେମନ୍ତ ନିଶୀଥ ବେଳା ।
ପୂର୍ଣ୍ଣିମା ଜହ୍ନର ଜୋଛନାକୁ ମନା
ଛୁଇଁବାକୁ ଚନ୍ଦ୍ରଶାଳା ॥୦॥

ସବୁଜ କ୍ଷେତରେ ପହଁରି ଯାଉଛି
ଶୀତଳ ପବନ ଢେଉ
ଶୁଣାଇ ତା' କାନେ ରାଗରାଇଜର
ବାଦୀସ୍ୱର ବହୁବହୁ
ରାଜଉଆସରୁ ଆସିଛି ଖବର
ବିଜେ ହେବେ ଆସି ସେ ରାଜକୁମାର
ହାତରେ ମୋହିନୀମାଳା ॥୧॥

ସେ ମାଳାରେ ଥିବ ସଜ ନୀଳକଇଁ
ଅଶୋକ, ବନମଲ୍ଲିକା
ଲାବଣ୍ୟ କମଳ, ଆମ୍ବର ବଉଳ
ମହୁଆ ବାସରେ ମଖା ।
ବାଜୁଥିବ ଶଙ୍ଖ କୋଇଲି କୁହୁରେ
ପ୍ରୀତିର ପରାଗ ଝରାଇ ମହୀରେ
ଆସିବ ମାହେନ୍ଦ୍ର ବେଳା ॥୨॥

●●●

## ସ୍ମୃତିବୀଣା

ଚହଲା ଏ ବନ ବୀଥିର ସପନ
ବଣମଲ୍ଲୀ ପାଖୁଡ଼ାରେ ଜହ୍ନ କିରଣ
କାହା ସ୍ମୃତି ବୀଣାବାଜେ
ଦୂର ଅତୀତର ସୁର ସୁମଧୁର
ସେଇ ସୁରେ ମନ ହଜେ
କାହା ସ୍ମୃତି ବୀଣା ବାଜେ ॥୦॥

ଶୀତଳ ପବନ ଛୁଏଁ ଲତାର ବିତାନ
ଫୁଲକଢ଼ି ଯାଏ ଘୁଞ୍ଚି ଭରି ଅଭିମାନ
ଲୁହେ ତା' ନୟନ ଭିଜେ
କାହା ସ୍ମୃତି ବୀଣା ବାଜେ ॥୧॥

ସେଇ ଲୁହେ ଝରି ଯାଏ ଉଦାସୀ ଝରଣା
ଯାଏ କେତେ ଦୂରେ ସିଏ ନିଜେ ତ ଜାଣେନା
ନିଜକୁ ସେ ନିଜେ ଖୋଜେ
କାହା ସ୍ମୃତି ବୀଣା ବାଜେ ॥୨॥

ଚମକି ସେ ପଡ଼େ ଚକ୍ରବାକ ଡାକେ
ବାଟ ଭୁଲି ଯାଏ ଅଜଣା ସେ ବାଙ୍କେ
ପ୍ରବାସୀ ନିଜକୁ ସାଜେ
କାହା ସ୍ମୃତି ବୀଣା ବାଜେ ॥୩॥

●●●

# କୁଆଁତାରା

ତୁମ କବରୀର ଝରା ହୀରା ଫୁଲ
ନୀଳଆକାଶର କୁଆଁତାରା ତୁଲ
ଲାଖି ରହେ ଆଖି ଧାରେ
ତୂଳୀକାର ତୂଳୀ ମୂନରେ ସେ କିବା
ସରଗ ସୁଷମା ଗାରେ ॥୦॥

ମଳୟ ପବନ ଝୁଲଣାରେ ଝୁଲି
ତମେ ହସୁଥାଅ ମଧୁରିମା ଢାଳି
ଜୋଛନା ପରାଗ ଦିଗହରା ହୋଇ
ମେଘଫାଙ୍କେ ବାଟ ଭୁଲେ ॥୧॥

ମନର ବଣିକ ବୋଇତରେ ଆସି
ଭାବେ କିଣି ନେବ ତୁମ ଶୋଭାରାଶି
ଆଗକୁ ନଯାଇ ପଛକୁ ନ ଫେରି
ନିଜ ଛାଇ ଦେଖି ଡରେ ॥୨॥

# ଦର୍ପଣ

ଅନେକ ଶିଶିର ଝରିଗଲା ସିନା
ମୁକୁତା ହୋଇଲା ନାହିଁ ।
ଝେରାବାଲି ଏବେ ଦୂରରୁ କହୁଛି
'ମୋ ପାଶେ ନ ଆସ କେହି' ॥୦॥

ନୀଳ ସାଗରରେ ନାଚେ କେତେ ଢେଉ
ପୁଣି ଯାଏ ଲୁଚି କେତେ ରହୁଁ ରହୁଁ
ବେଳା ଭୂମି କହେ ମରୀଚିକା ସିଏ
ସେ ଆଡ଼େ ରହନା ରହିଁ ॥୧॥

ଦୂର ନାବିକର ସୁର ଆପଣାର
ବହି ଆଣେ କେତେ ସ୍ମୃତି ଅତୀତର
ମନ ଦରପଣେ ଛାଇ ପଡ଼େ ସିନା,
ଦେଖିଲା ବେଳକୁ ନାହିଁ ॥୨॥

## କ୍ଷମାଶୀଳା

(ତୁମେ) ନଦୀ ମନ୍ଦାକିନୀ ଧାରା
ପତିତପାବନୀ ପୁଣ୍ୟ ତରଙ୍ଗିଣୀ
ପୀୟୂଷ ତରଙ୍ଗ ଭରା ॥୦॥

ଶୁଭ କାମନାର ଓଁକାର ଧ୍ୱନିରେ
ସୁଶୋଭନ ତୁମେ ମନ୍ତ୍ର
ଅଜଣା ଆଶଙ୍କା ବାଟେ ବୁଲିଚୁଲି
ତୁମ ପାଦ ସଦା କ୍ଳାନ୍ତ ।
ଭଲ ପାଇବାର ବିଶ୍ୱସ୍ତ ସ୍ୱାକ୍ଷର, ଦାନେ ଖାଲି ଆତ୍ମହରା ॥୧॥

ତଟ କେଦାରର ସବୁଜ ଶୋଭାକୁ
ନରମ ଆଖିରେ ଚାହିଁ
ତୁମେ ଭାବୁଥାଅ ସବୁତ ପାଇଛ
ଆଉ ପାଇବାକୁ ନାହିଁ ।
ତୁମରି ତୁଳନା ତୁମେ ଏକାସିନା ସ୍ନେହମୟୀ କ୍ଷମାଶୀଳା ॥୨॥

ଝାଡ଼ି ଦେଇ ଧୂଳି ପଣତ କାନିରେ
ପୋଛି ଦିଅ ତୁମେ ମୁହଁ
କାନ୍ଦିଲା ମୁହଁରେ ହସ ଫୁଟାଇଛ
ପୋଛି ଦେଇ ଆଖିଲୁହ
ଆଭୂମି ପ୍ରଣାମ ଚରଣ ତଳରେ, ସବୁ କାଚ ତୁମେ ହୀରା ॥୩॥

●●●

# କାଲି ଓ ଆଜି

ତୁମେ ଦେଖିଥିଲ ସେଦିନ ଯାହାକୁ
ଗଲାଣି ସିଏ ଝାଉଁଳି
ସବୁଜିମା ନାହିଁ ଲତାରେ ଆଉ ତ
ଆସୁନାହିଁ ଫୁଲ କଢ଼ି ।।୦।।

ଜୋଛନାରେ ନାହିଁ ଲାବଣ୍ୟ ଲହରୀ
ଶୁଖିଲା ଶୁଖିଲା ଖାଲି
ସେଦିନୁ କୋଇଲି ଆସୁନାହିଁ ଆଉ
ଯାଇଅଛି ବାଟ ଭୁଲି
କୁହୁଡ଼ି ଜାଲରେ ପ୍ରତିଟି ସକାଳ ଯାଉଅଛି ବନ୍ଧାପଡ଼ି ।।୧।।

ବାଜୁଅଛି ବୀଣା ରାଗ ତ ଅଜଣା
ବେସୁରା ଲାଗୁଛି ଖାଲି
ଶ୍ରାବଣୀ ଆକାଶେ ମଉସୁମୀ ନାହିଁ
ମୁକୁଳା ନଈର ବାଲି
ମାଧବ ନାହାନ୍ତି ମାଘମାସ ଅଛି, ଶିଶିର ଲୁହରେ ବୁଡ଼ି ।।୨।।

ମଳୟ ପବନ ଲୁଚକାଳି ଖେଳେ
ଦକ୍ଷିଣ ଦିଗର ସାଥେ
ଅଦିନ ମେଘରେ ଭାଙ୍ଗି ପଡୁଅଛି
ଆକାଶରୁ ତାରା କେତେ
ଝଡ଼ ବତାସରେ ପକ୍ଷୀର ଶାବକ ପାରୁନି ଆଗକୁ ଉଡ଼ି ।।୩।।

●●●

# ଅବତରଣ

ଅନେକ ଦୂରରୁ ଚାଲି ମୁଁ ଆସିଛି
ଅଳସୀ ସପନେ ଝୁଲି
ସେଇ ଦୂର ଦେଶ ବେଳେବେଳେ ଡାକେ
ହସିହସି ହାତ ଠାରି ।।୦।।

ତୁମ ମମତାର ମଧୁ ବନ୍ଧନରେ
ପଡ଼ି ମୁଁ ଯାଇଛି ବନ୍ଧା
ଶତ ଶିହରଣ କଦମ୍ବ ରୋମାଞ୍ଚ
ସାଜିଛି ଅଳକ ନନ୍ଦା ।
ତୁମେ ମୋର ଅବା ମୁଁ ତୁମର ବୋଲି, ପାରୁ ନାହିଁ ମୁହିଁ କଳି ।।୧।।

ମାଟିର ଦୂରତା ଆକାଶରୁ କେତେ
ବେଳେବେଳେ ମାପେ ବସି
ଆକାଶର ତାରା, ମରତର ଫୁଲ
ସେତେବେଳେ ହସାହସି
ମାପକାଠି ଯାଏ ଲାଜରେ ଭାଜି ମୋ ମାପି ପାରେ ନାହିଁ ବୋଲି ।।୨।।

ପଚାରିବି କାରେ କେ ଦେବ ଉତ୍ତର
କିଏ ବଡ଼ କିଏ ସାନ
ମାଟି ବଡ଼ କିବା ଏ ଆକାଶ ବଡ଼
ଭାବି ଭାବି ଆନମନ
ଆକାଶ ଆସିଛି ମାଟି ପରେ ନଇଁ ଅଶେଷ ପ୍ରଣତି ଢାଳି ।।୩।।

ସୁଧା ସଂଜୀବନୀ ଝରଣା ଝରୁଛି
ଦୂର ଦେଶୁଁ ଅହରହ
ଭିଜୁନି ମରତ ସେଇ ଅମୃତରେ
ଅହଂ ତାର ଗଳଗ୍ରହ
ଆଉ କିଛି ନୁହେଁ ମଣିଷର ଅହଂ ସବୁ ପକାଉଛି ଗିଳି ॥୪॥

ବୁଝିବ କି ଦିନେ ଏ ମଣିଷ ସତେ
ସିଏ ଦେବଶିଶୁ ବୋଲି
ଦେବ ମାନବରେ ହେବ ପରିଣତ
ଅହମିକା ଯିବ ଭୁଲି ।
ସେ ଦିନ ମରତ ହୋଇବ ସରଗ, ସରଗରୁ ଯିବ ବଳି ॥୫॥

# ଆଶାଦୀପ

ଏଇ ମାଟି ଯେବେ ପ୍ରବାସ ହୁଅନ୍ତା
ଲାଗନ୍ତା କି ଏଥି ମନ
ଏ ନୁହେଁ ପ୍ରବାସ, ଆଉ କିଛି କଥା
ଅଛି ଏଥି ସଂଗୋପନ ।।୦।।

ଝରିଯିବା ପାଇଁ ଫୁଟଇ କି ଫୁଲ
ପ୍ରତି ପ୍ରଭାତରେ ହସି
ଭାଙ୍ଗିଯିବା ପାଇଁ ନୀଳ ସାଗରରେ
ଉଠେ କ ଲହରୀରାଶି
ଝଡ଼ିଲେ ବି ଫୁଟେ, ଭାଙ୍ଗିଲେ ବି ଉଠେ, ଭରିବାକୁ ଶୂନ୍ୟସ୍ଥାନ ।।୧।।

ଗଭୀର ନିଶିରେ ଝଡ଼ ବତାସରେ
ଭାଙ୍ଗେ କେତେ ଗଛ ଡାଳ
ସକାଳ ସୂରୁଯ ଗଛକୁ ଦେଖାଏ
ଆଶାଦୀପ ଝଲମଲ
ଆସେ କିଶଳୟ, ଶୋଭନ ବଳୟ, ଦରହସା ଯଉବନ ।।୨।।

ଗୋଧୂଳି ଲଗନେ ସରିଥାନ୍ତା ଯେବେ
ସମୟର ଆୟୁରେଖା
ମଉଳା ମନରେ ଅଧା ରହିଥାନ୍ତା
କବିର କବିତା ଲେଖା
ଶେଷକଥା ନୁହେଁ ଅମାନିଶି ବୋଲି କହୁଛି ପୂର୍ଣ୍ଣିମା ଜହ୍ନ ।।୩।।

•••

# ବସୁନ୍ଧରା

ଦୂର ଆକାଶର ମଇନାଟିଏ ମୁଁ
ତୁମକୁ ଦେଇଛି ଧରା
ମୋ ମାନସ ପଟେ ଲୁଚକାଳି ଖେଳେ
କିଛି ଛାଇ କିଛି ଖରା ॥୦॥

ଉଡ଼ି ଉଡ଼ି ଆସି ପାରାବାର ପାରେ
କୂଳରେ ଯାଇଛି ବସି
ସବୁଜ ସୁଷମ ବନାନୀ ପରଶି
ପବନ ବଜାଏ ବଂଶୀ
ଶୁଣି ସେହି ସ୍ୱନ ମଧୁର ମୋହନ ପ୍ରେମେ ମୁହିଁ ଆତ୍ମହରା ॥୧॥

ସୁରବାଳା ଘରୁ ପଣତ ଭୁଲି ମୁଁ
ତୁମକୁ ପାଇଛି ଭଲ
ତୁମ ବଗିଚାର ମାଳୀ ମୁଁ ସାଜିଛି
ଫୁଟାଇଛି କେତେ ଫୁଲ
ସେ ଫୁଲ ବାସରେ ନରମ ହସରେ ଭରିଛି ମୋ ବସୁନ୍ଧରା ॥୨॥

ତୁମେ ହଜିଗଲେ ଜନ ଗହଳିରେ
କେତେ ମୁଁ ଖୋଜିଛି ସତେ
ମୁଁ ହଜି ଗଲେ ବିଜନ ବେଳାରେ
ପାଇବ କି ଖୋଜି ମତେ ?
ହଜିଲେ ଖୋଜିବା, ଖୋଜିଲେ ହଜିବା ନୁହେଁ ଏକା କଥା ପରା ॥୩॥

ଅନ୍ଧାରେ ଆଲୋକ, ଆଲୋକ ଅନ୍ଧାର
ଛାଇ ଆଲୁଅର ଖେଳ
ଛାଇରୁ ଆଲୋକ, ଆଲୋକରୁ ଛାଇ
କହିବ କି କେତେ ଦୂର ?
ସେଇ ଦୂରତାକୁ ମାପୁଛି ମୁଁ ବସି ଏଇ ମୋ ଜୀବନସାରା ।।୪।।

ଧାରଟିଏ ଲୁହ ଶୁଖି ଗାର୪୍ହେଲେ
ଗାର କହେ ଲୁହ କଥା
ଆଖି ଆଇନାରେ ସେହି ଗାର ଦିଶେ
ନୁହେଁ ସିଧା, ନୁହେଁ ବଙ୍କା
ଲୁହ ହେଲେ ସତ, ଗାର ହେବ ସତ, ସତ ଏ ଆଇନା ପରା ।।୫।।

●●●

# ନଦୀ

ଅନେକ ଘାଟରେ ଦେଖୁଛି ନିତି ମୁଁ
ବହୁଛି ଏକଇ ନଦୀ
ଅନେକରେ ଏକ ଏକେ କି ଅନେକ
ପାରୁନାହିଁ ମୁହିଁ ଭାବି ॥୦॥

ଗୋଟିଏ ଘାଟରେ ଖୁଦୁରୁକୁଣିର
ଫୁଲ ଭାସେ ଝୁଲିଝୁଲି
ଅପର ଘାଟରେ ଆଉ କାହା ପାଦ
ଅଳତାରେ ପାଣି ନାଲି ।
ପୁଣି କେଉଁ ତୁଠେ ନାଲି ଚୂଡ଼ି କେତେ ଖରାବେଳେ ଯାଏ ଭାଙ୍ଗି ॥୧॥

ମାଛଧରା ଜାଲ ପଡ଼ିଛି କେଉଁଠି
ଜାଲରେ ପଡ଼ିଛି ମାଛ
ମାଛ ପାଇଁ ଜାଲ, ଜାଲ ପାଇଁ ମାଛ
କିଏ ସତ କିଏ ମିଛ ?
ଭାବୁ ଭାବୁ ଏହା ପଣତ କାନିରୁ ହଜିଯାଏ ସୁନା ମୁଦି ॥୨॥

ଛାୟା ଦରପଣେ ଚନ୍ଦ୍ରମା ଶୋଭନ
ଦିଶେ କେଡ଼େ ଝଲମଲ
ଲହରୀ ବେଣୀରେ ଲଳିତ ଜୋଛନା
ଭାସି ଦିଶେ ମଖମଲ
ନଦୀ ଧାରେ ଧାରେ ଆଗକୁ ଚାଲିଲେ ପାଦ ଦିଏ କିଏ ଛନ୍ଦି ? ॥୩॥

ଭାସି ଭାସି ଯାଏ ଝରା ପତରର
　　　　　　　　ଲୁହରେ ବତୁରା ଚିଠି ।
ଯାହା ଲେଖା ଥାଏ ଲିଭିଲିଭି ଯାଏ
　　　　　　　　ରହିଯାଏ ଅନୁଭୂତି
କୂଳର ବିହଙ୍ଗ ସବୁ ଦେଖେ ସିନା, ସୁନା ଶିକୁଳିରେ ବନ୍ଦୀ ॥୪॥

ସମୟ ତୁଠର ପଥରକୁ ଛୁଇଁ
　　　　　　　　ନଦୀ ଯାଉଅଛି ବହି
ସେହି ନଦୀ ଅଛି ଝହିଁଲା ବେଳକୁ
　　　　　　　　ସେଇ ନଦୀ ପୁଣି ନାହିଁ ।
ବୁଝିଲା ବେଳକୁ ଏକରେ ଅନେକ, ଅନେକରେ ଏକ ନଦୀ ॥୫॥

•••

# ଇନ୍ଦ୍ରଧନୁ

(ତୁମେ) ଇନ୍ଦ୍ରଧନୁର ରଙ୍ଗ ବିଳାସ
ବିଜୁଳି ଆଲୋକ ସଜ୍ଜା
ଆକାଶ ଖଣ୍ଡରେ ମେଘ ମୁକୁଟରେ
ଇନ୍ଦ୍ରନୀଳ ମଣି ଖଞ୍ଜା ॥୦॥

ଶ୍ୟାମଳା ଧରଣୀ ଅଳସୀ କୁଞ୍ଜରେ
ତୁମେ ବନରାଜିନୀଳା
ଦୂର ପରବତ କବରୀରୁ ଝରା
ଝରଣା ମୋହିନୀ ମାଳା
ଭରା ତରଙ୍ଗିଣୀ ଲହରୀ ବେଣୀରେ ମାଳଭୂମି ଦରଭିଜା ॥୧॥

ଆନମନା ହୋଇ ନାଚେ ପାରାବାର
ତୁମରି ପରଶ ପାଇ
ଭାବରେ ତାହାର ଭାବଭୋଳା ହୋଇ
ଦିଗନ୍ତ ଆସଇ ନଇଁ
ଶୀତଳ ପବନ ସୁରେ ସୁରେ ବାଜେ ତୁମ ପାଇଁ ନୂଆ ବାଜା ॥୨॥

ଝାଉଁବଣ ଗୀତ ଶୁଭେ ନିତିନିତି
ସିକତାର ଦେହ ଛୁଇଁ
ନିଜ ଛାଇ ଯାଏ ନିଜଠାରୁ ଲମ୍ବି
କିଛି ବୁଝି ହୁଏ ନାହିଁ
ଘେରାବାଲି ଡାକେ ହାତ ଠାରି ମତେ, ଉଡ଼ାଇ ଛଳନା ଧ୍ୱଜା ॥୩॥

ଆଶାମଞ୍ଜରୀର ଫିଟିବାର ନିଶା
ଅନୁରାଗ ବୀଣାତାନ
ତୁମରି ପ୍ରଶଂସା ଗାଏ ଦିବାନିଶି
ଆଲୋକର ଜୟଗାନ
ତୁମ ଚିତ୍ରଛାୟା, ନୁହେଁ ମରୁମାୟା ସିଏ ରାଜ୍ୟ ସିଏ ରାଜା ॥୪॥

●●●

# ପୂର୍ଣ୍ଣକାମ

ତୁମକୁ ପାଇ ମୁଁ ସବୁ ତ ପାଇଛି
ପାଇବାର କିଛି ନାହିଁ
ଏ ପାଇବା ମୋର ଜନମେ ଜନମେ
ଥାଉ ଅମଉଳା ହୋଇ ॥୦॥

ତୁମକୁ ଦେଖିଛି ବନ ଗହନରେ
ଭରା ସବୁଜିମା ବେଶେ
ତୁମକୁ ଦେଖିଛି ମାଟି ଆକାଶର
ମହୁଆ ମିଳନ ଦେଶେ
ଭଅଁର ଗୀତର ଗୁଣୁଗୁଣୁ ସୁରେ ତୁମକୁ ଶୁଣିଛି ମୁହିଁ ॥୧॥

ମଳୟପବନ ଝଙ୍କାରେ ଶୁଣିଛି
ତୁମରି ବଇଁଶୀ ସ୍ୱନ
ପକ୍ଷୀ କାକଳିରେ ଶୁଣିଛି ମୁଁ ପ୍ରଭୁ
ତୁମରି ନୂପୁର ତାନ
ନାଲିମନ୍ଦାରର ରଙ୍ଗ ବିଳାସରେ ତୁମ ହସ ଥାଏ ରହି ॥୨॥

●●●

# ଅଭିଷେକ

ରୁପାର ଦୁଦୁରା ସୁନାର କେତକୀ
ମହମହ ବାସେ ଯହିଁ
ସେଇଠାକୁ ମୁଁ ଯେ ଯିବାକୁ ଚାହୁଛି
ଚାଲ ଯିବା ପ୍ରିୟ ସହି ॥୦॥

ତୁମେ ଚାଲିଥିବ ପାଖରେ ପାଖରେ
କାୟା ସଙ୍ଗେ ଛାୟା ପରି
କୃଷ୍ଣଚୂଡ଼ାର ଅଧରୁ ତୁମର
ହସ ପଡୁଥିବ ଝରି
ସୁନାମୁଖୀ ସୂର୍ଯ୍ୟମୁଖୀ ଝାଉଁଳିବ ତୁମ ରୂପ ଶୋଭା ଚାହିଁ ॥୧॥

ଭଙ୍ଗା ତରଙ୍ଗର ଚାଲିରୁ ତୁମର
ଫୁଟୁଥିବ ପ୍ରୀତି ରେଖା
ପାଦର ନୂପୂର ଶବଦରେ ତାର
ବାଣ୍ଟୁଥିବ ଗୀତ ଲେଖା,
ଚାହାଣି ତୁମର କାହାଣୀ ସୁନ୍ଦର ଯାଉଥିବ କହିକହି ॥୨॥

କୁଞ୍ଚିତ କେଶରୁ ବହିଯାଉଥିବ
ଯମୁନାର ଜଳଧାରା
ଗୁନ୍ଥା ହୋଇଥିବ ସେ ବେଣୀ କୁଞ୍ଜରେ
ରଜନୀଗନ୍ଧାର ଝରା
ଝରିପଡୁଥିବ ଫୁଲରୁ ପାଖୁଡ଼ା ମଧୁମାଳା ବିଞ୍ଚିଦେଇ ॥୩॥

ତୁମ ଧୀର ଧୀର ମଧୁର କଥାରେ
ଝରଣା ଲାଜେଇ ଯିବ
ଆକାଶ ଆସିବ ନଇଁ ଧୀରେ ଧୀରେ
ଦେଖି ତୁମ ଦିବ୍ୟଭାବ
ମରତ ମାଟିକୁ ଆସିବ ସରଗ ଶୁଭ ଅଭିଷେକ ପାଇଁ ॥୪॥

•••

# ମଧୁବନ

ସପନ ରାଇଜ ରାଜକୁମାରୀ ଗୋ
ତୁମରି ପାଦର ଚିହ୍ନ
ମୋ ମନ ମରୁରେ ସରଜନା କଲା
ପ୍ରୀତିର କମଳବନ ॥୦॥

ତମେ ଯାଅ ଚଲି ଧୀରଧୀର ହୋଇ
ଚଲିରୁ ତୁମର ସୁଧା ବରଷଇ
ବେଶିବେଳ କାହିଁ ରହନାହିଁ ତୁମେ, ଯିବାପାଇଁ ଛନ୍ନ ଛନ ॥୧॥

କୁମାରୀ ଲାଜରେ ଫୁଟେ ଶତଦଳ
ପଣତରେ ବନ୍ଧା ମମତାର ମୂଳ
ଏ ସାରା ଜୀବନ ତୁମ ଗୀତ ଲେଖା ପ୍ରତୀକ୍ଷାର ମଧୁବନ ॥୨॥

•••

# ବନମଇନା

ମୁଁ ଯେ ଏଇ ମରତର ନୀଳବନ ମଇନା
ଉଡୁଅଛି ଖୋଜି ଖୋଜି ସେଇ ମଧୁ ଝରଣା ।।୦।।

ଚାହୁଁଛି ମୁଁ ନିଜ ପାଶେ ନିଜେ ଯିବି ଉଡ଼ି
ନିଜକୁ ଭେଟିବା ପାଇଁ ଆଶା ମୋର ଭାରି
ନିଜଠୁ ନିଜ ଦୂରତା, ଏତେ ବେଶୀ ଲମ୍ବାରାସ୍ତା
ନଥିଲା ମୋ ଧାରଣା ।।୧।।

ଚଲାପଥ ଧାରେ ଧାରେ କେତେ ମରୁମାୟା
ଖଇଫୁଟା ତାତି ପୁଣି ବେଳେ ତରୁଛାୟା
ଭସା ମେଘମାଳା ଆସି ଆକାଶରେ ଯାଏ ଭାସି
ଚିହ୍ନାଲାଗେ ଅଚିହ୍ନା ।।୨।।

ନିଜ ଗୀତେ ସୁର ଦେବା ଅଧିକ କଠିନ
ବିତିଯାଏ ରାତିଦିନ ଶ୍ରାବଣରୁ ଫଗୁଣ
ସକାଳରୁ ସଞ୍ଜ ହୁଏ, ସଞ୍ଜରୁ ସକାଳ ହୁଏ
ସୁର ଖୋଜି ମିଳେନା ।।୩।।

ପାଣି ନୁହେଁ ମେଘ ପୁଣି ମେଘ ନୁହେଁ ପାଣି
ତଥାପି ପାଣିରୁ ମେଘ, ମେଘରୁ ତ ପାଣି
ଦେହରୁ ବିଦେହ ଧାମ, ବିଦେହରୁ ଦେହ ଗ୍ରାମ
କେତେ ଦୂର କହନା ? ।।୪।।

ସମୁଦ୍ର ଲହରୀ ନାଚେ ପ୍ରେମେ ଜରଜର
ମତେ ଲାଗେ ଜୀବନର ସେ କି ଭାଷ୍ୟକାର
ସିକତା ଦେହ ଆଉଁସି ସିଏ କହେ ହସିହସି
ନିଜେ ନିଜ ଆଇନା ।।୫।।

# ଘାଟ ମୁକୁଳା ନାଆ

ଗୋଧୂଳି ଗଗନ ଧାରେ ଧାରେ ମୁଁ ଯେ
ଧଳା ମେଘ ଗାରେ ହେବି
ନୀଡ଼ ଫେରାପକ୍ଷୀ ସ୍ମୃତିର ସଙ୍ଗୀତ
ହସି ହସି ଶୁଣୁଥିବି ।।୦।।

ସପନ କେମିତି ଯାଏ ସ୍ମୃତି ହୋଇ
ସତମିଛ ମିଶାମିଶି
ବାଛିଲା ବେଳକୁ କିଏ କମିଯାଏ
କିଏ ରହି ଯାଏ ବେଶି
ସୀମାରେଖାଟିଏ ଆଙ୍କି ହୁଏ ନାହିଁ, ଆଙ୍କି ହୁଏନା ତା' ଛବି ।।୧।।

ଝାଉଁବଣ ଫାଙ୍କେ ଆସି ବାଙ୍କେ ବାଙ୍କେ
ପବନ ସଂଗୀତ ଗାଏ
ସେଇ ସୁରେ ଥାଏ ଆପଣାପଣର
ଖୋଜିଲା କବିତାଟିଏ ।
କଳପନା ଜାଲେ ପଡ଼େ ନାହିଁ ଧରା, ଆଗାମୀ କାଲିର ଛବି ।।୨।।

ଘାଟରୁ ମୁକୁଳି ଭଉଁରୀ କାଟୁଛି
ଆଉ ଘାଟେ ଯିବ ନାଆ
ସଅଳ ସଅଳ ଲାଗିବ ଘାଟରେ
ପାଇ ଅନୁକୂଳ ବାଆ
ଆଉ ଘାଟେ ଥିବ କେବଳ ସପନ, ସ୍ମୃତି ଯାଇଥିବ ଲିଭି ।।୩।।

# କଣ୍ଟାର ଆକାଶ

ଲବଙ୍ଗଲତାର ଛାଇରେ ବସି ମୁଁ
ଅବଶରେ ମାରେ ହାଇ
ମହୁଆ ପବନ ଛୁଏଁ ନାହିଁ ମତେ
ବାଟଭାଙ୍ଗି ଯାଏ ବହି ॥୦॥

ଆକାଶ ମୋ ପାଇଁ ତାରାର କଣ୍ଟାରେ
କଣ୍ଟକିତ ସାରାରାତି
ଝରା ଶିଶିରର ଲୁହେ ଭିଜେ ମାଟି
କୁହୁଡ଼ିରେ ଭରା ତାତି
ଅନେକ ପ୍ରଶ୍ନର ଏକଇ ଉତ୍ତର 'ଏଇ ଅଛି, ଏଇ ନାହିଁ' ॥୧॥

ପାଦ ଚିରି ହେଲେ କାଚର ଧାରରେ
ମଥାରୁ ଝରଇ ଲହୁ
ମଞ୍ଜିଥରା ପୁଣି ଶୀତଳ ପବନ
ସାଧେ ଆସି କାହୁଁ ଦାଉ ।
ସକାଳର ତୋଳା ଖରାରେ ମଉଳା ମୁଁ ଯେ ଏକ ନୀଳ କଇଁ ॥୨॥

ଭାବନାର ଜାଲେ ଛନ୍ଦା ମୋର ମନ
ଥକିଯାଏ ଦୁଇପାଦ
ଅଭିଳାଷ ସବୁ ହଜିହଜିଯାଏ
ରହିଯାଏ ଅବସାଦ
ମରୁବାଲୁକାର ଦୂର ମରୀଚିକା ନୁହେଁ 'ହଁ' ନୁହେଁ 'ନାହିଁ' ॥୩॥

ସପନରେ ନୁହେଁ ସତରେ ଦେଖେ ମୁଁ
କଣ୍ଟାସିଜୁ ଖୁଆ ଓଟ
ହସରେ ଲୁହକୁ ଘୋପିଦେବା ଛଡ଼ା
ଆଉ ନାହିଁ କିଛି ବାଟ
ସେଇ ହସ ମୋର ଚିର ସହଚର ତା'ର ସମ ବନ୍ଧୁ ନାହିଁ ॥୪॥

●●●

# ଅଭିମାନ

ଶୀତ ପରେପରେ ବସନ୍ତ ଆସିବ
ଏ କଥା ବୁଝେନି ମନ
ବୁଝୁଥାନ୍ତା ଯେବେ ଏଇକଥା ଟିକ
କରନ୍ତା କି ଅଭିମାନ ? ॥୦॥

ଝଡ଼ିପଡ଼େ ପରା ପାଦପ ପତର
ନବ କିଶଳୟ ପାଇଁ
ମନ କିନ୍ତୁ କହେ ଝଡ଼ିଲେ ପତର
ଆଉ ତ ଆସିବ ନାହିଁ
ପ୍ରତିଟି ଗୋଧୂଳି କହିଦେଇ ଯାଏ ପ୍ରଭାତର ଆଗମନ ॥୧॥

ନଈ ବହୁଥାଏ ଆଗକୁ ଆଗକୁ
ନୂଆନୂଆ ପାଣି ନେଇ
ପୁରୁଣାର ପାଖେ ନୂଆ ରହିଥାଏ
ସତେ କି ଦେହର ଛାଇ
ତୁଠ ପଥରର କାନେ କହିଯାଏ ଆସୁଛିରେ ନୂଆ ଦିନ ॥୨॥

ଏକ ପକ୍ଷୀ ଗାଏ, ଆନ ଶୁଣୁଥାଏ
ରାଗ ଆଶାବରୀ ସ୍ୱର
ଜଣେ ଖାଉଥିଲେ ଆନ ପେଟ ପୂରେ
ଗୋଟିଏ ଗଛରେ ଘର
ସେ ସ୍ୱରରେ ଥାଏ ଦୂର ଦିଗନ୍ତର ସୁଧାଝରା ଆବାହନ ॥୩॥

●●●

# କାଶତଣ୍ଡୀ

ମୁଁ ତ କାଶତଣ୍ଡୀ ଫୁଲଟିଏ
ଶରତ ଆକାଶ ସାମିଅନା ତଳେ
ଝୁଲିଝୁଲି ଗୀତଗାଏ ॥୦॥

ସୁବାସ ପବନ କାହିଁ ଦୂରୁ ଆସି
ମତେ ଦିଏ ଛୁଇଁ ମିଠା ମିଠା ହସି
ଲାଜରେ ଭିଜି ମୁଁ ପବନକୁ କହେ 'ସତେ ତୁମେ ବଡ଼ ଇଏ' ॥୧॥

ଏ ମରତ ମାଟି ପୂଜା ମୋର ଧ୍ୟାନ
ତାର ପ୍ରେମ ଗାନେ ମୋ ମନ ମଗନ
ନୀଳପରୀ ଦେଶ ବିଳାସୀ ନୁହେଁ ମୁଁ, ମରତକୁ ଭଲପାଏ ॥୨॥

ମାଟିର ଚରଣେ ଆଭୂମ ପ୍ରଣାମ
ଢାଳିବାରେ ହୁଏ ମୋ ଜୀବନ ଧନ୍ୟ
ଏଇ ମାଟି ମୋର ସରଗରୁ ବଡ଼ ତାର ଯଶ ମୁହିଁ ଗାଏ ॥୩॥

●●●

# ଅନୁଚିନ୍ତା

ତୁମେ ତୁମକୁ ପାଇଲେ ଭଲ
ତୁମ ପ୍ରେମାଲୋକେ ଏ ସାରା ସଂସାର
ହେବ ଦିନେ ଝଲମଲ ॥୦॥

ତୁମେ କେହି ନୁହେଁ ତୁମେ ପରାସିଏ
ଯିଏ ଫୁଟେ ହସେ, ଝରିଯାଏ ଲୁହେ
ଏ ପାଣିପବନ ଆଲୋକ ଭୁବନ ସବୁ ତୁମ ରୂପାନ୍ତର ॥୧॥

'ଏ ପାଖ ଛାଡ଼ିଲେ ସେ ପାଖ ଦେଖିବ'
ଏ କଥାରେ ନାହିଁ ଆଉ ଆସ୍ଥାଭାବ
ଏକା ସଙ୍ଗେ ସବୁ ମିଳାଇ ଦେଖିଲେ ଭରିଯିବ ଭାବାନ୍ତର ॥୨॥

ତୁମେ ଆସିଅଛ ଉପରୁ ଓହ୍ଲାଇ
ତୁମେ ତ ଯାଉଛ ଉପରକୁ ଡ଼େଇଁ
ମଝିରେ ତୁମକୁ ତୁମେ ପାଇଗଲେ ମିଳିବ ଜୀବନ ମୂଳ ॥୩॥

ସେତେବେଳେ ହେବ ସବୁ ନୂଆ ନୂଆ
ଅନ୍ଧାର ହୋଇବ ଆଲୋକରେ ଧୂଆ
ସ୍ୱର ହୋଇଯିବ ସରସ ସଂଗୀତ ପୂର୍ଣ୍ଣତାର ନାମାନ୍ତର ॥୪॥

ହଜିଲା ଅତୀତ ବହିବ ଉଜାଣି
ନୂଆ ଚେତନାର ଭାବ ବୁଣିବୁଣି
ସକାଳର ଭାଷା ନିଜ ସାକ୍ଷୀ ସାଜି ହୋଇଯିବ ମଧୁଝରା ॥୫॥

ଭିତରେ ମିଳିଲେ ବାହାରେ ମିଳିବ
ବାହାର ଭିତର ଏକାକାର ହେବ
ଗଛର ଫାଙ୍କରେ ସକାଳ ସୂରୁଯ ସାଜିବେ ରାଜକୁମାର ॥୬॥

•••

# ତଥାପି

ସବୁବନ ନୁହେଁ ଶ୍ୟାମଳବନ
ସବୁମନ ନୁହେଁ କୋମଳ ମନ
ତଥାପି ରହିଛି ଆଶା
ସେଇ ଆଶାଯାଏ ନଈ ହୋଇ ବହି ଲଗାଇ ମହୁଆ ନିଶା ।।୧।।

ସବୁ ସଞ୍ଜ ନୁହେଁ ମାଧବ ସଞ୍ଜ
ସବୁ କୁଞ୍ଜ ନୁହେଁ ଫଗୁଣ କୁଞ୍ଜ
ତଥାପି ଅନେକ ବାଟ
ହଜିଗଲେ କିଛି ଖୋଜିଲା ବେଳକୁ ଚିରାକନା ହୁଏ ମାଠ ।।୨।।

ସବୁ ଆଖି ନୁହେଁ ମାଆର ଆଖି
ସବୁ ସାକ୍ଷୀ ନୁହେଁ ଭାଇର ସାକ୍ଷୀ
ତଥାପି ଚାଲିଛି ପାନ୍ଥ
ଅଙ୍କା ବଙ୍କା କେତେ ରାସ୍ତା ଡେଇଁ ଡେଇଁ ହୋଇ ତ ଯାଇନି କ୍ଲାନ୍ତ ।।୩।।

ସବୁ ହସ ନୁହେଁ ଗୋଲାପୀ ହସ
ସବୁ ରସ ନୁହେଁ ମଧୁର ରସ
ଜୀବନର ଚଲାପଥେ
ଦୂର ଦିଗନ୍ତର ସୁର ସୁମଧୁର ବେଳେବେଳେ ହସି ଡାକେ ।।୪।।

❖❖❖

# ଭଲଲାଗେ

ବଉଦ ଫାଙ୍କରେ ଜହ୍ନର ଜୋଛନା
ଦେଖିବାକୁ ଭାରି ଭଲ ଲାଗେ
ଭଲ ପାଇବାର ଗୀତର ଆଳାପ
ଶିଖିବାକୁ ଭାରି ଭଲଲାଗେ ।।୦।।

ସାଗର ବେଳାରେ ଚାଲିଗଲା ବେଳେ
ମନ ଭାସୁଥାଏ ଲହରୀ ଦୋଳାରେ
ସିନ୍ଧୁ ପବନର ମଧୁ ବନ୍ଧନରେ ରହିବାକୁ ଭାରି ଭଲଲାଗେ ।।୧।।

ସୁନା ସପନର ସୁଷମ ତୋରଣ
ଆଙ୍କିଦିଏ ମନେ ଆଶା ଅକଳନ
ଅଭୁଲା ହସକୁ ମନରେ ସାଇତି ରଖିବାକୁ ଭାରି ଭଲଲାଗେ ।।୨।।

ବସନ୍ତ ସକାଳ ଶୋଭା ଝଲମଲ
ବିହଙ୍ଗ କାକଳି ଲଳିତ ମଧୁର
କେତକୀ ପାଖୁଡ଼ା ପରାଗକୁ ଦେହେ ମାଖିବାକୁ ଭାରି ଭଲଲାଗେ ।।୩।।

●●●

# ଲାଜକୁଳି ଲତା

ତୁମେ ଭାରି ଅଲିଅଳି ଲାଜକୁଳି ଲତା
ପଚାରିଲେ ଖାଲିହସ, କୁହ ନାହିଁ କଥା ॥୦॥

ତମର ଚାହାଣି ବାଙ୍କ ବାଙ୍କ ଠାଣି
କିଣି ନିଏ ମନ ମୋର
ପାଦର ପାଉଁଜି ରୁମୁଝୁମୁ ବାଜେ
ଚାଲି ତୁମ ଧୀର ଧୀର
ଶରତ ରାତିର ସଜଫୁଲ ଆଗୋ, ବାସ ତମେ ମିଠା ମିଠା ॥୧॥

ଅଳପ ଓଢ଼ଣା ଭିତରେ ମୁହଁଟି
ଜକ ଜକ ଦିଶୁଥାଏ
ଚାହିଁ ଦେଲେ ମନ ହୁଏ ଆନମନା
ଭାବକୁ ଭାଷା ନଯାଏ ।
ମଧୁଝରା ତମ ନରମ ଓଠରେ ଲେଖା କେତେ ଗୀତିକଥା ॥୨॥

କନକ ବରଣୀ ମଧୁ ସୁହାସିନୀ
ବସ ମନ ସିଂହାସନେ
ମହମହ ହୋଇ ବାସୁଥାଅ ତୁମେ
ମମତାର ଉପବନେ,
ସବୁଜ ବନାନୀ ଶୀତଳ ଛାଇ ଗୋ, କାନ୍ତିମୟୀ ନୀରବତା ॥୩॥

●●●

# ଲାବଣ୍ୟ ରେଖା

କିଏ ଆସିଛିରେ ଜହ୍ନରୁ ଓହ୍ଲାଇ
ମନ କରିବାକୁ ଚୋରି
ସେଇ ମନ ନେଇ ଗଢ଼ି ଦେବ ବୋଲି
ଆଲୋକ ଅମରା ପୁରୀ ॥୦॥

ଇନ୍ଦୁକମଳରେ ମେଲିଯାଏ ସିଏ
ଲାବଣ୍ୟର ରେଖା ହୋଇ
ନୀଳ ସରସୀରେ ଭାସୁଥାଏ ସିଏ
ହୋଇ ଆପଣାର ଛାଇ ।
ଆଗକୁ ଚାହିଁଲେ ପଛରେ ଥାଏ ସେ
ପଛକୁ ଚାହିଁଲେ ଆଗରେ ଧାଏଁ ସେ
ସକାଳ ସପନ ପରି ॥୧॥

ଛଣା ସୁଧାପରି ଦିଶୁଛି ସିନା ସେ
ଛୁଇଁଲା ବେଳକୁ ନାହିଁ
'ନାହିଁ ନାହିଁ' ବୋଲି କହିବା ପାଇଁକି
ମନ କାହିଁ ବଳୁ ନାହିଁ
ତା'ର ଯଶଗାନ ଶୀତଳ ପବନ ଗାଏ ତାଳଲୟ ତୋଳି ॥୨॥

■ ଇନ୍ଦୁକମଳ = କଇଁଫୁଲ

# ନୂଆଗୀତ

ପାହାନ୍ତି ତାରାର ପାହାଚୁ ଓହ୍ଲାଇ
ସକାଳ ଆସୁଛି ଧୀରେ
ଶତ ଧାରେଧାରେ ଅମୃତ ଝରାଇ
ତା' ମୋହନ ବଂଶୀସୁରେ ॥୦॥

ଛାଇରେ ଛାଇରେ ରହିବାକୁ ରାତି
ସାରାଦିନ ପାଇଁ ମାଗେ ଅନୁମତି
ମେଲାଣି ମାଗୁଛି ପାଠ ପୁରାତନ ଯିବାପାଇଁ ଦୂରେ ଦୂରେ ॥୧॥

ପୁରୁଣା ହେଲାଣି ରାତିର କାହାଣୀ
ମରୁରେ ବହିବ ନୀଳ ଜଳବେଣୀ
ଶଚିପତିଙ୍କର ହେବ ଅଭିଷେକ ନହୁଷଙ୍କ ପରେପରେ ॥୨॥

ଚିର ସବୁଜିମା ଯିବଟି ପହଁରି
ମାନବ ମାନସେ ସ୍ୱର୍ଗ ସୁଧାଭରି
ଜୀବନ ଜଗତ ବୀଣାରେ ଆସିବ ଶିହରଣ ନୂଆସୁରେ ॥୩॥

❁❁❁

# ଅନୁରାଗ

ଶ୍ରାବଣୀ ମେଘର ଘୋର ଘଡ଼ଘଡ଼ି
ତା' ସାଥିରେ ପୁଣି ବିଜୁଳି ତାତି
ଶରତ ଆସିଛି ଆଉଁସି ଦେବାକୁ
ଫାଟି ଯାଇଥିବା ଆକାଶ ଛାତି ॥୦॥

ଘଡ଼ଘଡ଼ି ନାଦେ ମାଟି ଚମକିଛି
ହଜିଯାଇଛି ତା' ଆଖିରୁ ନିଦ ।
ବରଷା ଶୀତଳଧାରେ ଭିଜିଭିଜି
ଥରି ଯାଇଛି ତା' ପରାଣ ଛନ୍ଦ
ଶରତ ଆସିଛି ଲିଭାଇ ଦେବାକୁ ମରତ ମାଟିର ଅନେକ କ୍ଳାନ୍ତି ॥୧॥

ବଢ଼ିଲା ରାତିର ଉପହାର ଆଣି
ଆସିଛି ଶରତ ମରତେ ଝୁଲି
ରାତିର ଅବଧି ବଢ଼ି ଯାଇଅଛି
ମାଟି ଟିକେ ନିଦ ଶୋଇବ ବୋଲି ।
କାଶତଣ୍ଡୀ ଢାଳେ ଆଲଟ ଚାମର ନତମଥା ହୋଇ ଦିବସ ରାତି ॥୨॥

ମାଆ ଦଶଭୁଜା ଦେବୀ ମନୋରମା
କଇଁ ଫୁଲେଫୁଲେ ପାଦକୁ ଥାପି
ଆସିଛନ୍ତି ଏହି ମରତେ ଓହ୍ଲାଇ
ନାଶିବେ ଅସୁର ତୋଷିବେ ତପୀ ।
କରୁଣାରେ ତାଙ୍କ ଝଲସି ଉଠୁଛି ଚଉଦିଗ ବହି ଅମର କାନ୍ତି ॥୩॥

ନଦୀ ସାଜିଅଛି ନିଜେ ଦରପଣ
ମାଆ ତାଙ୍କ ମୁହଁ ଦେଖିବେ ବୋଲି
ସବୁଜ ବନାନୀ ପଣତ ସାଜିଛି
ମାଆ ତାଙ୍କ ମୁହଁ ପୋଛିବେ ବୋଲି ।
ଗଙ୍ଗଶିଉଳିର ମିଠାମିଠା ବାସ ଗାଉଅଛି ମାଆ ମହିମା ଗୀତି ॥୪॥

●●●

# ଝରୁ ଚରଣା

ଦୂର ଆକାଶରୁ ଝରେ ଶ୍ରାବଣର ଝରଣା
ନୀଳ ସାଗରରେ ମିଶି ହୁଏ ନୀଳ ବରଣା ॥୦॥

ଫୁଲଝରି ଜାଳି ଦିଏ ବିଜୁଳିର ଝଲକ
ଘଡ଼ଘଡ଼ି ତାଳେତାଳେ ମାଦଳର ପୁଲକ
ବନଫୁଲ ବାସ ମିଶି ପବନରେ ଯାଏ ଭାସି
ନିଜକୁ ସଜାଇ ଦେଇ ଶ୍ରାବଣର ଝୁଲଣା ॥୧॥

କୁଞ୍ଜକୁଞ୍ଜ ଲହରୀର ବିମୋହନ ବିଳାସ
ସିକତାର କାନେ କାନେ ଦିଏ ନୂଆ ସନ୍ଦେଶ
ଅଦୂରରେ ବତିଘର ସାକ୍ଷୀସବୁ ଘଟଣାର
ନିଜକୁ ପଚରେ ନିଜେ ନୂଆ ଏ କି ପୁରୁଣା ? ॥୨॥

ମରତକୁ ଆସିଛି କି ସରଗର କନିଆଁ ?
ମରତ ମହୁଆ ଛୁଆଁ କରିଛି କି କିମିଆଁ ?
ନୀଳପରୀ ଦେଶଟିଏ ମରତେ ରଚିବ ସିଏ
ତେଣୁ ଆସୁଛି କି ହସି ବର୍ଷା ଝରୁ ଚରଣା ॥୩॥

## ବଉଦ ଡଙ୍ଗା

ବଉଦ ଡଙ୍ଗାରେ ତୁମେ ଯେ ଆସିଲ
ମତେ ତ କହିଲ ନାହିଁ
ଜାଣିଥିଲେ ମୁଁ ତ ଯାଇଥାନ୍ତି ଚଲି
ପାଛୋଟି ଆଣିବା ପାଇଁ ॥୦॥

ମୁଁ ଜାଣିଛି ତୁମେ ଗୋପନେ ଗୋପନେ
ଆସିବାକୁ ଭଲ ପାଅ
ଅଳପ ଅଳପ ହସିଲା ମୁହଁରେ
ନ ଜାଣିଲା ପରି ଚାହଁ ।
ତୁମ ସେଇ ମୁହଁ ଦେଖିବା ପାଇଁକି ଫୁଟିବ ଏଣିକି କଇଁ ॥୧॥

ଗଛମାନେ ଏବେ ନଈ ଆଇନାରେ
ନିଜକୁ ଦେଖିବା ପାଇଁ
ପଣିକିଆ ଘୋଷା ସୁନା ପିଲାପରି
ଆଗକୁ ଆସିବେ ନଇଁ ।
କେତେ କଥା ଥିଲା କହିବା ପାଇଁକି କିଛି ମନେ ପଡୁ ନାହିଁ ॥୨॥

ବେଳେବେଳେ ଲାଗେ ନିଜକୁ ଅଚିହ୍ନା
ଠିକଣା ନଥିବା ଚିଠି
ଜାଣି ହୁଏ ନାହିଁ ସାଇତା ସୂତାରେ
ପଡ଼ିଲା କେମିତି ଗଣ୍ଠି ।
ଗଙ୍ଗଶିଉଳିର ଭୁରୁଭୁରୁ ବାସ ମନ ଦିଏ ଚହଲାଇ ॥୩॥

# ଆନମନା

ଚନ୍ଦ୍ରମା ତୁମେ ଯାଅ କାହିଁ ଚାଲି
ଏତେ ଆନମନା ହୋଇ
ଅନେକ ଆଶାରେ ମହୁଆ ନିଶାରେ
କଇଁ ଯେ ରହିଛି ଚାହିଁ ॥୦॥

ହଜାଇ ଦେଇ ସେ ତା ମନରୁ ଯେତେ
ଦୁଃଖ ଅବସାଦ, ଅବସୋସ ସାଥେ
ମଗନ ହୋଇଛି ଶୁଭଲଗନରେ ସପନ ଶେଯରେ ଶୋଇ ॥୧॥

ତୁମ ଅନୁରାଗ ମାଣିକର ମୁଦି
ପିନ୍ଧାଇ ତା' ମନ କରିଦେଲ ବନ୍ଦୀ
କେତେ ବିଶ୍ୱାସର ବିଶ୍ୱାବସୁ ହୋଇ ବୁଝି ତ ବୁଝିଲ ନାହିଁ ॥୨॥

•••

# ସୁକାନ୍ତ ବସନ୍ତ

କୃଷ୍ଣଚୂଡ଼ାର ନାଲି ପାଖୁଡ଼ାକୁ
ବସନ୍ତ ରହିଛି ଚାହିଁ
ଗୋପନେ ଗୋପନେ ଅଳସୀ ସପନେ
ନିଜକୁ ହଜାଇ ଦେଇ ।।୦।।

ସହକାର ବନେ କିଶଳୟ କୁଞ୍ଜେ
ଜଳେ ମାଣିକର ଦୀପ
ବିଳାସୀ ବସନ୍ତ ବନ୍ଦାପନା ପାଇଁ
କୁସୁମ ସୁବାସ ଧୂପ
ପ୍ରୀତିର କବିତା ପଢୁଛି କୋଇଲି ପ୍ରେମେ ଆନମନା ହୋଇ ।।୧।।

ଘାସଫୁଲ କେତେ ନିଜକୁ ସଜାଇ
ପିନ୍ଧି ମୁକୁତାର ମାଳା
ସଜପବନରେ କୁନି ପିଲାପରି
ଝୁଲନ୍ତି ଝୁଲଣ ଦୋଳା
ଶାମୁକା ରହିଛି ସିକତା ଶେଯରେ କାହା ବାଟ ଉହାଁଉହାଁ ।।୨।।

ଆଲଟ ଚାମର ପକାଇବା ପାଇଁ
ଚଲାପଥ ଲତାଛାଇ
ଏ ପାଖେ ସେ ପାଖେ ଉହାଁ ରହିଛନ୍ତି
ବିଳାସୀ ବସନ୍ତ ପାଇଁ
ସୁନାରି ହାତରେ ସୁନା ଅଳଙ୍କାର ତାରକସୀ କାମ ହୋଇ ।।୩।।

ଦେହର ଅଳସ ଭାଙ୍ଗୁଛି ମଳୟ
ଛୁରିଅନା ବନ କୁଞ୍ଜେ
ଅଶୋକ, ହାତରେ ପୁଷ୍ପାଞ୍ଜଳି ଧରି
ଭାବ କୁଆରରେ ଭିଜେ
ମଳୟ ପବନେ ଅତର ସୁବାସ ସୁକାନ୍ତ ବସନ୍ତ ପାଇଁ ।।୪।।

●●●

# ଫଗୁଣ

ଫଗୁଣ ଜହ୍ନରୁ ଝରି ଆସୁଅଛି
ସୁଧାଭରା କାହାହସ
ମଳୟ ପବନ ଝୁଲଣାରେ ଝୁଲେ
ସୁକୁମାର ମଧୁମାସ ॥୦॥

ଆମ୍ବ ଡାଳେଡାଳେ ନବ କିଶଳୟେ
ଭରା କେତେ ଶିହରଣ
ଫଗୁଣର ଫଗୁ ମାଖି ହେଲାପରି
ଦିଶୁଛି ଗହନବନ ।
କୋଇଲି ଗାଉଛି କାହା ଲେଖା ଗୀତ ପୁଲକାଇ ଦଶଦିଶ ॥୧॥

ମଲ୍ଲୀକଢ଼ି ମାନେ କବରୀ ସଜାଇ
ମାଟି କି ଭାବୁଛି ବସି
କାହା ବାଟ ଚହିଁ ସଂଜରୁ ସକାଳ
ଅଳପ ଅଳପ ହସି ।
ବାସକସଜ୍ଜା କି ସାଜିଛି ଆଜି ସେ, କିଏ ତା ମନ ମଣିଷ ? ॥୨॥

ସରୁନଦୀ ଧାର ନୀଳ ଲହରୀରେ
ନାଚୁଅଛି ଗଛଛାଇ
ସେ ଛାଇ ନାଚର ଅଳସ ବିଳାସେ
ନଦୀ ବାଟ ଭୁଲେ ନାହିଁ ।
ରହିଗଲା ପରି ଲାଗୁଥାଏ ସିନା ନଦୀର ନାହିଁ ଅଳସ ॥୩॥

●●●

## ବାସନ୍ତୀ ଗୀତି

ବସନ୍ତ ଆସିଛି ଆଜି
ସାତ ଦରିଆର ସେପାରୁ ଆସିଛି
ମନର ମଣିଷ ଖୋଜି ॥୦॥

ଦିଗେ ଦିଗେ ରାଜେ ମଳୟ ବିଳାସ
ଆଶାର ମୁକୁଳ ଶୁଭ ଅଭିଳାଷ
ବକୁଳ କାମିନୀ କୁଞ୍ଜେ ଶୁଭୁଛି ଅଳିର ଆଳାପ ରାଜି ॥୧॥

ନୀଳ ସରସୀରେ ଫୁଟିଛି କମଳ
ଦେଖିବ ବସନ୍ତ ବିଭବ ବିମଳ
କୋଇଲି କୁହୁରେ ସହକାର ବନ ନିଜକୁ ପାଉନି ଖୋଜି ॥୨॥

ଜହ୍ନରାତି ଅବା ପଡୁଛି ଚମକି
ଆନମନା ହୋଇ ନିଜଛାଇ ଦେଖି
ଗହନବନରୁ ଆସୁଅଛି ଭାସି ଝରାସ୍ମୃତି ସୁରରାଜି ॥୩॥

ନୀଳପରୀ ଦେଶ ଆସିଛି କି ନଇଁ
କରେ ନାହିଁ ନାହିଁ ଫେରି ଯିବାପାଇଁ
ନିଜ ବାଟ ନିଜେ ଯାଇଛି କି ଭୁଲି ମରତ ପ୍ରୀତିରେ ମଜ୍ଜି ॥୪॥

ତନୁ ତନିମାରେ ଭରା ମାଦକତା
ପରାଣେ ପରାଣେ ଆହ୍ଲାଦ ସାଇତା
ଅବଚେତନାରୁ କିଏ ସେ କହୁଛି, ଆସୁଛି ସୁଦିନରାଜି ॥୫॥

•••

# ନୂତନ ଉଷା

ନୂତନ ଉଷାରେ ନବ ଚେତନାର
କନକ କିରଣ ପଡ଼ିବ ଝରି
ସେଇ କିରଣରେ ବିକଶି ହସିବ
ଗଗନ ପବନ ପାହାଡ଼ ଦରୀ ॥୦॥

ଅବଚେତନାର ଘନ ଅନ୍ଧକାର
ସେ ଶୁଭଲଗନେ ହୋଇଯିବ ଦୂର
ମନ ମଧୁବନ କୁସୁମ ବିତାନ
ପିକ କୁହୁଗାନେ ଉଠିବ ପୂରି ॥୧॥

ପରାଣ କୁଞ୍ଜରେ ପୁଲକ ମଳୟ
ସରଜିବ ଝରୁ ଲଳିତ ବଳୟ
ଅବନୀମୋହନା ନୂଆ ଉଦ୍ଦୀପନା
ଜୀବନରୁ ବାଧା ନେବଟି ହରି ॥୨॥

ଆସିବ ଦେହରେ ଲାବଣ୍ୟ ଜୁଆର
ଦିଶିବ ଶରୀର ଶୋଭନ ସୁନ୍ଦର
ଜରା ମରଣର ହିମଶୀତଳତା
ଯିବଟି ଜୀବନୁ ଦୂରକୁ ଝଲି ॥୩॥

●●●

# ଆଲୋକତୀର୍ଥ

ଗଭୀର ନିଶୀଥେ ଗାଉଅଛି ବସି
ଏ ପକ୍ଷୀ କାହାର ଗୀତ
ଯେତେ ଶୁଣିଲେ ବି ନୂଆନୂଆ ଲାଗେ
ଚିତ୍ତ ପ୍ରୀତିପୁଲକିତ ॥୦॥

ଗଛ ଡାଳେଡାଳେ ପବନ ଅଟକେ
ସେ ଗୀତ ଶୁଣିବ ବୋଲି
ପତରେ ପତରେ ଗୀତ ଶୁଣିବାକୁ
ଜୋଛନା ରହିଛି ଝୁଲି
ଝରା ଶିଶିରର ଝୁଣ୍ଟିଆ ଝଙ୍କାରେ ଝରିଝରି ପଡ଼େ ଶୀତ ॥୧॥

ଉଦାସ ଦିଗନ୍ତ କାହା କଥା ଭାବି
କେତେ ସତେ ଆନମନା
ନୀରବ ଭାଷାରେ କରେ ମନେ ମନେ
କାହା ମୁଗ୍ଧ ବନ୍ଦାପନା
ତାରାର ଦୀପାଳି ଯାଉଅଛି ଜଳି ଆକାଶ ଆଲୋକ ତୀର୍ଥ ॥୨॥

# ଲାବଣ୍ୟବତୀର ଲାଜ

(ସେ ଯେ) ଚନ୍ଦ୍ରଭାନୁର ପ୍ରଥମ ଦେଖାରେ
ଲାବଣ୍ୟବତୀର ଲାଜ
(ସେ ଯେ) ଉଷାକିରଣର ପ୍ରଥମ ଛୁଆଁରେ
ଗଙ୍ଗଶିଉଳିର ସାଜ ॥୦॥

ପ୍ରଥମ ଶିଶିର ଭିଜା ଧାନ କ୍ଷେତ
ଚହଲା ମନର ଘେରାଘେରା ଗୀତ
ଆଶା ପଲଙ୍କର ଭାଷା ମନୋହର
ଜୋଛନା ଧଉଳା ଶେଯ ॥୧॥

ଚନ୍ଦନ ବନର ବାସ ଅନୁପମ
ନୀରବ ଭାଷାର ଭାବ ମନୋରମ
ପ୍ରବାସୀ ପ୍ରଣୟୀ ପ୍ରଥମ ପାହାନ୍ତା
ବାଉଳା ସପନ ସଜ ॥୨॥

ଧୀର ପବନର ଅଳସୀ ଝୁଲଣା
ନିଜ ସ୍ମୃତି ପ୍ରେମେ ନିଜେ ସିଏ କିଣା
ଚହଲା ପାଣିର ଗଛ ଛାଇ ସିଏ,
ମାଧବ ମହୁଆ ସଞ୍ଜ ॥୩॥

•••

# ନୂଆଦିନ

ହୀରା ଫୁଲ ଫୁଟା ଭରା ଜହ୍ନରାତି
ପାଦରେ ଅଳସୀ ଚଳି,
ମହୁଆ ଅତର ମାଖିଛି ପବନ
ରାତି ପଣତରେ ଝୁଲି ॥୦॥

ରସିକପଣର ବଉଳଫୁଲରେ
ବନଭୂମି ଡେଣା ବାସେ
ବନଗହନର ଫାଙ୍କରେ ଫାଙ୍କରେ
ଅତଣ୍ଡୀଲତା କି ଖସେ !
ନୂଆ ଦିନଟିଏ ଆସୁଛି ଓହ୍ଲାଇ ପୂର୍ବ ଦିଗେ ଝୁଲିଝୁଲି ॥୧॥

ରୁପା ଚଦରର ବେଢ଼ଣରେ କିବା
ଶୋଭା ତାରକସୀ କାମ
କୁହୁଡ଼ି ପିଠିରେ ମୃଦୁ ଶୀତଳତା
ଓହ୍ଲାଇବା ଉପକ୍ରମ ।
ଝାଉଁବଣ ବୀଥି ଗାଉଅଛି ଗୀତି ହସିହସି ଝୁଲିଝୁଲି ॥୨॥

●●●

# ଶିଶିର ବିନ୍ଦୁ

ମୁଁ ଯେ ଯାମିନୀ ଶିଶିର ବିନ୍ଦୁ
ମନ ତଳେ ମୋର ଲହରୀ ଭାଙ୍ଗୁଛି
ଭାବର ସୁନୀଳ ସିନ୍ଧୁ ॥୦॥

ମୋ ଜୀବନ ନୁହେଁ ମରୁ ମରୀଚିକା
ନୁହେଁ ମୁଁ ଅଲୋଡ଼ା ନୁହଁଇ ମୁଁ ଏକା
ମୋ' ଟିକି ବୁକୁରେ ଧରି ରଖିଛି ମୁଁ ଦୂର ଆକାଶର ଇନ୍ଦୁ ॥୧॥

ଆକାଶରୁ ଆସି ମାଟିରେ ରହିଛି
ମାଟି ସୁବାସରେ ବିଭୋର ହୋଇଛି
ହଜାଇ ନିଜକୁ ଖୋଜୁଛି ନିଜକୁ ହୋଇ ଆପଣାର ବନ୍ଧୁ ॥୨॥

ପବନ ଆସିବ ପକ୍ଷୀରାଜ ଚଢ଼ି
କହିବ ତା ସାଥେ ଯିବାପାଇଁ ଉଡ଼ି
ଖୁସି କରିବାକୁ ତାକୁ ମୁଁ ଚାହେଁନା, ସେ ନୁହେଁ ମୋ' ପ୍ରାଣବନ୍ଧୁ ॥୩॥

ସକାଳ ସୂରୁଯ ଆସି ହସି ଉଇଁ
କିରଣ ହାତରେ ଦେବ ମତେ ଛୁଇଁ
ସେ ପରଶ ମୋର ମନରେ ଆଣିବ ନବ ଚେତନାର ମଧୁ ॥୪॥

ଭେଟିଦେବି ତାଙ୍କୁ ନିଜେ ମୁଁ ନିଜକୁ
ମୋର ବୋଲି କିଛି ନ ଥିବ ପଛକୁ
ତାଙ୍କ ଇଚ୍ଛାରେ ମୁଁ ମଉସୁମୀ ହୋଇ ବରଷିବି ବର୍ଷା ବିନ୍ଦୁ ॥୫॥

•••

# ଫଗୁଣ ଆସିବ ବୋଲି

ଯେଦିନୁ ଶ୍ରାବଣ କହି ଦେଇଗଲା
ଫଗୁଣ ଆସିବ ବୋଲି
ସେଦିନୁ ଫଗୁଣ ବାଟ ମୁଁ ଚାହିଁଛି
ନରମ ନୟନ ମେଲି ॥୦॥

ମୋ ମାନସ ପଟେ ଆଙ୍କି ମୁଁ ଦେଇଛି
ବସନ୍ତର ଚାରୁଛବି
ନବ କିଶଳୟ ଅଧର ହସରେ
ମୁନି ମନ ଯିବ ଦବି
ଆମ୍ବ ବଉଳର ମହୁଆ ବାସରେ ଆନନ୍ଦର ଲୁଚକାଳି ॥୧॥

ଧରା ଧୂଳି ହେବ ଚନ୍ଦନର ରେଣୁ
ଫଗୁଣର ପାଦ ବାଜି
ପରାଣ ଗହନେ ସପତ ସୁରରେ
ମୁରଲୀ ଉଠିବ ବାଜି
ବନର ହରିଣୀ ସେଇ ସୁରେ ସୁରେ ଯିବ ନିଜ ବାଟ ଭୁଲି ॥୨॥

ସୁନା କିରଣରେ ପରକୁ ରଙ୍ଗାଇ
ଉଡ଼ିଉଡ଼ି ଯିବ ପକ୍ଷୀ
ପତର ଗହଳେ ବସି ସେଇ ପକ୍ଷୀ
ଝୁଲୁଥିବ ନିଦ ମାଖି
ଆନମନା ହୋଇ ବସିଥିବ ମାଟି କବରୀରେ କଢ଼ମଲ୍ଲୀ ॥୩॥

ଭାସି ଆସୁଥିବ ମଳୟ ଢେଉରେ
ବନଫୁଲ ମିଠା ବାସ
କୋଇଲି କୁହୁରେ ଦିଗଦିଗନ୍ତରେ
ମାଦକ ମୋହନ ରାସ
ନୀଳ ଆକାଶର ନୀଳିମ ବିତାନେ ଜହ୍ନ ହସୁଥିବ ଝୁଲି ॥୪॥

•••

# ରମ୍ୟରେଖା

ବୁଣିଦେଲା କିଏ ଆଜି ରେଣୁରେଣୁ ଜୋଛନା
ଜୋଛନାରେ ତାରକସୀ ମନଲୋଭା ରଚନା
ମାଟିଯାଏ ପ୍ରେମେ ଭିଜି ନିଜକୁ ପାଏନା ଖୋଜି
କାହା ସ୍ମୃତି ବୀଣାସୁରେ ଚିହ୍ନାଲାଗେ ଅଚିହ୍ନା ॥୦॥

କଇଁଫୁଲ ଖେଳେ ଦୋଳି ନୀଳ ସରସୀରେ
ଭରି ଦେଇ ଲାଜ ମଧୁ ମନ କଳସୀରେ
ନିଜ ମୁହଁ ନିଜେ ଦେଖେ, ନୀଳ ଜଳ ଆଇନା ॥୧॥

ଚହଲାବନ ଗୀତରେ ଶୁଭେ ତୁମ ସୁର
ବେଳେବେଳେ ଲାଗେ ପାଖ ବେଳେବେଳେ ଦୂର ।
ବେଳେବେଳେ ଚିଠି ମିଳେ, ନ ଥାଏ ଠିକଣା ॥୨॥

❁❁❁

# ମେଘଝୁଲଣା

ଆକାଶର ନୀଳିମାରେ ଲେଖା କେତେ କବିତା
କବିତାରୁ ଦିବାନିଶି ଝରେ ମଧୁ ମମତା ॥୦॥

ଲତିକା ଅପରାଜିତା ନିଜକୁ ହଜାଇ
ଅଳପଅଳପ ହସେ ମନକୁ ମଜାଇ
ହାତ ପାପୁଲିରେ ଭରି ଶିଶିରର ମୁକୁତା ॥୧॥

ପରଦେଶୀ ପାନ୍ଥଚଲେ ଆନମନା ହୋଇ
ଝରା ଶିଶିରର ସେଇ ମୁକୁତାକୁ ଚହିଁ
ଘାସର ନରମ ଦେହ ଛୁଇଁଦିଏ ସବିତା ॥୨॥

ନଦୀଧାରା ଧୀରଧୀର ଅଳସ ତା'ଚଲି
ପଢୁଥାଏ ସେ କବିତା ଆପଣାକୁ ଭୁଲି
ତୁଠ ପଥରକୁ ଦେଇ ସରଗର ବାରତା ॥୩॥

ସପନ ତ କଢ଼ ଧରେ ଅବଚେତନାରେ
ନରମ ହାତରେ ଲେଖା ସରୁ ତୂଳିକାରେ
ଧଳାମେଘ ଝୁଲଣାରେ ଝୁଲେ ତୋଫା ତାରକା ॥୪॥

•••

# ବାସକଳସ

ଛୁଇଁଛୁଇଁ ଏ ପବନ ଆସେ କେଉଁ ମୂଲକ
ମହୁଆ କୁସୁମକୁଞ୍ଜ, ମନେ ଭରି ପୁଲକ ॥୦॥

ଆଣିଥାଏ ବାସଭରା ଉଚ୍ଛୁଳା ସେ କଳସ
ବିଞ୍ଚିଦିଏ ତନୁମନେ ମମତାର ବିଳାସ
ଭରିଦିଏ ପରାଣରେ ସୋହାଗର ଝଲକ ॥୧॥

କାହା ମନେ ଲାଗିଯାଏ ଅଭିମାନ ପରଶ
ଆଉ କିଏ ଲାଜେ ଭିଜି ମନେମନେ ହରଷ
ବେଳେବେଳେ ଲାଗେ କିବା ନିମିଷ କି କଳପ ॥୨॥

ନିଜକୁ ହଜାଇ କିଏ ଆପଣାର ବଳୟେ
ପାଇବାର ଆଶା ରଖେ ସପନର ମଳୟେ
ବହୁଦୂରୁ ଭାସିଆସେ ଅପାଶୋରା ଆଳାପ ॥୩॥

❁❁❁

# ମଧୁଜ୍ୟୋତ୍ସ୍ନା

ଲାଜଲାଜ ଜୋଛନାରେ ଭିଜା କେତେ ସପନ
ହଜିଯାଏ ମନ ଆଜି ହୋଇ ପ୍ରୀତି ମଗନ
ଚାହିଁଚାହିଁ ସେହି ମଧୁ ଲଗନ ॥୦॥

ଚହଲା ବନଲତାରେ
ଆକାଶର ନୀଳିମା ଝରଇ
ଜହ୍ନର ମଧୁର ହସେ
ଝୁରାମନ ଆହୁରି ଝୁରଇ
ଧୂଆଁ ପରି ଦିଗ ଦିଶେ, କିଏ ମିଠାମିଠା ହସେ ।
ଦେହେ ଭରିଦିଏ ଶିହରଣ ॥୧॥

ତଟିନୀର ଧାରେଧାରେ
ଧୀରଧୀର ଶୀତଳ ପବନ
ଛୁଇଁଯାଏ କେଦାରର
ସବୁଜିମା ଜଗାଇ କମ୍ପନ
କଳ୍ପନାର କୁଞ୍ଜବନେ ଚହଲା ସୁଷମା ରଚେ
ଅନୁପମ ଲହରୀ ପ୍ଲାବନ ॥୨॥

ଫଗୁ କେତେ ଝରିଯାଏ
ବାଟେଘାଟେ ଧୂସର ବୀଥିରେ
ମରମକୁ ଛୁଇଁଯାଏ
କିଏ ସିଏ ଅବୁଝା ଗୀତିରେ,
ଜୀବନର ଦେବାଳୟ ଧୂପବାସେ ମଧୁମୟ
ଦେବତାର ନାହିଁ ଦରଶନ ॥୩॥

●●●

# ନୀରବତା

ନଦୀ ଯାଏ ଝୁଲିଝୁଲି ଲହରୀର ଦୋଳିରେ
କୁଳୁକୁଳୁ ଗୀତ ଗାଇ କିବା ଭାଳିଭାଳିରେ ।।୦।।

କାହା ଭାବପ୍ରବଣତା        ଆଉ କା'ର ନୀରବତା
କାହା ହୃଦୟର ବ୍ୟଥା        ଥାଏ ସେ ଗୀତରେ ଲେଖା
କାହା ମାନ ଅଭିମାନ ଅନୁରାଗ ଗୀତିସୁରେ ଯାଏ ଝରିଝରିରେ ।।୧।।

ଗଛରୁ ପତର ଖସେ        ଲହରୀରେ ଯାଇ ମିଶେ
କେବେ ଅକୂଳରେ ଭାସେ   ବେଳେବେଳେ କୂଳେ ଦିଶେ
ହତାଶାର ବିଷ ଭାରେ ତା'ର ମନ ଦୀର୍ଘଶ୍ୱାସେ ଯାଏ ଜଳିଜଳିରେ ।।୨।।

ଭାବନାର ଓଦାଜାଲେ        ନିଜ ପାଦ ନିଜେ ଛନ୍ଦି
ବୁକୁଭରା କୋହ ଚାପି        ନିଜ ଦେଶେ ନିଜେ ବନ୍ଦୀ
ବୁଝିହୁଏ ନାହିଁ କିଛି ବେଳ ଯାଏ ବୃଥା ଚାଲି ଖାଲି ଭାଳିଭାଳିରେ ।।୩।।

●●●

## ନଈ ବହିଯାଏ

ଗୋଧୂଳିଗଗନଧାରେ ତାରାଟିଏ ଆସି
ନଦୀ ବକ୍ଷେ ନିଜ ଛବି ଦେଖୁଥାଏ ବସି ।।୦।।

ଜାଗର ଦୀପାଳି ଜାଳେ କାହା ପାଇଁ ସିଏ
ପ୍ରୀତିର ମଧୁଝରଣା ଝରିଝରି ଯାଏ,
ଲୋହିତ ବରଣା ମେଘ
ଯାଏ ଭାସିଭାସି ।।୧।।

ଦୂରୁଦୂରୁ ଶିରିଶିରି ବହେ ଧୀର ବାଆ
ବନଲତା ଫୁଲକୁଞ୍ଜ ଗାଏ ଗୀତ ନୂଆ
ନଦୀ ଯାଏ ବହିବହି
ମୃଦୁମୃଦୁ ହସି ।।୨।।

ଦେହରେ ରୋମାଞ୍ଚ ଜାଗେ ପ୍ରାଣରେ ପୁଲକ
ଏକ ଲୟେ ଚାହେଁ, ତା'ର ନ ପଡ଼େ ପଲକ
ଜୀବନ ଲତାରେ ଫୁଟେ
ଆଶା ଫୁଲରାଶି ।।୩।।

•••

# ବିରହ ବଇଁଶୀ

ନୀଳ ଆକାଶରେ ନୀଳିମା ସେପାରେ
କିଏ ସେ ଭାବୁଛି ବସି
ସେ ଭାବନା କେତେ କରେ ଆନମନା
ମରତ ମାଟିକୁ ଆସି ।।୦।।

ସ୍ମୃତିଫୁଲ କୁଞ୍ଜବନେ ସେ ଭାବନା ଆସି
ବଜାଇ ଦେଉଛି ଧୀରେ ବିରହ ବଇଁଶୀ
ଏ ପବନ ଆଣିଦିଏ ବେସୁରା ରାଗିଣୀଟିଏ,
ବୁଣି ଦେଇ କଣ୍ଟା ରାଶିରାଶି ।।୧।।

ଗୋଧୂଳି ଲଗନେ କେତେ ଉଦାସ ମନରେ
ପକ୍ଷୀଟିଏ ବସି ଭାବେ ଗହନ ବନରେ
ଯିବାପାଇଁ ହେବ ତାକୁ ଆଉ ବହୁ ଦୂରପଥ
ଏହା ଭାବି ଦିଏ ଖାଲି ହସି ।।୨।।

ନଈ ଯାଏ ବହି ତା'ର ଆପଣା ବାଟରେ
ଚିହ୍ନ ରଖି ଯାଏ ଚାଲି ଅନେକ ଘାଟରେ
ସେ ଚିହ୍ନକୁ ଦେଖିଦେଖି ଆଖି ମୋର ଯାଏ ଲାଖି
କିଛି କହି ପାରେନା ଭରସି ।।୩।।

●●●

# ଛାଇ ଆଲୁଅ

ଦୂର ଦିଗନ୍ତର ଅଭିନନ୍ଦନକୁ
ପାଦରେ ଦେବନି ତୁମେ ଠେଲି
ସାଗର ସିକତା ଧାରେଧାରେ ଦେଖ
ଜହ୍ନ ହସୁଅଛି ଖିଲିଖିଲି ॥୦॥

ନିଜକୁ ଖୋଜୁଛି ମାଟିର ମହକ
ଛାଇ ଆଲୁଅର ଧାରେଧାରେ
ଶିଶିର ପଖଳା ନରମ ଫୁଲରେ
ଆଖି ଲାଖି ଯାଏ ଥରେଥରେ ।
ମଳୟପବନ ଛୁଇଁଯାଏ ତାକୁ
ଦେଇ ଶିହରଣ ଦେହେ ଭରି ॥୧॥

ମାଟିର ମଣିଷ ମନମୁକୁଟରେ
ମଣିମୁକୁତାର ଅନୁଭବ
ଲଳିତଲବଙ୍ଗ ଲତାରେ ଆସିଛି
ନବ କିଶଳୟ ମଉଛବ
ପରାଣ ଗହନେ ତୁମ ପାଇଁ ଫୁଟେ
କେତେ ସଜଫୁଲ କେରିକେରି ॥୨॥

•••

# ଜହ୍ନରାତି

ଅଶିଣର ଏଇ ଜହ୍ନ ରାତିରେ
କିଏ ସେ ଗାଉଛି ଗୀତ
ଗୀତ ନୁହେଁ ସେ ତ ମନ ବୀଣାତାରେ
ନୂଆ ସୁର ପୁଲକିତ ॥୦॥

ନୀଳ ଢେଉପରେ ପବନ ଦୋଳିରେ
ଝୁଲେ ସଜ କଇଁଫୁଲ
ପାଖୁଡ଼ାରେ ତା'ର ଲେଖା ହୋଇଅଛି
କବିତା ଅମୂଲମୂଲ ।
ମୁକୁତା କି ତା'ରେ ସମାନ ହୋଇବ ମମତାରେ ସୁରଭିତ ॥୧॥

ଶୁଭୁଛି କାହାର ପାଦର ଶବଦ
ଲାଗେ ଚିହ୍ନାଚିହ୍ନା ପରି
ଦୂରେ ଦିଶୁଅଛି ଛାଇ ଆଲୁଅରେ
ଫୁଟା ସ୍ମୃତି କେରିକେରି ।
ନିଜ ଆଇନାରେ ନିଜକୁ ଦେଖିଲେ ଲାଗଇ ଅପରିଚିତ ॥୨॥

ଲତା ଝୁଲଣାରେ ଝୁଲୁଅଛି ଛାଇ
ଲଳିତ ଲାବଣ୍ୟ ମାଖି
ଦୂରଦେଶୀ ପାନ୍ଥ ନିଜକୁ ଖୋଜେ ମୁଁ
ନିଜେ ତ ନିଜର ସାକ୍ଷୀ
ମୋହନ ମହକେ ଭରା ଏ ମୂଲକ ମଧୁଛନ୍ଦେ ଛନ୍ଦାୟିତ ॥୩॥

●●●

# ମଲାଟ

ନୀଳନୀଳ ସପନର ଅଳସୀ ନିର୍ଝର
ସ୍ମୃତିର ଝଦର ତୁମେ ରେଶମୀ ରାତିର ।।୦।।

ଭିଜାଭିଜା କେଶରରେ ମନଲାଖି ମହକ
ରୂପ ରାଇଜର ତାରା, ଭରାପ୍ରୀତି ପୁଲକ
ଅତରମଖା ପବନ ମଦନ ଦୋସର ।।୧।।

ଲାଜର ତମାଲ ଆଭା ହସର କାନନେ
ମଙ୍ଗଳ ପ୍ରଭାତୀଶୋଭା ଆଶାର ଭୁବନେ
ଜଳଧାରା ତୁମେ ପରା ଅଶେଷ ଶୋଷର ।।୨।।

ମହାନ ଭାବରେ ଭରା ଅନୁଭବ ତୁମେ
ତୁମେ ଚଲାପଥ ପୁଣି ପଥିକ ଏ ଭୂମେ
ଆକାଶୀ ମଲାଟ ତୁମେ ମରତ ମାଟିର ।।୩।।

●●●

# ଆତ୍ମସାକ୍ଷାତକାର

ସେ ଦିନ ନିଜକୁ ନିଜେ ମୁଁ ଭେଟିଲି
ଭାବନାର ନଈକୂଳେ
ପଚାରିଲି କିଆଁ ଏମିତି ବୁଲୁଛ
ନିଛାଟିଆ ଖରାବେଳେ ॥୦॥

କେହି ତ ନାହାନ୍ତି ପାଖରେ ଆଖରେ
କଥା ପଦେ ହେବାପାଇଁ
ଆହା କରିବାକୁ ସାହା କେହି ନାହିଁ
ସାହା ନିଜ ଦେହ ଛାଇ ।
ଉଦାସ ଆଖିରେ ବେସୁରା ରାଗିଣୀ, ଭଙ୍ଗା ବେହେଲାର ତାରେ ॥୧॥

କାହାକୁ ଖୋଜୁଛ କିଏ ଆସିବ କି
ଚାହିଁଛ କାହାର ବାଟ ?
ପାଦ ଟଳମଳ ବେଶ ଅସମ୍ଭାଳ
ଥରଥର ତୁମ ଓଠ
ଦିଶୁଛି ସତେ କି ସକାଳର ତୋଳା ପଦ୍ମଫୁଲ ଗୋଧୂଳିରେ ॥୨॥
ବିରହ ତାତିରେ ଜଳି ଯାଇଛି ତ
ଆଶା କିଶଳୟ କେତେ
ଲାଗୁଛି ଯେମିତି ପ୍ରବାସୀ କି ତୁମେ
ନିଜ ଦେଶ ବାଟ ଘାଟେ ।
କହିବାକୁ ଯାହା ଚାହୁଁଥିଲ ତୁମେ ପାରିଲନି କହି ଥରେ ॥୩॥

ରାଜକୁମାର କି ଆସିବ ସରଗୁଁ
ପକ୍ଷୀରାଜ ଘୋଡ଼ା ଚଢ଼ି
ସୁନାର ଚଢ଼େଇ ଉଡ଼ିଉଡ଼ି ଯିବ
ତୁମ ପାଖେ ଡେଣା ଝାଡ଼ି
ବସନ୍ତ ମାଧୁରୀ ଦିଗେ ଦିଗେ ପୂରି ଉଛୁଳି ଯିବ କି ବାରେ ? ॥୪॥

•••

# ଆତ୍ମନେପଦୀ

ନଇଁନଇଁ ଆସେ ଗୋଧୂଳିର ବେଳା
ଫିକା ଅବିରର ରଙ୍ଗେ
ଏକାକୀ ପଥିକ ଉଦାସେ ମଗନ
କେହି ନାହିଁ ତା'ର ସଙ୍ଗେ ।।୦।।

ଦୂର ମରୁବାଲି ବାଟ ଝଲିଝଲି
ଥରଥର ପାଦ ମୁଣ୍ଡରେ ଗଣ୍ଠିଲି
ଯାଇ ହେଉ ନାହିଁ, ରହି ହେଉ ନାହିଁ, କଣ୍ଟା ଫୁଟିଯାଏ ପାଦେ ।।୧।।

ସବୁ ହତାଶାକୁ କରି ଦେଇ ଦୂର
ବେଳେବେଳେ ଶୁଭେ କାହା ମିଠା ସୁର
ପାଖେ ପୁଣି ଦୂରେ କିଏ ଗାଉଛିରେ ଗୀତ ଆଶାବରୀ ରାଗେ ।।୨।।

ବେଳେବେଳେ ଦିଶେ କାହା ପାଦ ଚିହ୍ନ
ଅଜଣା ପୁଲକେ ମନ ଛନ୍ନ ଛନ୍ନ
ଅତି ଆପଣାର କିଏ ଅଛି ଜଣେ, ପଥିକ ଏକଥା ଭାବେ ।।୩।।

ଲିଭିଯାଏ ବେଳେ ସେଇ ପାଦ ଚିହ୍ନ
ନିରାଶା ଅନ୍ଧାରେ ଆକୁଳ ପରାଣ
ସେତେବେଳେ ଶୁଭେ ହତାଶ ହୁଅନା, 'ତୁହି ବସିଛୁ ମୋ କାନ୍ଧେ' ।।୪।।

●●●

# ଜୀବନର ରଙ୍ଗ

ତୁମେ କେତେବେଳେ ଶରତ ସକାଳ
　　　　　　　　ମାଧବୀ ଜୋଛନା ରାତି
ଆଉ କେତେବେଳେ ହେମନ୍ତ ନିଶୀଥ
　　　　　　　　ଉଦାସୀ ଶୀତ ପାହାନ୍ତି ।।୦।।

ପାହାନ୍ତି ବେଳାର ଲିଭା ଜହ୍ନରେଖା
　　　　　　　　ଶିଉଳି ମଳିନ ଜଳ
ସଜ ସକାଳର ଶିଶିରରେ ଭିଜା
　　　　　　　　ସୁନ୍ଦରୀ ଷୋଡ଼ଶୀ ଫୁଲ ।
ବିରହ ବଇଁଶୀ ବେସୁରା ରାଗିଣୀ, ଯୋଡ଼ା ବଇଶାଖୀ ତାତି ।।୧।।

ଶୁଖି ଆସୁଥିବା ଶରତ ସୀମାନ୍ତ
　　　　　　　　ନଦୀର ଉଦାସ ଧାର
ଭାଙ୍ଗିପଡୁଥିବା ବସନ୍ତ ବିରହୀ
　　　　　　　　ନବ ଯଉବନ ଭାର
ହଜି ଯାଇଥିବା ଶାକୁନ୍ତଳ ମୁଦି ଯହିଁ ଲେଖା କେତେ ସ୍ମୃତି ।।୨।।

ଯମୁନାର ନୀଳ ନୀର ବିହାରିଣୀ
　　　　　　　　ମନୋରମ ହଂସ ଗୀତି
ବରଷାରେ ଭିଜା ସିକତା ଶୋଭନା
　　　　　　　　ନୂଆ ଝାଉଁବନ ବୀଥି
ମୁଁ ଖୋଜୁଥିବା ସେ ଗାଁ ଠିକଣା ଯହିଁ ତୁମେ ମଧୁମତୀ ।।୩।।

ଗୋଧୂଳି ଗଗନ କଳସୀ ଉଛୁଳା
　　　　　　　　ବାରୁଣୀ କିରଣ ଧାରା
ପାଇ ନ ବୁଝିବା, ନବୁଝି ଖୋଜିବା
　　　　　　　　ଖୋଜି ନ ପାଇବା ପରା
ନବ ପ୍ରଭାତର ଶୁଭ ଅରୁଣିମା ଆଶାମଧୁକୁଞ୍ଜକାନ୍ତି ।।୪।।

●●●

# ତୁମ ହସ

କିଏ ତୁମେ ଆସି ଅଳ୍ପଅଳ୍ପ ହସି
ଦେଇଗଲ ମିଠାବାସ
ସେଇ ଦିନରୁ ମୁଁ ଭୁଲିପାରୁ ନାହିଁ
ତୁମର ସେ ଅଧାହସ ॥୦॥

ତୁମ ଧୀର ଚାଲି ବିଞ୍ଚି ଦେଇଥିଲା
ଭାବର ସୁବର୍ଣ୍ଣମାଳି
ଭାଙ୍ଗିପଡୁଥିଲା ଲାବଣ୍ୟସାଗର
ପ୍ରେମର ତରଙ୍ଗ ତୋଳି
କଟାକ୍ଷ ଛଟାରୁ ଝରି ପଡୁଥିଲା ଆନନ୍ଦର ସୁଧାରସ ॥୧॥

ତୁମ ଅନୁରାଗ ମାଖି ଦେଇଗଲା
ମୋ ପ୍ରାଣେ ସୁରଭି ଗନ୍ଧ
ତୁମରି ପରଶ ଭରିଲା ଜୀବନେ
ଲଳିତ ମଧୁର ଛନ୍ଦ
ସେଇ ଛନ୍ଦରେ ମୁଁ ଛନ୍ଦି ହୋଇଗଲି ଦିନଦିନ ମାସ ମାସ ॥୨॥

ଫୁଟିଗଲା ମୋର ମନ ଉପବନେ
ମହୁଆ ଲାଜୁଆ ଫୁଲ
ମହମହ ବାସେ ଦିଗ ମହକିଲା
ଦିଶୁଥିଲା ଝଲମଲ
ସରଗ ଆସିଲା ନଇଁ ଧୀରେଧୀରେ ସାଜି ବିମୋହନ ବେଶ ॥୩॥

ନୂଆ ଜୀବନର ସୁନେଲି କିରଣ
ନନ୍ଦନ ରଚିଲା ଆସି
ତୁମ କଥା ଭାବି ସେଇ ଦିନରୁ ମୁଁ
ଆନମନା ଦିବାନିଶି
ଆଖି ଆଇନାରେ ତୁମ ରୂପ ଦିଶେ, କାନେ ଶୁଭେ ତୁମ ହସ ॥୪॥

•••

# ମଣିଷର ମନ

ଦୁଃସ୍ୱପ୍ନର ଗନ୍ତାଘର ମଣିଷର ମନ
ପ୍ରତୀକ୍ଷାର ଅନ୍ୟନାମ ଆଜିର ଜୀବନ ॥୦॥

ଭାଷା ଏଠି ଲାଭ ପାଇଁ ଭାବ ଜଉଘର
ବିଶ୍ୱାସରେ ବିଷଦାନ ଅଗ୍ନି ଅହଂକାର
ଅରୁଣ କିରଣଧାରେ ବାରୁଣୀର ଭ୍ରମ ।

ନୀଳରଙ୍ଗ ଆକାଶରୁ ଯାଏ ଚୋରି ହୋଇ
ଦିଗେ ଦିଗେ ଆକାଶରେ ରକ୍ତବର୍ଣ୍ଣ ଛାଇ
ଦୁର୍ଘଟଣା ଯେ ଘଟଣା ନିତି ପ୍ରତିଦିନ ॥୧॥

ନିରିଜନ ଦ୍ୱିପହରେ ନିଆଁ ଝୁଲ ଝରେ
ଲଳିତ ଲବଙ୍ଗଲତା ଅକାଳେ ଝାଉଁଳେ
ସକାଳର ପଦ୍ମଫୁଲ ବିଷାଦେ ମଳିନ ॥୨॥

କୁହୁଡ଼ିର ରାଜପଣ ସକାଳ ପହରେ
ଖାଲଖମା ଦିଶେ ନାହିଁ ଜୀବନ ପଥରେ
ଛାଇ ମଧ୍ୟ ପଡ଼େ ନାହିଁ ଅନ୍ଧାରରେ ଲୀନ ॥୩॥

ସମୟର ଟାପୁ ଶବ୍ଦେ ଭଙ୍ଗିଯାଏ ନିଦ
ଆଗକୁ ହୁଏନା ଚାଲି ଛନ୍ଦିହୁଏ ପାଦ
ଲାଗେ ସବୁ ଖାଲିଖାଲି ଅନ୍ଧାର ଭୁବନ ॥୪॥

●●●

# ସ୍ୱପ୍ନ

ସେଇ ଦିନ ସବୁ ଆସନ୍ତା କି ସତେ
ଆଉ ଥରେ ଏ ଜୀବନେ
ଜୀବନର ବୀଥି ଭରିଯାଆନ୍ତା କି
ବସନ୍ତ କୋକିଳ ଗାନେ ।।୦।।

ଆଉଥରେ କିବା ମଳୟ ପବନ
ଅଳସ ଭାଙ୍ଗନ୍ତା ଆସି
ପବନ ଢେଉରେ କୋଇଲିର କୁହୁ
ଆସନ୍ତା କି ଭାସିଭାସି
ଫଗୁଣର ଫଗୁ ବିଞ୍ଚି ହୋଇଯାନ୍ତା ଭାବନାର ଉପବନେ ।।୧।।

ଝରି ପଡ଼ନ୍ତା କି ନୀଳ ଆକାଶରୁ
ଜୋଛନାର ରୁପା ରେଣୁ
ପତରଧାରରେ ଝୁଲିଝୁଲି ସିଏ
ବଜାନ୍ତା ମୋହନ ବେଣୁ
ବଣ ମଲ୍ଲୀଫୁଲ ଫୁଟି ଯାଆନ୍ତା କି ଗହନ ବନ ବିତାନେ ।।୨।।

ମଣି ମାଣିକର ଦୀପ ଜଳନ୍ତାକି
ଆମ୍ର କିଶଳୟ କୋଳେ
ମୋହନମାଧୁରୀ ଝରି ପଡ଼ନ୍ତା କି
ଦୀପଶିଖା ଧାରେଧାରେ
ସୁରବାଳା ପାଦ ପାଉଁଜି ଶବଦ ଶୁଭନ୍ତା ଅଳିଗୁଞ୍ଜନେ ।।୩।।

ଶୀତଳ ସମୀର ବହିଆସନ୍ତା କି
ପଦ୍ମପୋଖରୀକୁ ଛୁଇଁ
ନୂଆ ନୟନର କଟାକ୍ଷରଛଟା
ମନକୁ ନିଅନ୍ତା ମୋହି
ସରଗର ସୁଧା ଭରି ଏ ବସୁଧା ଉଛୁଳି ପଡ଼ନ୍ତା ମନେ ।।୪।।

•••

# ନବଚେତନା




ଡକ୍ଟର ଶରତ ଚନ୍ଦ୍ର ରଥ

ପ୍ରକାଶ କାଳ : ୨୦୧୩

ପ୍ରଚ୍ଛଦ : ବିଭୁ ପ୍ରସୂନ

# ପଦେ ଅଧେ

ମହାଯୋଗୀ ଶ୍ରୀଅରବିନ୍ଦଙ୍କର ମହନୀୟ ଉପସ୍ଥିତି ଆଗାମୀ ଶୁଭଦିନ ପାଇଁ ଏକ ନିର୍ଭରତାପୂର୍ଣ୍ଣ ପ୍ରତିଶ୍ରୁତି । ନୂତନ ଉଷାଲୋକର ନବରାଗିଣୀ ହେଉଛନ୍ତି ଶ୍ରୀମା । ଗୋଟିଏ ଚେତନାର ଦୁଇ ଭୌତିକ ବିଗ୍ରହ । ଅତିମାନସର ଭଗୀରଥ ମହାଯୋଗୀ ଶ୍ରୀଅରବିନ୍ଦ ଓ ସେହି ଅତିମାନସକୁ ଜଡ଼ଜଗତରେ କ୍ରିୟାଶୀଳ କରାଇଥିବା ଦିବ୍ୟଜନନୀ ଶ୍ରୀମା, ନୂତନ ଦିଗନ୍ତର ଯଥାର୍ଥ ସନ୍ଧାନ ଦେଇ ସମଗ୍ର ମାନବ ଜାତିକୁ ତାଙ୍କଠାରେ ଋଣୀ କରାଇଛନ୍ତି । ଆଶାବାଦର ମଧୁମହକରେ ଶ୍ରୀମାଶ୍ରୀଅରବିନ୍ଦଙ୍କ ରଚନାରାଜି ଅଭିଷିକ୍ତ ଓ ମହିମାମଣ୍ଡିତ । ସମସ୍ତ ଭାଷାବିଭବ ଯାହାଙ୍କର ମହତ୍ତ୍ୱର ଆକଳନ ପାଇଁ ଯଥେଷ୍ଟ ନୁହେଁ, ତାଙ୍କ ପାଇଁ ମୁଁ ବା କ'ଣ ଲେଖିବି ? ଏଥିରୁ କେତେକ ପ୍ରାର୍ଥନା ସଂଗୀତ ପଣ୍ଡିଚେରୀରୁ ପ୍ରକାଶିତ ମାସିକ ପତ୍ରିକା ନବପ୍ରକାଶରେ ପୂର୍ବରୁ ପ୍ରକାଶିତ ହୋଇଛି । ଏଇ ଅବକାଶରେ ନବପ୍ରକାଶର ପରିଚାଳନା କମିଟି ନିକଟରେ ଗଭୀର କୃତଜ୍ଞତା ଜଣାଉଛି । ଏହି ପୁସ୍ତକ ପ୍ରକାଶନ ନିମନ୍ତେ ଯେଉଁମାନେ ମୋତେ ପ୍ରେରଣା ଦେଇଛନ୍ତି ସେମାନଙ୍କୁ ଆନ୍ତରିକ ସାଧୁବାଦ ଜଣାଉଛି । ଏହି ପରିବର୍ଦ୍ଧିତ ସଂସ୍କରଣର ପ୍ରଣୟନ ଦିଗରେ ପ୍ରେରଣା ନିମନ୍ତେ ଶ୍ରୀଯୁକ୍ତ ସାତକଡ଼ି ହୋତା, ଶ୍ରୀମତୀ ଗୀତା ହୋତା ଓ ଡକ୍ଟର ଅର୍ଚ୍ଚନା ନାୟକଙ୍କୁ ମୋର କୃତଜ୍ଞତା ଜଣାଉଛି । ସବୁ ପରମ ପ୍ରଭୁଙ୍କ ଇଚ୍ଛା, ସେହି ପ୍ରଭୁପଣର ଜୟ ହେଉ । ପରିଶେଷରେ ଶ୍ରୀମାଶ୍ରୀଅରବିନ୍ଦଙ୍କର କରୁଣା ଭିକ୍ଷା କରି ରହୁଛି ।

ବିନୀତ

**ଶରତ**

# ଶ୍ରୀମା'ଙ୍କ ପାଦ

ପାଦପରି ପାଦସିନା
ଆଉ ଯେତେ ପାଦ ଅଛି ଏ ମରତେ
ସବୁ ପିତଳ ସେ ସୁନା ॥ ୧ ॥
ପାଦଶୋଭା ମନଲୋଭା
ସତେ କି ଆସିଛି ନନ୍ଦନକାନନୁଁ
ପାରିଜାତ ରୂପବିଭା ॥ ୨ ॥
ସେ ପାଦ ଲାବଣ୍ୟ ଠାଣି
ବଇକୁଣ୍ଠ ପୂରୁ କଇବଲ୍ୟ ଆଣି
ମରତେ ଦେଉଛି ବୁଣି ॥୩॥
ପାଦର ଗଠନ ରୀତି
ତିନି ଭୁବନର ସାରକାନ୍ତି ଆଣି
ଗଢ଼ିଛନ୍ତି ସରସ୍ୱତୀ ॥୪॥
ନୟନର ରହୁଛି ଲାଖି
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ
ନିଜ ଆଖି ନିଜସାକ୍ଷୀ ॥୫॥
ସେ ପାଦ ପୂଜନ ଲାଗି
ସୁର ନାଗନର ଗନ୍ଧର୍ବ କିନ୍ନର
ଅହରହ ଅନୁରାଗୀ ॥୬॥
ସେ ଆଙ୍ଗୁଳି ମନୋରମ
ଦେଖିଲେ ଲାଗୁଛି କଳପ ଲତାର
ସତେ ପଞ୍ଚ ଶାଖାସମ ॥୭॥
ସୁନ୍ଦର ସେ ନଖଶିରୀ
ତହିଁରୁ ପଡୁଛି ଦିବ୍ୟ ଭୁବନରୁ
ସୁଧାସଂଜୀବନୀ ଝରି ॥୮॥

ସେ ପୂତ ଚରଣ ରେଣୁ
ମୂକ ମୁଖେ ଦିଏ ଭାଷା ଅନୁପମ
ବଜାଇ ମୋହନ ବେଣୁ ।।୯।।
ପାଇ ସେ ପାଦପରଶ
ନିଶିକାନ୍ତ ସହ ଅନେକ ସାଧକ
ପାଇଛନ୍ତି ଜୀବନ୍ୟାସ ।।୧୦।।
ସେ ପାଦ ମହିମାରାଶି
ଶେଷ ଦେବ ଶେଷ କରି ନପାରନ୍ତି
ଗାନ କରି ଦିବାନିଶି ।।୧୧।।
ମହେଶ୍ୱରୀ ପାଦ ରେଖା
ଆଲୋକ ବରଷି ତମସାକୁ ନାଶି
ତୋଳେ ସେ ଜ୍ଞାନର ଶିଖା ।।୧୨।।
ମହାକାଳୀ ପାଦ ସେହି
ପରଶେ ତାହାର ବିରୋଧୀ ଶକ୍ତିର
ବିରୋଧ ଯାଏ ଉଭାଇ ।।୧୩।।
ସେ ପାଦ କମଳାଙ୍କର
ପଡ଼େ ଯେଉଁଠାରେ ଫୁଟି ଉଠେ ତହିଁ
ଆନନ୍ଦ କମଳା କର ।।୧୪।।
ମହା ସରସ୍ୱତୀ ପାଦ
ଅସଜଡ଼ା କେତେ ସଜାଡ଼ି ଦିଏ ସେ
ଫୁଟାଇ ସୁଷମ ଛନ୍ଦ ।
ଏତିକି ଅଭୀପ୍‌ସା କରେ
ଜନମେ ଜନମେ ବନ୍ଧା ରହୁମନ
ମା'ଙ୍କର ପାଦତଳେ ।।୧୫।।

●●●

# ମା'ଙ୍କ ନାମ

ମାଆ ମାଆ ଡାକ ଡାକରେ ମାନସ
ମାଆ ମାଆ ବୋଲି ଡାକ
ମାଆ ନାମ ଦେବ ସରଗ ସମ୍ପଦ
ଏତିକି ଭରସା ରଖ ॥୧॥

ମଳିନତା ଯେତେ ଅଛି ଏ ଜୀବନେ
ତୋର ଦେହ, ପ୍ରାଣ, ମନେ
ସବୁ ମଳିନତା ଧୋଇ ହୋଇଯିବ
ମାଆ ନାମ ଉଚ୍ଚାରଣେ ॥୨॥

ମାଆ ନାମ ବନ୍ଧୁ ମାଆ ନାମ ସଖା
କର ତାକୁ ଗଣ୍ଠିଧନ
ସୁଖେଦୁଃଖେ ସେହି ନାମ ହେବ ସାହା
ଅବିରତ ନିଶିଦିନ ॥୩॥

ମାଆ ନାମେ ଅଛି ପ୍ରଶାନ୍ତି ପ୍ରଲେପ
ଅଛିରେ ଅମୃତ ଧାରା
ସେ ଧାରା ପରଶେ ଜୀବନର ଲକ୍ଷ୍ୟ
ପୂରଣ ହୋଇବ ପରା ॥୪॥

ଦୁଃଖକର ନାହିଁ ଧ୍ୟାନ ଆସୁନାହିଁ
ଆସୁନାହିଁ ପୂଜା ବିଧି
ଯଜ୍ଞ ଲୋଡ଼ାନାହିଁ ଦାନ ଲୋଡ଼ାନାହିଁ
ମା' ନାମ ଲାବଣ୍ୟନିଧି ॥୫॥

ସେ ନାମ ମହିମା ନାହିଁ ତା'ର ସୀମା
କଥାରେ କହିବ କିଏ
ସେ ମହିମାବଳେ ପଙ୍ଗୁ ଲଂଘେ ଗିରି
ମୂକଟି ବାଚାଳ ହୁଏ ॥୬॥

ହସରେ ଲୁହରେ ଆଶା ନିରାଶାରେ
ମାଆ ନାମ ହେଲେ ସାଥୀ
ଜୀବନ ଆକାଶେ ସୂରୁଜ ଉଇଁବ
ପାହିଯିବ ଅମାରାତି ॥୭॥

ଫୁଟିବ କମଳ କଳି ଚେତନାର
ବିତରିବ ମଧୁବାସ
ଲୋଟିବ ପରାଣ ଆନନ୍ଦେ ଉଲ୍ଲସି
ଲଭି ସେ ଦିବ୍ୟ ସୁବାସ ॥୮॥

•••

# ଦୀପଶିଖା

ଦୀପଟିଏ କର ମାଆ ମୁଁ ତୁମର
ପାଦତଳେ ଜଳୁଥିବି
ଧୂପଟିଏ ହୋଇ ତୁମ ପୂଜାବେଳେ
ଜଳିଜଳି ଝରିଯିବି ।।୧।।

ମନକଥା ସବୁ କହିବି ତୁମକୁ
ଗାଉଥିବି ତୁମ ନାମ
ଚଲାପଥେ ମୋର ସାହା ହେବ ମାଆ
ଦିବାନିଶି ଅବିରାମ ।।୨।।

ଅନ୍ତରରୁ ମତେ ଚଳାଇ ନିଅ ମା'
ହୃଦୟରେ ପ୍ରେମ ଭରି
କରୁଣା କଣିକା ଊଣା କରିବନି
ସତ୍ୟମୟୀ ମହେଶ୍ୱରୀ ।।୩।।

ତୁମରି ଆଶିଷ ହେବ ମୋ ପାଥେୟ
ଏ ଜଗତ ଚଲାପଥେ
ସାରଥୀ ହେବ ମାଆ ଆରତି ଶୁଣି ମୋ
ଜୀବନ ଜଞ୍ଜାଳ ରଥେ ।।୪।।

ତୁମ ଦୟାଥିଲେ ଦୁଃଖ କି କରିବ
ଅବସାଦ ଯିବ ଘୁଞ୍ଚି
ରଣଭୂମି ହେବ ବିଜୟ ଅଗଣା
ପରାଣ ଉଠିବ ନାଚି ।।୫।।

ମୋ ମନରେ ରହୁ ଅଶେଷ ଆନନ୍ଦ
ତୁମ ନିରାଜନା ପାଇଁ
ପାଖୁଡ଼ା ପାଖୁଡ଼ା ମେଲି ଫୁଟିଯାଉ
ଚେତନାର ନୀଳକଇଁ ।।୬।।
ଚୈତ୍ୟସତ୍ତା ମୋର ପ୍ରଦୀପ୍ତକର ମା'
ତୁମ ଶୁଭାଶିଷ ଦେଇ
ଏତିକି ମାଗୁଣି ସେବାଦାସ କର
ତୁମ ଚରଣରେ ନେଇ ।।୭।।
ପୂରଣ ହୋଇବ ଅଭିଳାଷ ତେବେ
ଫୁଟିବ ନନ୍ଦନ ଫୁଲ
ତୁମରି କରୁଣା ଆଣିଦେବ ମାଆ
ଜୀବନର ଯଥା ମୂଲ ।।୮।।

●●●

# ମାତୃମହିମା

ଭାସେ ଯେବେ ଦୁଃଖ ଘନମେଘମାଳା
ଜୀବନ-ଗଗନ-ଦେଶେ
ଆସେ ନିରାଶାର ଅମା ଅନ୍ଧକାର
ବିକଟ କରାଳ ବେଶେ ॥୧॥
ବାତଚକ୍ର ପ୍ରାୟ ମନ ଭ୍ରମୁ ଥାଏ
ଭାଷାରେ ଅକୁହା ତାହା
ସେତେବେଳେ ଆଉ ସାହା କେହି ନାହିଁ
ସାହା ଏକା ତୁମେ ମାଆ ॥୨॥
ଲାଗେ ସେତେବେଳେ ପାଶେ ପାଶେ ରହି
ନିଅ ତୁମେ ହାତ ଧରି
ତୁମେ ଥାଅ ବୋଲି ଘନ ଅନ୍ଧକାର
ଯାଉଥାଏ ଅପସରି ॥୩॥
ଅସଜଡ଼ା ଯେତେ ଥାଏ ଚଲାପଥେ
ସବୁ ତ ସଜାଡ଼ି ହୁଏ
ତନୁରେ ଶକତି ମନରେ ସାହସ
କାହୁଁ ଆସି ଭରିଯାଏ ॥୪॥
ପାଦ ଚଲିଥାଏ ଆଗକୁ ଆଗକୁ
ନ ମାନି ପାଣି ପଥର
ତୁମ କରୁଣାରୁ ସେ ପଥର ହୁଏ
କଅଁଳ ଘାସ ପତର ॥୫॥
ତୁମ ନାମ ଜପି ଚଲିଲେ ଆଗକୁ
ଦିଶଇ ଆଲୋକ ରେଖା
ରଙ୍କନିଧି ପରି ଲାଗେ ସେ ଆଲୋକ
ଭରସାରେ ମଧୁମଖା ॥୬॥
ମଥା ନଇଁ ଯାଏ ଆପେ ଆପେ ମାଆ
ତୁମରି ଚରଣ ତଳେ
ସେଇ ଚରଣର ତୁଳନା ନାହିଁତ
ଏ ଧୂଳି ଧରଣୀ କୋଳେ ॥୭॥

# ଫୁଲ ସୁବାସ

ତୁମେ ସଲିଳରେ ରସ ଧାରା
ସୂରୁଜେ ଆଲୋକ  ଜହ୍ନରେ ଜୋଛନା
ଫୁଲରେ ସୁବାସ ପରା ॥୧॥

ଶ୍ରାବଣୀ ଧାରାରେ ଝରଝର ତାନ
ଫଗୁଣ କୁଞ୍ଜରେ ପିକ କୁହୁ ଗାନ
ପ୍ରତି ସକାଳର ଆଲୋକରେ ତୁମେ
ଆଶାର ମାଣିକ ଝରା ॥୨॥

ଆକାଶ ଦେଶରେ ରୁଚିର ନୀଳିମା
ଗହନ ବନରେ ସବୁଜ ସୁଷମା
ଜୀବନେ ଜୀବନେ ଆନନ୍ଦ ସାଗର
ଶୋଭନ ଲହରୀ ମାଳା ॥୩॥

●●●

# ମାଆ ଗୋ କରୁଣାମୟି !

ଆସ ମହେଶ୍ୱରୀ ରାଜରାଜେଶ୍ୱରୀ
ଆଉ ରହ ନାହିଁ ଦୂରରେ ବସି
ତୁମରି ସଂସାର ତୁମ ଖେଳଘର
ଡାକୁଛି ତୁମକୁ ଅଳପହସି ॥୧॥

ତୁମରି ଚରଣ ପରଶେ ଫୁଟିବ
ନୂଆ ଚେତନାର କମଳ କଢ଼ି
ଆଶା ଭରସାର ଭାଷା ବିଳସିବ
ଜଡ଼ପ୍ରାଣେ ମଧୁମମତା ବାଢ଼ି ॥୨॥

ମହାକାଳୀ ମାଆ ଆସ ଅବତରି
ନାଶିବାକୁ ପାପତାପର ଭାର
କ୍ରୂର ଅଟ୍ଟହାସେ ବିଜୟନୀ ବେଶେ
ଆଳସ୍ୟ, ଅନୀତି କର ହେ ଦୂର ॥୩॥

ଆଲୋକିତ ହେଉ ଜୀବନର ପଥ
ସୁରଭିତ ହେଉ ସାରା ମୂଲକ
ଅସୁର ବିଚାର ହେଉସବୁ ଦୂର
ମରୁଜୀବନରେ ଭରୁ ପୁଲକ ॥୪॥

ମହାଲକ୍ଷ୍ମୀ ମାଆ ହୁଅ ତୁମେ ସାହା
ଏ ବିଶ୍ୱ ଜୀବନ ବିକାଶ ପାଇଁ
ତୁମରି ପରଶେ ହସିଉଠୁ ଧରା
ଆସୁ ଚେତନାର ସୂରୁଯ ଉଇଁ ॥୫॥

ହତାଶା ମଳିନ ଜୀବନ କାନନେ
ତୁମରି ଇଙ୍ଗିତେ ମଳୟ ଆସୁ
ନବ କିଶଳୟ ମୁକୁଳ ବିଳାସେ
ମାନବିକତାର ମଧୁ ବରଷୁ ।।୬।।

ମହାସରସ୍ୱତୀ ଏତିକି ପ୍ରଣତି
ଦିଅ ମା' ସରବେ ଶୁଭ ଆଶିଷ
ସବୁ ଦୋଷତ୍ରୁଟି ସଜାଡ଼ି ଦିଅ ମା'
ଢାଳି କରୁଣାର ଧାରା ପୀୟୁଷ ।।୭।।

ସରଗସୁବାସ ଆସି ଅବତରି
ଭରିଯାଉ ବିଶ୍ୱଜୀବନ କୁଞ୍ଜେ
ନ କରି ବିଳମ୍ବ ଦିଅ ଅବଲମ୍ବ
ଆଜି ଧରା ତୁମ କରୁଣା ଖୋଜେ ।।୮।।

ମାତୃ ମମତାର ବିଜୟ ବାଜଣା
ବାଜିଉଠୁ ପୁରେ ମଙ୍ଗଳସୁରେ
ମାନବିକତାର ଜୟଜୟ ଗାନେ
ଭରିଯାଉ ଦିଗଦିଗନ୍ତେ ବାରେ ।।୯।।

•••

# ହେମକମଳ

ତୁମେ ଶରତଜହ୍ନ ବିମଳ ଶୋଭା
ତୁମେ ବସନ୍ତଫୁଲକଳିକା ଶୋଭା
ଦିଗଦଗନ୍ତେ ତୁମେ ପ୍ରୀତି ପୀୟୁଷ
ଭାଷାରେ କେ କହିବ ତୁମରି ଯଶ ।।୧।।

ନୀଳ ସାଗରେ ତୁମେ ଲହରୀ ମାଳା
ଶ୍ୟାମ କେଦାର କୋଳେ ସୁଷମା ଲୀଳା
ବରଷା ଭିଜା ମାଟି ମଧୁମହକ
ମେଘ କୋଳରେ ତୁମେ ବିଦୁ ଝଲକ ।।୨।।

ବିଶ୍ୱ ସରସୀ କୋଳେ ହେମ କମଳ
ବିଶ୍ୱ ଗଗନ ତଟେ ତାରା ଉଜ୍ଜ୍ୱଳ
ଅମା ଅନ୍ଧାରେ ତୁମେ ଜ୍ୟୋତିର ଶିଖା
ଜୀବନ ପରପାରେ ଆଲୋକ ରେଖା ।।୩।।

ଜୀବନେ ସଞ୍ଜ ଯେବେ ନଇଁବ ଆସି
ତୁମେ  ହୋଇବ ମାଆ ପୂର୍ଣ୍ଣିମା ଶଶୀ
ବିମଳ ସୁଧାଭରା ଝରୁ କିରଣ
ଜାଳିବ ସେତେବେଳେ ରହିଲା ରାଣ ।।୪।।

●●●

# ନୂଆ ଛନ୍ଦ

ନୂଆ ଛନ୍ଦେ ଗାଇବାରେ
ମାଆ ଯଶ ଗୀତିକା
ସୁଷମାରେ ଭରିଯିବ
ମନ ବନ ବୀଥିକା ।।୦।।

ଅବସାଦ ଯିବ ଚଳି
ଆନନ୍ଦର ଚଇତାଳି
ପରଶେ ଉଠିବ ହସି
ପରାଣର ଲତିକା ।।୧।।

ସରଗ ଶରଧାରାଶି
ନିଜେ ଅବତରି ଆସି
ସରାଗରେ ଛୁଇଁଯିବ
ମରତର ମୃତ୍ତିକା ।।୨।।

ମାଆର ଅସୀମ ଦୟା
କଳି କେ ପାରିବ ତାହା
ସିଏ ସୁର ସିଏ ତାଳ
ସିଏ ନିଜେ ଗୀତିକା ।।୩।।

ସିଏ ଜଗତ ଜନନୀ
ଅଭୟ ବରଦାୟିନୀ
ତା' ଚରଣେ ଭେଟିଦେବା
ଭକତିର ଯୂଥିକା ।।୪।।

●●●

# ଏତିକି ଆଶା

ମାଆ, ନିଅ ତୁମେ ଚଲାପଥେ
ପଡ଼ିଯିବି ମୋର ପାଦ ଥରଥର
ଧରି ନିଅ ତୁମ ହାତେ ॥୦॥

ସେଇ ଚଲାପଥ ଧାରେ ଫୁଟିଥିବ
ସାତରଂଗେ କେତେ ଫୁଲ
ବହୁଥିବ ଧୀର ମଳୟ ମଧୁର
ସୁବାସିତ ପରିମଳ
କୋଇଲିର ଗାନେ ବାଜୁଥିବ କାନେ
ତୁମ ଯଶ ଅବିରତେ ॥୧॥

ଚେତନା କୁଆରେ ଭରିଯାଉଥିବ
ଜୀବନ ବିଜନ ବେଳା
ମନ କହୁଥିବ ସବୁ ମୁଁ ପାଇଛି
ଯାହା ପାଇବାର ଥିଲା
ପରାଣ ତରୁରେ ଆଶା କିଶଳୟ
ଝୁଲି ଯାଉଥିବ କେତେ ॥୨॥

●●●

# କିଶଳୟ

ତୁମେ ସଜ ସକାଳର ଶାନ୍ତି
କୁସୁମିତ ଲତା ସୁବାସେ ପଖଳା
ମନ ଲାଖି-ବନ-ବୀଥି ॥୦॥

ଆଷାଢ଼ କଦମ୍ବ କେସରରେ ତୁମେ
ଆଶାର ମୋହନ ବଂଶୀ
ଧାରା ଶ୍ରାବଣର ଝରଝର ତାନେ
ତୁମ ଗୀତ ଆସେ ଭାସି
ଶରତ ସଞ୍ଜର ଗଙ୍ଗଶିଉଳିରୁ ଝରେ ତୁମ ହସ ମୋତି ॥୧॥

ଜୋଛନା ରାତିର ଝରୁ ଝହାଣିରେ
ଲେଖା ତୁମ ଯଶରାଶି
ନବକଳିକାର ମୋହନ ବିଳାସେ
ତୁମ ପ୍ରେମ ଥାଏ ମିଶି
ଭାଷା ନାହିଁ ମୋର ଗାଇବାକୁ ପ୍ରଭୁ ତୁମରି ମହିମା ଗୀତି ॥୨॥

ମନର କଳୁଷ ଧୋଇ ନେବା ପାଇଁ
ଏକା ସାହା ତୁମ ନାମ
ଘନ ହତାଶାର ଉଆଁସ ତିମିରେ
ତୁମେ ତ ଆଲୋକ ଧାମ ।
ତୁମେ ତ କରତା, ତୁମେ ତ କରଣି, ତୁମେ ସକଳ କୀରତି ॥୩॥

●●●

# ତୁମ ଜନ୍ମବାସରେ

ମାଆ ତୁମ ଜନ୍ମବାସରେ
କି ଦେବି ମାଆ ଗୋ କିବା ଅଛି ମୋର
ଏଇ ଶୁଭ ଅବକାଶରେ ।।୦।।
ଦୀପହୋଇ ମୁହିଁ ଜଳିଶିଖି ନାହିଁ
ମାଆ ତୁମ ପାଦତଳେ
ଧୂପ ହୋଇ କାହିଁ ଝରିଯିବା ପାଇଁ
ମନ ମୋ ବଳିନି ତିଳେ ।
ମନରେ ଆସୁନି ମାଆ ତୁମ ରୂପ,
କରି ହେଉନାହିଁ ତୁମ ନାମଜପ
ଯାହା ଅଛି ମୋର ଇଚ୍ଛା ହେଉନାହିଁ
ଦେବା ପାଇଁ ତୁମ ପାଶରେ ।।୧।।
ସଜଫୁଲ ନାହିଁ ସଜାଇ ଦେବାକୁ
ମାଆ ତୁମ ଦୁଇପାଦ
ଆଖି ଲୁହନାହିଁ ଧୋଇ ଦେବାପାଇଁ
ମନରୁ କଲୁଷ ମନ୍ଦ ।
ନାହିଁ ମୋର ଭାଷା, ନାହିଁ ମୋର ସୁର
ଗାଇବାକୁ ମାଆ ମହିମା ତୁମର
ବନ୍ଧା ମୁଁ ପଡ଼ିଛି ଜଗତ ଜଞ୍ଜାଳେ
ମାୟା, ମୋହ ଘୋର ତ୍ରାସରେ ।।୨।।
ଏତିକି ମାଗୁଣି ମାଗୁଛି ଆଜି ମୁଁ
ଚରଣ ତଳରେ ବସି
ଦୀନଦୁଃଖୀ ବୋଲି ଆଡ଼େଇ ଦେବନି
ଯାଉଛି ଦୁଃଖରେ ଭାସି ।
ଦୋଷ ମୋର ସବୁ କରିବ ମାଆ କ୍ଷମା,
କ୍ଷମାମୟୀ ନାହିଁ ତୁମରି ତୁଳନା
କରୁଣାକଣିକା ଊଣା କରିବନି
ଏଇ ଅଳି ମୋର ଶେଷରେ ।।୩।।

❀❀❀

(ଦିବ୍ୟଜନନୀ ଶ୍ରୀମା'ଙ୍କ ଜନ୍ମଦିନ ଫେବୃୟାରୀ ୨୧ ତାରିଖ ପାଇଁ ବିରଚିତ)

## ନଦୀର ଘାଟ

ବହୁ ବୁଲିବୁଲି ବାଟ ଭୁଲିଭୁଲି
ଶେଷରେ ପାଇଛି ବାଟ
ତୁମ ପାଦେ ମାଆ ମୋ ଜୀବନ ତରୀ
ଶେଷରେ ପାଇଛି ଘାଟ ॥୦॥

ସେ ପାଦର ନାହିଁ ମରତେ କଳନା
କମଳକୁସୁମ ନୋହିବ ତୁଳନା
ଆଶାଭରସାର ଆଲୋକମିନାର, ମରତର ବଇକୁଣ୍ଠ ॥୧॥

ମୋର ବୋଲି ମାଆ ଯାହା କିଛି ଅଛି
ସେ ସବୁ ତୁମର, ଏବେ ମୁଁ ବୁଝୁଛି
ଗଗନେପବନେ ଦିଗଦିଗନ୍ତରେ ତୁମର ଲୀଳା ପ୍ରକଟ ॥୨॥

●●●

## ୪୮୧ // ନବଚେତନା

# ଦିବ୍ୟ ଭାବନା

ଜୀବନ ବୃନ୍ଦାବନେ ମୋହନ ବଂଶୀ
ବଜାଇ ଦେବ ଦିବ୍ୟ ଜୀବନ ହସି ।
ଫୁଟିବ ତହିଁ କେତେ ବସନ୍ତଫୁଲ
କିଏ ବା ଦେବ ଆହା ସେ ଫୁଲ ମୂଲ ॥୧॥

ସେ ଫୁଲ ଶୋଭା ତିନିଭୁବନଭୁଲା
ସରି ନୋହିବେ ତା'ରେ ନନ୍ଦନଝରା
ବାସରେ ବଶ ହେବେ ସୁରକାମିନୀ
ଭୁଲି ବସିବେ ତାଙ୍କ ସ୍ୱର୍ଗ ସରଣୀ ॥୨॥

ଦିବ୍ୟଭାବନା ଆସି କରିବ ଲୀଳା
ଆସିବ ଧରାବୁକେ ମାହେନ୍ଦ୍ରବେଳା
ଦେବତା ଆଉ ସ୍ୱର୍ଗେ ରହିବେ ନାହିଁ
ଆସିବେ ସରାଗରେ ମରତ ଭୂଇଁ ॥୩॥

ଅହମିକାର ରାତି ଯିବଟି ପାହି
ବହିବ ମରତରେ ଚେତନା ନଈ
ସେ ନଈ ଧାରେଧାରେ ପ୍ରୀତି କଦମ୍ବ
ଆଣିବ ମରତରେ ସରଗଭାବ ॥୪॥

ହୋଇବ ଧରା ମଧୁ ସୋହାଗ ତୀର୍ଥ
ଭରିଯିବ ଜୀବନେ ଅନେକ ଅର୍ଥ
ସୁନ୍ଦର ହେବ ଦେହ, ଶୀତଳ ପ୍ରାଣ
ଲଳିତ ମନରାଜ୍ୟ କି ଶୋଭାବନ ॥୫॥

ଛଳନା କରପତ୍ର ଯୋଡ଼ି ପଳାଇ
ରହିବ ବହୁଦୂରେ କଳନା ନାହିଁ
ଅନ୍ଧାର ନାଶି ନବଚେତନା ଆସି
ଆଗାମୀ ଦିନେ ଯିବ ମଧୁବରଷି ॥୬॥

## ମଧୁମଳୟ

ମଳୟ ପବନ ପରଶେ
ହସି ଉଠିବ ମହୀ
ସଜ ଫୁଟାଫୁଲ ହସିବ
ମଧୁ ବରଷି ଦେଇ ॥୧॥
ଶୁଭ ଆଗମନୀ ଗୀତିକା
ବସି ପଞ୍ଚମ ତାନେ
କୋଇଲି ଗାଇବ ହରଷେ
ବନଲତା ବିତାନେ ॥୨॥
ବିଶ୍ୱ ପ୍ରାଣେ ପ୍ରାଣ ମିଶିବ
ବିଶ୍ୱମନରେ ମନ
ବିଶ୍ୱ ଜୀବନରେ ଆସିବ
ସେଇ ଶୁଭଲଗନ ॥୩॥
ହତାଶାର ମେଘ ଫାଟିବ
ଚନ୍ଦ ଉଠିବ ହସି
ମଣିଷ ମନରୁ ତୁଟିବ
ସ୍ୱାର୍ଥ କଲୁଷ ରାଶି ॥୪॥
ଚେତନାର ହେବ ବିକାଶ
ଧରା ହେବ ସରଗ
ଜନ ଜୀବନରେ ଭରିବ
ସରଗର ବିଭବ ॥୫॥
ମନ ରହୁ ଗୁରୁଚରଣେ
ଆଜି ଏଇ କାମନା
ପୂଜାଫୁଲ ହେଉ ଜୀବନ
ପୂରୁମନ ବାସନା ॥୬॥

●●●

# ରାଜରାଜେଶ୍ୱର

ଯାହା ପାଇଁ ସଜଫୁଲ ସାଜେ ପୂଜାଫୁଲ
ଧୂପବାସ ଯାହା ପାଇଁ ବାସ ସେ ଫୁଲର
ମୁଁ କି ଦେବି ଉପହାର ?
ଯାହା ମୁଁ ଦେଖୁଛି ସବୁ ତ ତାଙ୍କର ସିଏ ରାଜ ରାଜେଶ୍ୱର
ମୁଁ କି ଦେବି ଉପହାର ? ॥୧॥

ନୀଳ ସାଗରର ଲହରୀ ମାଳାରେ
ତାଙ୍କ ଗୀତି ବାଜେ ଜଳ ତରଙ୍ଗରେ
ଶୀତଳ ପବନ କାନେ କହିଯାଏ କଳନା ନାହିଁ ତାଙ୍କର ।
ମୁଁ କି ଦେବି ଉପହାର ? ॥୨॥

ଭାସେ ମେଘମାଳା ନୀଳ ଆକାଶରେ
ତାଙ୍କ ଯଶ ଗାଇ ହରଷ ମନରେ
ତାଙ୍କରି କରୁଣା ହୋଇ ନଦୀଧାର ଝରିଯାଏ ନିରନ୍ତର ।
ମୁଁ କି ଦେବି ଉପହାର ? ॥୩॥

ସିଏ ତ ସୂରୁଜ ମୁଁ ଯେ ରଶ୍ମି ରେଣୁ
ସିଏ ପରବତ ମୁଁ ଯେ ବାଲି ଅଣୁ
ତାଙ୍କରି ମହିମା ଗାଇବା ପାଇଁ କି ନାହିଁ ଶକତି ମୋହର ।
ମୁଁ କି ଦେବି ଉପହାର ? ॥୪॥

❀❀❀

# ମାଗେ ଶରଣ

ତୁମେ ନିଖିଳ ବନ୍ଦନୀୟ
ପ୍ରଭୁ ଶତ ପ୍ରଣିପାତ ନିଅ
ତୁମ ଚଲାପଥେ ହାତ ଧରି ମତେ
ଆଗକୁ ଚଲାଇ ନିଅ ।।୦।।

କରୁଣା ତୁମର ହୋଇ ଶତଧାର
ବହିଯାଏ ଦଶଦିଶ
ମହିମା ତୁମର ଅନନ୍ତ ଅପାର
କହି କେ କରିବ ଶେଷ ।
କେହି ନାହିଁ ଯାର ତୁମେ ତ ତାହାରେ ଢାଳିଦିଅ ବରାଭୟ ।।୧।।

ଜଗତ ଜଞ୍ଜାଳ ହତାଶା ଅନ୍ଧାରେ
ତୁମେ ତ ଆଲୋକ ରେଖା
ଜୀବନେ ଜୀବନେ ବିରାଜିତ ତୁମେ
ଅମଳିନ ଦୀପଶିଖା ।
ତୁମ ଲୀଳା ପ୍ରଭୁ ଗାଇବାକୁ ମୋର ଭାଷାମାନେ ପରାଜୟ ।।୨।।

ଚରାଚର ପ୍ରଭୁ ତୁମରି ମୂରତି
ଭିତରେ ବାହାରେ ତୁମେ
ତୁମେ ତ ସାକାର ପୁଣି ନିରାକାର
ବରଣୀୟ ଭବ ଭୂମେ
ଶରଣ ମାଗୁଛି ଚରଣ କମଳେ ଗାଇ ତୁମ ଜୟ ଜୟ ।।୩।।

●●●

# ଶତପ୍ରଣାମ

ତୁମେ ଥିଲ ଏକ    ହୋଇଲ ଅନେକ
ଆପଣାର ଇଚ୍ଛାବଳେ
ତୁମେ ତ ସାଧକ    ତୁମେ ତ ସାଧନା
ତୁମେ ସିଦ୍ଧି ମହୀତଳେ ॥୦॥

ତୁମେ ହେଲ ଗିରି    ଶ୍ୟାମବନ ଦରୀ
ତୁମେ ହେଲ ନଦୀଧାର
ତୁମେ ତରୁତୃଣ    ଗହନ କାନନ
ତୁମେ ନୀଳ ପାରାବାର
ତୁମେ ହେଲ ପ୍ରଭୁ    ଆଲୋକ ମିନାର
ସଂସାର ସାଗର କୂଳେ ॥୧॥

ବରଷାର ଧାରା    ହୋଇ ଝରିଗଲ
ତୁମେ ଏଇ ଧରା ଧାମେ
ରବି ଶଶୀତାରା    କିରଣ ସାଜିଲ
ନିଜେ ହଜି ନିଜ ପ୍ରେମେ
ସାତରଙ୍ଗ ଫୁଲ    ହୋଇ ଫୁଟିଗଲ
ବନ ଉପବନ କୋଳେ ॥୨॥

ଜଡ଼ରୁ ଜୀବନ    ଜୀବନରୁ ମନ
ସବୁ ତୁମ ରୂପାୟଣ
ଅତିମାନବର    ଆଗମନୀ ଗୀତେ
ତୁମେ ବୀଣା ତୁମେ ତାନ
ତୁମେ ଚରାଚର    ପରମ ଈଶ୍ୱର
ତୁମକୁ ପ୍ରଣାମ କରେ ॥୩॥

●●●

## ନବପ୍ରଭାତ

ତୁମରି ଆସିବା ବାଟକୁ ଚାହିଁଛି
ମନେ କେତେ ଆଶା ନେଇ
ଅନୁପମ ତୁମେ ଏତିକି ମାଗୁଣି
ନିରାଶ କରିବ ନାହିଁ ।।୧।।

ଧୀର ପବନର ଲଳିତ ପରଶ
ଶିହରଣ ଆଣେ ଦେହେ
ସଜଫୁଟା ଫୁଲ ବନେ ଉପବନେ
କାନେ କେତେ କଥା କହେ ।।୨।।

ମନଲାଖି ଫୁଲେ ମାଳା ସଜାଡ଼ିଛି
ତୁମକୁ ମୁଁ ଦେବି ବୋଲି
ମନୋରମ ତୁମ ଧୀର ଚାହାଣିରେ
ଦୁଃଖ ମୋର ଯିବି ଭୁଲି ।।୩।।

ମନ୍ଦମନ୍ଦ ତୁମ ସୁନ୍ଦର ଚାଲିରେ
ଫୁଟୁଥିବ ନୀଳକଇଁ
ଯେତେ ଦେଖୁଥିଲେ ନୂଆ ଦିଶୁଥିବ
ଶୋଭାର ଉପମା ନାହିଁ ।।୪।।

ପିନ୍ଧାବାସ ତୁମ ଝୁଲିଯାଉଥିବ
ଅଳସ ପବନେ ଧୀରେ
ମିଠାମିଠା ହସ ଫୁଟି ପଡୁଥିବ
ନରମ ଅଧର ଧାରେ ।।୫।।

ମାନବ ଜନମ ହୋଇବ ସଫଳ
ତୁମ ରୂପ ଶୋଭା ଚାହିଁ
ଏ ଜୀବନେ ମୋର ଆସିବ ସେଦିନ
ନବୀନ ସୂରୁଯ ଉଇଁ ।।୬।।

●●●

# ନିବେଦନ

ମୋ' ଜୀବନ ଗୋଧୂଳି ଲଗନରେ
ପ୍ରଭୁ ତୁମ ପ୍ରେମ ହୋଇ ପୂର୍ଣ୍ଣ ଶଶୀ
ବିରାଜିବ ପ୍ରାଚୀ ଗଗନରେ ॥୦॥

ହତାଶା ଅନ୍ଧାର ଯିବ ଅପସରି
ପଡ଼ିଲେ ଜୋଛନା ଆକାଶରୁ ଝରି
ଶାନ୍ତି ସୁଧାଧାରା ବହିଯିବ ପରା ମୋ'
ମନ ଗହନେ ଗୋପନରେ ॥୧॥

ନୂତନ ଚେତନା ନୂତନ ଭାବନା
ଆସିବ ପାଇଲେ ତୁମରି କରୁଣା
ତୁମେ ହେବ ପ୍ରଭୁ ମୋ' ରଥେ ସାରଥି,
ସମର ଭୂଇଁରେ ମରମରେ ॥୨॥

ଜୀବନେ ଆସିବ ନୂଆ ଅନୁଭବ
ସରି କିବା ତାରେ ଅଳକା ବିଭବ
ନିରନ୍ତର ତୁମ ବିମୋହନ ଛବି
ନାଚୁଥିବ ମନ ନୟନରେ ॥୩॥

# ଦେବ ମୁହୂର୍ତ୍ତ

ଆସିଏବେ ଉପଗତ ସେ ଦେବ ମୁହୂର୍ତ୍ତ
ଜଡ଼ତାରେ ଯବନିକା ଟାଣି, ଗାଇଗୀତ ନୂଆ ଆଗମନୀ,
ଚେତନାର ଦୀପଜାଳି, ଦିଗ୍‌ବଳୟ କରି ଉନ୍ମୋଚିତ
ମୃଦୁହାସେ ଢାଳିଢାଳି ସୁଧାସଞ୍ଜୀବନୀ ॥୧॥

ଶପଥ କରିଛି ଅନୁମନ୍ତା ପାଦ ଛୁଇଁ ନୂଆ କରି ଗଢ଼ିବ ଏ ଧରା,
ଫୁଟାଇବ ମଧୁଗୀତି ସୁରେସୁରେ କମଳିନୀ ପାଖୁଡ଼ା ପାଖୁଡ଼ା,
ସମୁଦ୍ରର ଲହରୀ ପରଶି, ସିକତାରେ ଧୀର ପଦଚଳି
ଜୀବନରୁ ଦାବାନଳ ଲିଭାଇବ, ସିଞ୍ଚିସିଞ୍ଚି ପ୍ରୀତିସୁଧା ବାରି ॥୨॥

ଧରିତ୍ରୀରେ ସ୍ୱର୍ଗସୁଧା ଅବତରି ହେବ ଉପଗତ,
ଅଳକା ଆସିବ ନଇଁ ସବୁ ହେବ ସ୍ନିଗ୍ଧ ସୁରଭିତ,
ଭ୍ରାତୃତ୍ୱର ଅତୁଟ ବନ୍ଧନେ, ବିଶ୍ୱପ୍ରାଣ ହେବ ମଧୁସିକ୍ତ
ମମତା କଦମ୍ବକଢ଼ି କେତେ ଫୁଟିଯିବ,ଚରାଚର କରି ପୁଲକିତ ॥୩॥

ହିଂସା, ଦ୍ୱେଷ, ଅହମିକା ପ୍ରାଚୀର ପଡ଼ିବ ଭାଙ୍ଗି
ବିଶ୍ୱପ୍ରେମ ନିର୍ଝରିଣୀ ଝରିଯିବ ହୋଇଣ ସୁଭାଙ୍ଗୀ,
ଇଚ୍ଛାମୟୀ ମା'ଙ୍କ ଇଚ୍ଛାରେ ସବୁ କିଛି ହେବ ସଙ୍ଗଠିତ,
ଅତିମାନସର ଜ୍ୟୋତି ଚରାଚରେ ହେବ ବିଚ୍ଛୁରିତ ॥୪॥

ସନ୍ତାନର କଲ୍ୟାଣକାରିଣୀ ଜ୍ଞାନମୟୀ ସେ କରୁଣାମୟୀ,
ସୁଖେଦୁଃଖେ ଚିର ସାଥୀ ସତ୍ୟମୟୀ ସେ ଚୈତନ୍ୟମୟୀ,
ତାଙ୍କ ପାଦେ ନତ ଶିରେ ଆଜି ମୁହିଁ କରୁଛି ପ୍ରାର୍ଥନା,
କ୍ଷମାମୟୀ ଜନନୀ ସେ ନାହିଁ ତାଙ୍କ କଳନା ତୁଳନା ॥୫॥

•••

# ଏତିକି ଭିକ୍ଷା

ମାଆର ମମତା ହୃଦୟରେ ବହି

ଆସିଲ ତମେ ଏ ମରତ ଧାମେ

ଦୁରୂହ କାର୍ଯ୍ୟ ସମାପନ ଲାଗି

ସାଧନା ତମର ଦିବସ ଯାମେ ॥୧॥

ଗୋଟିଏ ଦେହରେ ନଥିଲେ ମାଆଗୋ

କୋଟିକୋଟି ଦେହ ଯାଇଛ ହୋଇ

ସାଗର-ଭୂଧର-କାନନ-କେଦାର

ପ୍ରଣାମ କରନ୍ତି ଚରଣ ଛୁଇଁ ॥୨॥

କ୍ରିୟାଧାରା ତୁମ ଅବିରତ ଭାବେ

ଚଳିଛି ମାଆଗୋ ଦ୍ୱିଗୁଣ ବେଗେ

ଆଗାମୀ ଦିନରେ ଚିର ବସନ୍ତର

ମଳୟ ବହିବ ଅବନୀଭାଗେ ॥୩॥

କନକ ବରଣୀ ଉଷାର ଆଲୋକେ

ଦଶ ଦିଗ ହସି କରିବେ ସ୍ନାନ

ପଲକେ ପଲକେ ଅସୀମ ପୁଲକେ

ଜଗତ ଜୀବନ ହୋଇବ ପୂର୍ଣ୍ଣ ॥୪॥

ଯିବ ନାହିଁ ଧରା ସରଗ ଦୁଆରେ
ସରଗ ଆସିବ ଧରାରେ ନଇଁ
ଅତିମାନସର ବିମଳ ବିଭାରେ
ଝଲସି ହସିବ ମରତ ଭୂଇଁ ॥୫॥

ରୂପାନ୍ତର ଯୋଗେ ଜ୍ଞାନ ରହିବ
ରହିବ କର୍ମ, ଭକ୍ତିଧାରା
ଜ୍ଞାନ, କର୍ମ, ଆଉ ଭକ୍ତି ମିଶିବେ
ଜୀବନ ହୋଇବ ପୀୟୂଷ ଭରା ॥୬॥

ଚରାଚର ପୁଣି ନଭ ଅନ୍ତରୀକ୍ଷ
ସବୁକୁ ନେଇ ଏ ଜଗତ ଗଢ଼ା
ଅତିମାନବର ଆଗମନ ପାଇଁ
ତୁମରି କରୁଣା ଆଶିଷ ଲୋଡ଼ା ॥୭॥

ଏ ବିରାଟ କାର୍ଯ୍ୟେ ବଡ଼ ନ ହେଲେ ବି
ସାନ କାମ ପାଇଁ ରଖୁଛି ଆଶା
ପୂରୁ ମୋର ଆଶା ଏତିକି ମାଗୁଣି
ତୁମରି ଚରଣେ ଏତିକି ଭିକ୍ଷା ॥୮॥

•••

# ମାତୃକରୁଣା

ନିଃସଙ୍ଗଜୀବନ ଯାତ୍ରା ଧରିତ୍ରୀ ବୁକୁରେ
ଆଣେ ପ୍ରତି ପାଦେପାଦେ ପ୍ରାଣେ ବ୍ୟାକୁଳତା ।
ପୁଞ୍ଜିଭୂତ ଦୀର୍ଘଶ୍ୱାସ ବ୍ୟଥା ହାହାକାରେ
ଜୀବନର ଅନ୍ୟନାମ ବିରାଟ ଶୂନ୍ୟତା ॥୧॥

ତଥାପି ଶୁଭୁଛି ଦୂରେ ଆଶା ବୀଣାତାନ
ମନକୁ ଛୁଉଁଛି କାହା ମମତାର ମଧୁ
କେଉଁଠାରେ ବାଜୁଅଛି ବୀଣା ସେ ମୋହନ
ପରକୁ ଯେ କରିନିଏ ଆପଣାର ବନ୍ଧୁ ॥୨॥

କିଏ ବସି ଦୂର ଦେଶେ ନୀଳାଭ ଦିଗନ୍ତେ
ମୃଦୁମୃଦୁ ହସିକରେ କଲ୍ୟାଣ କାମନା
ଅନୁକ୍ଷଣ କର୍ମରତ ସୃଷ୍ଟିର ନିମନ୍ତେ
ଆଉ କିଛି ନୁହେଁ ସେ ତ ମାଆଙ୍କ କରୁଣା ॥୩॥

ସଂସାରର ସରସୀରେ ଶ୍ୱେତ ଶତଦଳ
ଲାବଣ୍ୟମୟ-ଲଳିତ-ପ୍ରୀତିର ପ୍ରତୀକ
ଭରିଦିଏ ଆଶ୍ୱାସନା-ବିଶ୍ୱାସ ବିମଳ
କରିବାକୁ ବିଶ୍ୱଜନ ଜୀବନ ସାର୍ଥକ ॥୪॥

ଶୀତରେ ଶୀର୍ଣ୍ଣ ଧରିତ୍ରୀ କମ୍ପେ ଥରହର
ରିକ୍ତ ଆଉ ରୁକ୍ଷ ଏଇ ପ୍ରକୃତି ବିଜନ
ତିକ୍ତ ଓ ବିଷାକ୍ତ ପୁଣି ବିଷାଦେ ଜର୍ଜର
ଦୀର୍ଘଶ୍ୱାସେ ବୁକୁ ତା'ର ବ୍ୟଥିତ ବିଦୀର୍ଣ୍ଣ ।।୫।।

ମାଆର କରୁଣା ଦେବ ଅମୃତ ପରଶ
ଭରିଯିବ ଦିଗେ ଦିଗେ ଜଡ଼ରେ ଜୀବନ
ଶୀତ ଅନ୍ତେ ଆସିବରେ ବାସନ୍ତୀ ବିଳାସ
ରାତ୍ରୀ ଶେଷେ ଦିବାକର ଦେବେ ଦରଶନ ।।୬।।

ବନବୀଥି ଧାରେଧାରେ ଆସି ଶ୍ୟାମଳିମା
ହସିବ ମୃଦୁମୋହନ ଶୋଭା ଅନୁପମ
ବସନ୍ତକୁସୁମ ବାସେ ହଜିବ ମ୍ଳାନିମା
ମରତେ ରଚିବ ରୁଚି-ରୁଚିର ନନ୍ଦନ ।।୭।।

ମାତୃକରୁଣାରେ ଭରିଯିବ ଉଷାଲୋକ
ବରଣୀୟ ପରିବେଶ ଉଦାର ଗମ୍ଭୀର
ଜୀବନେ ଭରିବ ସତ୍ୟ ଶାନ୍ତିର ପୁଲକ
ମାତୃକରୁଣାର ଆହା ନାହିଁ ପଟାନ୍ତର ।।୮।।

●●●

# ଜଗତଜନନୀ

ତୁମ ଚରଣେ ଶରଣ ନେଲି ଆଜି ମାଆ
ମନା ନାହିଁ ଯାହା ଇଚ୍ଛା କର ତୁମେ ତାହା
ମନ ମୋ କହୁଛି ବିପଦର ଜଳେ
ବୁଡ଼ିବନି ଆଉ ଜୀବନ ନାହା ।।୦।।

କାହିଁଯିବି ମୁହିଁ ବଦରିକା ଧାମ
ତୁମ ପାଦ ତଳେ ମୋ ଜୀବନ ଧନ୍ୟ
ବରଷା ବତାସି ଆସୁ ଯାହା ଯେତେ
ଜପୁଥିବି ତୁମ ନାଆଁ ।।୧।।

ମାଆ, ମହେଶ୍ୱରୀ ଅଗତିର ଗତି
ମହାକାଳୀ, ମହାଲକ୍ଷ୍ମୀ, ସରସ୍ୱତୀ
ସତ୍ୟମୟୀ ତୁମେ ଆନନ୍ଦମୟୀ ଗୋ !
ବିଜ୍ଞାନମୟୀ ମାଆ ।।୨।।

ମହିମା ଗାଇବି ଦିଅ ହେ ଶକତି
ଧୂପଟିଏ କର ଏତିକି ମିନତି
ନବଚେତନାର ପରଶରେ ଆସୁ
ଜୀବନରେ ଉଷା ନୂଆ ।।୩।।

•••

# ଲଳିତଛନ୍ଦ

ଅତିମାନସର  ଅବତାର ତୁମେ
ଚରଣ ତୁମର ବନ୍ଦେ
ଗାଏ ତୁମଗୀତି ଏ ବିଶ୍ୱଭାରତୀ
ଲଳିତ ମଧୁର ଛନ୍ଦେ ॥୦॥

ଧୂଳିର ଏ ଧରା  କରିବାକୁ ପରା
ଦେବତା ଲୀଳା ନଗରୀ
ନବଚେତନାର ଆଲୋକ କୁଆର
ଆଣିଛ ସାଧନା କରି ।
ଅବଚେତନାର ରୁଦ୍ଧ ଦୁଆର ଭାଙ୍ଗିଦେଇଅଛ ତୁମ୍ଭେ ॥୧॥

ବ୍ରହ୍ମସତ୍ୟ ପୁଣି ସତ୍ୟ ଏ ଜଗତ
ଜୀବନେ ରହିଛି ଅର୍ଥ
ଆତ୍ମଚେତନାର ବିକାଶ ପାଇଁକି
ଜୀବନ ଯେ ମହାତୀର୍ଥ
ଜୀବନ ହୋଇବ ଶାନ୍ତ ମଧୁର ଦିବ୍ୟ ଚନ୍ଦନଗନ୍ଧେ ॥୨॥

•••

# ଦିବ୍ୟଚେତନା

ମହାଯୋଗୀ ତୁମେ ଶ୍ରୀଅରବିନ୍ଦ
ଚରଣ ତୁମର ବନ୍ଦେ
ଭଗୀରଥ ସାଜି ଅତି ମାନସର
ଗଙ୍ଗା ଆଣିଛ ଭବେ ।।୦।।

ପ୍ରୟାସ ତୁମର ମହାମହୀୟାନ
ସାଧନା ତୁମର ଚିର ଅମଳିନ
ଅବଚେତନାର ରୁଦ୍ଧ ଦୁଆର ଭାଙ୍ଗିଛ ଆପଣା ସାଧେ ।।୧।।

ତୁମ ସାଧନାରେ ନିହିତ ଶକତି
ପୂରଣ କରିବ ମାନବ ପ୍ରଗତି
ଏହି ମାଟିହେବ ଦେବ ଲୀଳାଭୂମି ପୀୟୂଷ ପ୍ରବାହଛନ୍ଦେ ।।୨।।

ହେବ ଚେତନାର ବିମଳ ବିକାଶ
କଳୁଷ କାଳିମା ହୋଇଯିବ ନାଶ
ମୁକତି, ଆଲୋକ ଆଉ ଅମରତ୍ୱ ଆସିବ ମାନବ ଭାଗ୍ୟେ ।।୩।।

ନୂତନ ଉଷାର ଆଗମନୀ ଗୀତି
ବାଜିବ ଧରାରେ ଭରି ଶୁଭ ଶାନ୍ତି
ସେଦିନ ଜୀବନ ହେବ ସୁବାସିତ ଚିର ମଳୟର ଛନ୍ଦେ ।।୪।।

●●●

## ସୁନୀଳ ସିନ୍ଧୁ

ମନକର ନାମ ଜପ,  ମାଆ ମାଆ ଡାକରେ
ସିଏ ତ ସଜ କମଳ ଭବ ପାପ ପଙ୍କରେ ॥୦॥

ସିଏ ମାତା ସିଏ ଗୁରୁ  ତା' ମହିମା ମହାମେରୁ
ଗତି ମୁକତି ଦାୟିନୀ ତା' ଯଶ ଅନେକରେ ॥୧॥

ଶୁଭ ଆଶିଷ ଦାୟିନୀ  ସିଏ ଜଗତ ଜନନୀ
ତା'ର ପାଦ ଯୁଗଳରେ ସଦା ଧ୍ୟାନ ରଖରେ ॥୨॥

ବିପଦରେ ସାହା ସିଏ  ସ୍ନେହମୟୀ ମାଆ ସିଏ
ତା' ଆଶିଷେ ପୂରିଯିବ ଜୀବନ ପୁଲକରେ ॥୩॥

ସେ ନାମରେ ଅଛି ମଧୁ  କୃପାର ସୁନୀଳ ସିନ୍ଧୁ
ଜପିଲେ ସେ ନାମ ଆହା ତୁଟିଯିବ ଦୁଃଖରେ ॥୪॥

●●●

# ସ୍ୱର୍ଗ ଆସିବ ନଇଁ

ସୂର୍ଯ୍ୟ ଆସୁଛି ଧରିତ୍ରୀରେ ନିତି ବଜାଇ ମୋହନ ବେଣୁ
ବିକଶିତ ଏଇ କୁସୁମ କୁଞ୍ଜେ ଶୁଭୁଛି ଅଳିର ଗୁଞ୍ଜନ ଗୁଣୁଗୁଣୁ
ମଧୁ ମଳୟରେ ପୁଷ୍ପ ସୁରଭି ସଞ୍ଚରିଯାଏ ଧୀରେ
ବିହଙ୍ଗ କଣ୍ଠୁ ଲଳିତ କୂଜନ ଝରିଝରିଯାଏ ବାରେ
ସବୁ କଥା ଥିଲା କାଲି
ଆଜି ବି ସେପରି ରହିଛି, ପ୍ରକୃତି ନିଜକୁ ଯାଇନି ଭୁଲି ॥୧॥

ମଣିଷ କିନ୍ତୁ ଭୁଲି ଯାଇଅଛି ଆପଣାର ପରିଚୟ
ହିଂସା, ଛଳନା, ଘୃଣା, ପ୍ରତାରଣା କରିଅଛି ତାକୁ ଜୟ
ମୁକ୍ତ କଣ୍ଠରେ ଗାଉନାହିଁ ସିଏ ମାନବିକତାର ଗାନ
ନିଜକୁ ମଣିଛି ସବୁବେଳେ ବଡ଼ ଆନକୁ ମଣିଛି ସାନ ।
ବଦଳି ଯାଇଛି ବେଳ
ମଣିଷ ମୁଖର ସରଳ ହସଟି ଆଜି ଗଗନର ଫୁଲ ॥୨॥

ଆନ୍ତରିକତାର ସ୍ନିଗ୍ଧପରଶ କିଏ ହରି ନେଲା କାହିଁ ।
ଈର୍ଷାବିଷରେ ମଣିଷର ମନ ଜର୍ଜରିତରେ ଭାଇ !
ବନ୍ଧୁର ପଥେ ଚଳାଇ ନେବାରେ ଯିଏ ତ ସିଦ୍ଧହସ୍ତ
ବନ୍ଧୁ ଆଜିର ବୋଲାଉଛି ସିଏ ଛଳନାରେ ଅଭିଷିକ୍ତ ।
ତଥାପି ରହିଛି ଆଶା
ନୂତନ ଉଷାର ଆଲୋକ ପରଶେ ପାହିଯିବ ଅମା ନିଶା ॥୩॥

ଶୁଭିଲାଣି ଦୂରେ ଆଶାର ସଙ୍ଗୀତ ହେବାନି ହତାଶ କ୍ଲାନ୍ତ
ମୃଦୁମୃଦୁ ହସେ ପୁଣି ଲୁଚିବସେ ଦିବ୍ୟଜୀବନ ଶାନ୍ତ
ସଚେତନ ହେଲେ, ମାନବ ମାନସେ ଦିଶିବ ସେ ହସ ସ୍ୱଚ୍ଛ
ସାରା ଜଗତର କଲ୍ୟାଣକାମୀ ସିଏତ ଆନନ୍ଦ ଉତ୍ସ
ସ୍ୱର୍ଗ ଆସିବ ନଇଁ ।
ସୁଧା ସଞ୍ଜିବନୀ ପ୍ରବାହ ପରଶେ ହସିବ ମରତ ଭୂଇଁ ।।୪।।

ମାନବିକତାର ଶୁଭ ସଉରଭେ ଜୀବନର ଉପବନ
ସୁରଭିତ ହେବ, ସୁଲଳିତ ହେବ, ମଧୁଭରା ଅନୁପମ ।
ଆସିବ ଆଲୋକ ପୁଣ୍ୟପ୍ଲାବନ ଗଗନ ପବନ ଭରି
ନୂଆ ଛନ୍ଦର ଅଭିଷେକ ପାଇଁ ବାଜିବ ନବୀନ ଭେରୀ
ପୁଲକି ଉଠିବ ପ୍ରାଣ
ନୂତନ ସୂର୍ଯ୍ୟ ସ୍ୱର୍ଣ୍ଣକିରଣେ ଆସିବ ନୂତନ ଦିନ ।।୫।।

•••

# ତ୍ରିବେଣୀ ତୀର୍ଥ

ସାଧନା ତୁମର ଚିର ଅମଳିନ
ତୁମେ ପରା ମହାଯୋଗୀ
ଅତିମାନସର  ଚେତନା ଆଣିଛ
ଅବଚେତନାକୁ ଭାଙ୍ଗି ॥୦॥

ଜ୍ଞାନ-ଭକ୍ତି-କର୍ମ ତ୍ରିବେଣୀ ସଙ୍ଗମ
ତୁମରି ଯୋଗରେ ଅଛି
ପୂର୍ଣ୍ଣ ଯୋଗ ସିଏ ଆଗାମୀ ଦିନରେ
ବିଶ୍ୱ ତାକୁ ନେବ ବାଛି ।
ବିଶ୍ୱ ଜୀବନ ଦୁଃଖ ହରଣେ
ସିଏ ପରା ମହୌଷଧି ॥୧॥

ସ୍ୱର୍ଗ ଆସିବ ଧରା କୋଳେନଇଁ
ହସିହସି ସେତେବେଳେ
ଏ ଧରଣୀ ସାଜି ଦେବଲୀଳା ଭୂଇଁ
ନାଚିବ ଆନନ୍ଦ ଭୋଳେ
ଯୋଡ଼ି ବେନି ପାଣି ମାଗୁଛି ମାଗୁଣି
ତୁମରି ଆଶିଷ ଲାଗି ॥୨॥

●●●

# ନବସୌରଭ

ତୁମେ ମୋ ପ୍ରଭୁ ତୁମେ ମୋ ସବୁ ମୋ ପ୍ରାଣ ଅଧୀଶ୍ୱର
ଶରଣ ତୁମ ଚରଣ ତଳେ କରୁଣା ପାରାବାର ॥୧॥

ନୀଳ ଆକାଶେ ତୁମେ ନୀଳିମା ପୁଣି ପୂର୍ଣ୍ଣିମା-ଚନ୍ଦ
ସୁନ୍ଦର ଶୋଭା ମଧୁର ବିଭା ଲଳିତ ହସଛନ୍ଦ ॥୨॥

ତୁମେ ସାଗର ନୀଳ ଲହରୀ ସୁଷମ ମୃଦୁ ହସ
ଦିଗବାରେଣି  ଆଲୋକ ରେଖା ନାବିକ ମନ ତୋଷ ॥୩॥

ତୁମେ ସରଗ ପବିତ୍ର ତୀର୍ଥ ଶୀତଳ ଛଣା ସୁଧା
ନନ୍ଦନବନ ସୁବାସ ତୁମେ ତୁମେ ଅଳକାନନ୍ଦା ॥୪॥

ତୁମେ ମଳୟ ମଧୁବଳୟ ସୁନ୍ଦର ମଧୁମାସ
ତୁମେ କୁସୁମ ଶୋଭା ଅସୀମଅଧୀର ଦରହାସ ॥୫॥

ତୁମେ ହିଁ ଆଶା ତୁମେ ଭରସା ତୁମେ ସକଳ ସିଦ୍ଧି
ତୁମେ ଜୀବର ଜୀବନରେଖା ତୁମେ ଲାବଣ୍ୟନିଧି ॥୬॥

ପ୍ରଣାମ କରେ  ଚରଣ ତଳେ ତୁମେ ପରମାନନ୍ଦ
ଦିଅ ଅଭୟ  ହୁଅ ସଦୟ ପ୍ରଭୁ ଶ୍ରୀଅରବିନ୍ଦ ॥୭॥

•••

# ହୃଦୟର ବ୍ୟଥା

ହୃଦୟର ବ୍ୟଥା କହୁଛି ତୁମକୁ
ତୁମେ ଯେଣୁ ପ୍ରିୟତମ
ଜୀବନର ଚିନ୍ତା ଦେଉଛି ତମକୁ
ତୁମେ ତ ଅମୃତ ପ୍ରେମ ॥୦॥

ନିରାଶାରେ ଆଶା ଝଲସି ଉଠୁଛି
ତୁମରି ମହିମା ବଳେ
ଦିଗହରା ମୋର ବୋଇତ ଲାଗିଛି
ତୁମ ପାଦ ସିନ୍ଧୁ କୂଳେ ।
କେଉଁ ନାମ ଧରି ଡାକିବି ତୁମକୁ ତୁମେ ଯେଣୁ ସର୍ବନାମ ॥୧॥

ତୁମରି କରୁଣା ସାହସ ଦେଉଛି
ଆଗକୁ ଚାଲିବା ପାଇଁ
ଖୋଜିବାକୁ ହେବ ଜୀବନର ମୂଳ
ଯାଉଅଛି କାନେ କହି ।
ଅତିମାନସର ଅବତାର, ତୁମ ଚରଣେ କୋଟି ପ୍ରଣାମ ॥୨॥

❀❀❀

# ଆଶାକୁସୁମ

ହୃଦୟ ବେଦୀରେ ବିଞ୍ଚିକେ ଦେଇଛି
ଆଶାର କୁସୁମରାଶି
ରହିଁ ମୁଁ ବସିଛି ପାହିଯିବ ବୋଲି
ଅମା ଅନ୍ଧକାର ନିଶି ॥୧॥

ମନର କାନନ ଅରୁଣ କିରଣେ
ଦିଶୁଥିବ ଝଲମଲ
ଚଲାପଥ ଧାରେ ଫୁଟି ହସୁଥିବ
ନାନା ଜାତି କେତେ ଫୁଲ ॥୨॥

ପରାଣ କୁଞ୍ଜରେ ସଜ ସକାଳରେ
ମୃଦୁ ସମୀରଣ ଆସି
ବିଜନ ବନାନୀ ଚହଲାଇ ଦେବ
ଭରି ପ୍ରୀତି ସୁଧାରାଶି ॥୩॥

ଅନ୍ଧାର ସେ ପାରେ ଦିଶିବ ଏଥର
ଉଜ୍ଜ୍ୱଳ ଆଲୋକ ରେଖା
ସେହି ଆଲୋକରେ ଭୁବନ ମୋହନ
ରୂପ ବିଭା ଯିବ ଦେଖା ॥୪॥

ତାଙ୍କର ମହିମା ନାହିଁ ତା'ର ସୀମା
ଭାଷାରେ ନ ହେବ କହି
ସେଇ ଗୁରୁଦେବ ଚରଣରେ ଢାଳେ
ଆଭୂମ ପ୍ରଣାମ ମୁହିଁ ॥୫॥

●●●

# ସବୁ ତୁମ ଦାନ

ଯାହା ଅଛି ମୋର ବୋଲି
ସବୁ ତୁମ ଦାନ ହେ ମହାମହିମ
ତୁମେ ତା'ର ଅଧିକାରୀ ॥୦॥

ତୁଣ୍ଡେ ମୋର ଥାଉ ସଦା ତୁମ ନାମ
ହାତେ ମୋର ରହୁ ସଦା ତୁମ କାମ
ମୋ' ଅନ୍ତରେ ନାଚୁ ତୁମ ପାଇଁ
ପ୍ରୀତି ସୁନୀଳ ଲହରୀ ॥୧॥

ଭାବି ତୁମ କଥା ଗାଇ ତୁମ ଯଶ
ଆନନ୍ଦରେ ବିତୁ ରଜନୀ ଦିବସ
ଚଲାପଥେ ମୋର ଆସୁ ନବ ଉଷା,
ଅନ୍ଧକାର ଯାଉ ଚଳି ॥୨॥

❀❀❀

## ମଧୁମହକ

ତୁମେ ବିଶ୍ୱ କଲ୍ୟାଣ ପାଇଁ
ଅତିମାନସର ଚେତନା ଆଣିଛ
ଭବେ ଭଗୀରଥ ହୋଇ ।।୧।।

ନବ ଚେତନାର ମଧୁର ମହକ
ଭରିବ ମାନବ ମାନସ ମୂଳକ ।
ସେହି କିରଣରେ ଝଲସି ହସିବ ନଦୀ-ବନ-ଗିରି-ଭୂଇଁ ।।୨।।

ଅତିମାନବର ଲୀଳା ନିକେତନ
ଆଗାମୀ ଦିନରେ ହେବ ଧରାଧାମ
ଧୂଳିର ଧରାରେ ମୃଦୁମୃଦୁ ହସି ସରଗ ଆସିବ ନଇଁ ।।୩।।

# ନବ ଦିଗନ୍ତ

ଚରଣ କମଳେ ତବ ଅଶେଷ ପ୍ରଣତି ଢାଳେ
ହରିବାକୁ ଦୁଃଖ ମୋର ଆକୁଳ ମିନତି କରେ ॥୦॥

ହତାଶାରେ ତୁମେ ଆଶା ସୁଲଳିତ ତୁମ ଭାଷା
ତୁମ ମହିମା ଅସୀମ
କବିବଚନକୁ ବଳେ ॥୧॥

ତୁମେ ସତ୍ୟ, ତୁମେ ଶାନ୍ତି ମଧୁମୟ ଦିବ୍ୟଜ୍ୟୋତି
ତୁମ କରୁଣାରେ ପ୍ରଭୁ
ପଙ୍ଗୁ ଲଂଘେ ଗିରି ହେଳେ ॥୨॥

ଚାତକେ ଧାରାଶ୍ରାବଣ ଚକୋରେ ପୂର୍ଣ୍ଣିମା ଜହ୍ନ
ତୁମେ ଆଲୋକ ମିନାର
ସଂସାର ସାଗର କୂଳେ ॥୩॥

ତୁମେ ବିପଦରେ ବନ୍ଧୁ କରୁଣା ସୁନୀଳ ସିନ୍ଧୁ
ବେଦରେ ପ୍ରଣବ ତୁମେ,
ପ୍ରଭା ଶଶୀ ଦିବାକରେ ॥୪॥

•••

# ପ୍ରଭାତ କାକଳି

ଅମାନିଶି ପାହିଆସେ, ଫୁଟିଲାଣି ପ୍ରଭାତୀ ତାରକା
ଦୂର ଦିଗ୍‌ବଳୟେ ନୂତନ ସକାଳ ପାଇଁ ବାଜେ ଆଗମନୀ
ଶାନ୍ତ ହେବ ଆଗାମୀର ଦିନ, ହେବ ମଧୁମଖା
କିଏ ଆସି କାନେ କାନେ ଦେଇଯାଏ ଏ ଶୁଭ ବାରତା ॥୧॥

ଶୋଷଣକଷଣଯୁକ୍ତ ବିଷାଦେ ଜର୍ଜର
ଅଶାନ୍ତି ଦୁଃଖଯନ୍ତ୍ରଣା ଅକୁହା ବେଦନା
ଆଜି ଭାଙ୍ଗେ ମେରୁହାଡ଼, ପାଦ ଥରଥର
ସମସ୍ତେ ବିବ୍ରତ ଏଠି କିଏ କା'ରେ ଦେବ ବା ସାନ୍ତ୍ୱନା ॥୨॥

ଅନତି ଦୂରେ ଶୁଭୁଛି ପ୍ରଭାତ କାକଳି
ହତାଶାରେ ଆସିଲାଣି ଆଶା ରଶ୍ମି-ରେଖା
ପବନର ଝୁଲଣାରେ ଅସେ ଝୁଲିଝୁଲି
ଚେତନାର ମଧୁବାସ, ଜାଳି ଶୁଭଶିଖା ॥୩॥

ସୁକୁମାର ସୁଲଳିତ ଧ୍ୱନି ବୀଣାତାରେ
ତୋଳି, କିଏ ଆସେ ଆହା ଧୀର ପଦଚାଳି
ମରୁବୁକେ ସରଜିବ ସୌମ୍ୟ ଚୈତ୍ରରଥ
ମା'ଙ୍କ କରୁଣାଧାରା ସିଏ ତା'ର ଭଳି ॥୪॥

ମଧୁମୟୀ ସେ କଲ୍ୟାଣୀ ଜଗତଜନନୀ
ମହେଶ୍ୱରୀ, ମହାକାଳୀ, ମହାଲକ୍ଷ୍ମୀ ସିଏ
ମହାସରସ୍ୱତୀ ଦେବୀ ଆଶିଷ ଦାୟିନୀ
ଚରଣ କମଳେ ତାଙ୍କ ମଥା ମୁଁ ନୁଆଁଏ ॥୫॥

# ସୁବର୍ଣ୍ଣ ସୂର୍ଯ୍ୟ

ସୁବର୍ଣ୍ଣ ସୂର୍ଯ୍ୟ ବିଶ୍ୱ ଗଗନେ
ହେ ଚିର ବନ୍ଦନୀୟ
ଅତି ମାନସର ଅବତାର ତୁମେ
ଆମର ପ୍ରଣତି ନିଅ ।।୧।।

ଅବତରି ଆସି ମରତ ମାଟିରେ
ହୋଇଅଛ ଶ୍ରମକ୍ଷୀଣ
ସାଧନା ତୁମର ଏଇ ଧରା ବୁକେ
ଅଛି ଚିର ଅମିଳନ
ସ୍ୱର୍ଗ ଆସିବ ମରତରେ ନଇଁ ସବୁ ହେବ ମଧୁମୟ ।।୨।।

ନବଚେତନାର କଦମ୍ବ ଫୁଟିବ
ଜନମନ ପ୍ରାଣ ବନେ
ଅତିମାନବର ଲୀଳା ଭୂଇଁ ହେବ
ଏଇ ଧୂଳି ଧରା ଦିନେ ।
ମଧୁର ବସନ୍ତ ମଳୟ ପରଶେ ସବୁ ହେବ ସୁଧାମୟ ।।୩।।

ଦିବ୍ୟ ଭାବନାର ପରଶେ ଆସିବ
ଶୁଭ ଉଷା ଅଭିନବ
ଗଗନେ ପବନେ ଭରି ଯିବ ପ୍ରଭୁ
ସୁକୁମାର ଅନୁଭବ
ଉଲ୍ଲସି ଉଠିବ ମାନବ ମାନସ ଗାଇ ତୁମ ଜୟ ଜୟ ।।୪।।

***

# ଜୀବନ ଚିନ୍ତା

ଜୀବନର ମାନେ ନୁହେଁ ଜନମ କି ମରଣ
ଅବା ଏ ଦୁଇଟି ମଧ୍ୟେକ୍ଷୀଣ ଏକ ନଶ୍ୱର ତୋରଣ
ଅମୃତ ସନ୍ତାନ ପାଇଁ ଏହା ଏକ ପୁଣ୍ୟ ଉପହାର
ଅମୃତ ସନ୍ଧାନ ପାଇଁ ଏହା ଏକ ପୂଜା ଉପଚାର ।।୧।।

ପରିବ୍ୟାପ୍ତ ସୀମାହୀନ ପଥ ଅତିକ୍ରମି
ଯିବାକୁ ହେବ ଆଗକୁ, କୁହୁକେ ନ ଭ୍ରମି
ଆଗାମୀ ସକାଳ ସୂର୍ଯ୍ୟ ବୁଣିଦେବ ଶୁଭ ରଶ୍ମିରାଶି
ଝଲସି ଉଠିବ ଧରା, ସେ ପ୍ରଭାତେ ପୀୟୂଷ ବରଷି ।।୨।।

ଏ ମାଟିରେ ଦିବ୍ୟଧାମ ପରଶ ଆସିବ ଭାସି
ସତ୍ୟ ଶିବ ସୁନ୍ଦରର ମୂର୍ତ୍ତିଏଠି ହସିବ ବିକଶି
ଅମୃତ ସନ୍ତାନ ଆମେ ଆଗାମୀର ଜୟଗାନ କରି
ଏକତାନେ ଗାଇବାରେ ନୂତନ ସଂଗୀତ ମଧୁସୁର ତୋଳି ।।୩।।

ସତ୍ୟ, ନ୍ୟାୟ, ପ୍ରୀତି, ସୁଧା ହୋଇବ ପ୍ରକାଶ
ପ୍ରସନ୍ନ ରୁଚିର ହାସେ ଝଲସିବ ଆକାଶବତାସ
ଚେତନା ଲେଖନୀ ଧରି, ବକ୍ଷେ ଧରି ଅସୀମ ସାହସ
ଆମେ ସବୁ ଲେଖିଯିବା କାଳବକ୍ଷେ ନୂଆ ଇତିହାସ ।।୪।।

ସେ ଲେଖାରେ ବିଳସିବ ଫୁଲଫୁଟା ସକାଳର ବିଭା
ନିଃସ୍ୱାର୍ଥ ପ୍ରେମର ଛନ୍ଦ, ହୃଦୟର ପରଶ ବିମଳ
ଆଦରର ମଧୁଗନ୍ଧ, ପ୍ରଶାନ୍ତିର ଶାଶ୍ୱତ ସଂଗୀତ
ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ ଥିବ ଗୁରୁନାମ ଭକ୍ତିସୁଧା ସିକ୍ତ ।।୫।।

•••

# ନବଜୋଛନା

ମାଆମାଆ ବୋଲି ଡାକରେ ମାନସ
ମାଆ ମାଆ ବୋଲି ଡାକ
ମାଆ ପାଦତଳେ ଶରଣ ପଶିଲେ
ତୁଟିଯିବ ସବୁ ଦୁଃଖ ॥୦॥

ସଂସାର ଗହନ କାନନ ପଥରେ
ମାଆ ନାମ ହେଲେ ସାଥି
ଦିଶିବ ଆଲୋକ ବିମଳ ଝଲକ
ପାହିଯିବ ଅମାରାତି
ସରଗୁ ଝରିବ ଛଣା ସୁଧାଧାରା
ଭରିବ ସରଗ ସୁଖ ॥୧॥

ବଉଦ ଫାଙ୍କରେ ଜହ୍ନର ଜୋଛନା
ସମାନ ମାଆ କରୁଣା
ଶୀତଳ ସରଳ ଲଳିତ କୋମଳ
ନାହିଁ ତାହାର ତୁଳନା
ଦୋଷାଦୋଷ ସବୁ କରିବେ ମା' କ୍ଷମା
ପଣତେ ପୋଛି ତୋ ମୁଖ ॥୨॥

❀❀❀

# ନନ୍ଦନଫୁଲ

ନବପ୍ରଭାତ ଆଲୋକ ସ୍ନାତ
ଦିଗଦିଗନ୍ତ, ସୁଷମା ସିକ୍ତ
ଆଶାର ବୀଣା, ଗଲାଣି ଶୁଣା ହୁଅନା ହତାଶ କ୍ଳାନ୍ତ ॥୧॥

ପରାଗ କୁଞ୍ଜେ ମୁରଲୀ ବାଜେ
ଲଳିତ ଛନ୍ଦେ ମଳୟ ମନ୍ଦେ
ଚମକି ଉଠେ ସାରା ମୂଲକ ନୂଆଜୀବନ ସାଜେ ॥୨॥

ପୁରୁଣା ଦିନ ରହିବ ନାହିଁ
ଏ ଅମାନିଶା ଯିବରେ ପାହି ।
ଜଞ୍ଜାଳ ସତ, ଜୀବନ ସତ, ସତ ମରତ ଭୂଇଁ ॥୩॥

ମରତ ହେବ, ସରଗତୁଲ
ଫୁଟିବ ଏଠି, ନନ୍ଦନ ଫୁଲ
ତୁଟିବ ସବୁ ମନରୁ ମନ୍ଦ, ଜୀବନୁ ହାହାକାର ॥୪॥

•••

# ସମାଧି ଦର୍ଶନ

ନାନାଜାତି ଫୁଲରେ ସଜଡ଼ା
ଫୁଲବାସ ମହମହ
ମହୁମାଛି ଗୁଣୁଗୁଣୁ
ଦିଅନ୍ତି କି ସରଗ ବାରତା ଆଣି, ବୀଣା ସୁରେ
ଓଁକାର ଝଙ୍କାରେ ॥୧॥

ସେବା ବୃକ୍ଷ ପକ୍ଷୀସମ ତା'ଡେଣା ମେଲାଇ
ଘୋଡ଼ାଇ ରଖିଛି ସିଏ ସମାଧି ମଣ୍ଡପ
ବେଳେବେଳେ ଝରିପଡ଼େ ସ୍ୱର୍ଣ୍ଣିମ କୁସୁମ
ଝରାଫୁଲେ ଲେଖାଥାଏ ଅନେକ କବିତା
ଦିବ୍ୟ ଚେତନାର ॥୨॥

ଆଗାମୀ ଦିନର ଦେବତା ଅଛନ୍ତି ତହିଁ,
କର୍ମକ୍ଲାନ୍ତି ମେଣ୍ଟାଇବା ପାଇଁ
ନବଉଷାରେ, ନବୀନ ତେଜରେ
ଉଠିବେ ସେଇ ସବିତା
ଆଗାମୀର ଆରାଧ ଦେବତା ॥୩॥

କରିବେ ସେ ମରତପୁରୀକୁ
ସୁରମ୍ୟ ସରଗପୁରୀ
ନଥିବ ଯହିଁରେ ହିଂସା, କପଟର ରାହୁଛାୟା
ଥିବ ଖାଲି ମମତାର ମଧୁସିକ୍ତ ଅମୃତ ପରଶ ॥୪॥

●●●

# ନବଚେତନା

ଜୀବନ ଆକାଶେ ଆଲୋକ ଝରାଇ
ଉଇଁବ ଆଗାମୀ ନବଚେତନା
ଫୁଟିବ ସୁଷମ କୁସୁମକଳିକା
ଛୁଟିବ ମହକ ହୃଦୟଘେନା ॥୧॥

ଭରା ଶିହରଣ ମଳୟ ପରଶେ
ନାଚିବ ପରାଣ ପ୍ରୀତି ପସରା
ଆଲୋକରୁ ଛାଇ ଅପସରି ଯିବ
ପୁଲକେ ହସିବ ଜୀବନଧାରା ॥୨॥

ନବ ଭାବନାର ପୁଲକ ପରଶେ
ପ୍ରକାଶିବ ଶୋଭା ବିଭବରାଜି
ରୂପାନ୍ତର ହେବ ଦେହ ପ୍ରାଣ ମନ
ଅହମିକା ବନ୍ଧ ପଡ଼ିବ ଭାଜି ॥୩॥

ମାନବ ମାନସେ ନାଚିବ ଉଲ୍ଲାସେ
ମାନବିକତାର ଲହରୀ ମାଳା
ସରଗ ହେବ ଏ ଧରା ପରିବେଶ
ଦେବ-ଉପବନ କୁସୁମେ ଭରା ॥୪॥

ସେଦିନ ମାଆଗୋ ! ତୁମ ଅଭିଳାଷ
ପୂରଣ ହୋଇବ ଜଗତ ପରେ
ଅତିମାନସର ଶୋଭନ ସୁଷମା
ପ୍ରକାଶିତ ହେବ ମରମ ତଳେ ॥୫॥

ତୁମରି ସେନେହ ତୁମରି କରୁଣା
ରହିଛି ମାଆଗୋ ସଭିଙ୍କ ପାଇଁ
ଚରଣେ ତୁମର ପ୍ରଣାମ କରୁଛି
ଜୟ ଜୟ ମାଆ ମମତାମୟୀ ॥୬॥

ଚଳାଇ ନିଅ ମା' ପ୍ରଗତିର ପଥେ
ରହି ମୋର ପାଶେ ଦିବସ ନିଶି
ମୋ ରସନା ଗାଉ ସଦା ତୁମ ନାମ
ତୁମେ ମୋ ଜୀବନ ଶରଦ ଶଶୀ ॥୭॥

ଏତିକି ମାଗୁଣି ମାଗୁଛି ଆଜି ମୁଁ
ଧନ, ମାନ, ଯଶ ନ ଲୋଡ଼େ କିଛି
ତୁମ ଭରସାରେ ବିତୁ ଏ ଜୀବନ
ତୁମ ପାଦେ ଏଇ ଅଳି କରୁଛି ॥୮॥

●●●

# ସୁନ୍ଦର ହେବ ଧରା

ସୁନ୍ଦର ହେବ ଧରା
ମଣିଷ ମନର ଲଳିତ କୁଞ୍ଜେ
ସଜ ସକାଳର କିରଣ ପୁଞ୍ଜେ
ଫୁଟିବ ପ୍ରୀତିର ସୁବାସ କୁସୁମ ।
ରହାଣି ତା' ଚିତ୍ତଚୋରା,
ସୁନ୍ଦର ହେବ ଧରା ॥୧॥

ଶୀତଳ ପବନ ବହି
ନିଜେ ହସିହସି ଅନ୍ୟକୁ ହସାଇ
ମମତାର ଧାରେ ଅନ୍ୟକୁ ଭସାଇ
ମଧୁର କଣ୍ଠେ ନୂତନ ଛନ୍ଦେ
ଯିବ ନୂଆଗୀତି ଗାଇ,
ଶୀତଳ ପବନ ବହି ॥୨॥

ବାଜିବ ନବୀନ ଭେରୀ
ସୁଧାସଂଜୀବନୀ ନରମ ପରଶ
ଶାନ୍ତ କରିବ ମାନବ ମାନସ
ଈର୍ଷା, ଛଳନା, ହିଂସା, ପ୍ରତାରଣା
ଯିବ ଦୂରେ ଅପସରି,
ବାଜିବ ନୀବନ ଭେରୀ ॥୩॥

ହୃଦୟର ସିଂହାସନେ
ନମନୀୟତାର ତୁଳସୀ ଦଳରେ
ଦିବ୍ୟ ଭାବନାର ବାସ ଚନ୍ଦନରେ
ନବଚେତନାର ଅଭିଷେକ ହେବ
ଆଗାମୀର ଶୁଭ ଦିନେ,
ହୃଦୟର ସିଂହାସନେ ॥୪॥

ପୁଲକିତ ହେବ ଦିଗ
ଦିବ୍ୟ ସୁଷମା ପ୍ରକଟିତ ହେବ
ବିକଶିତ ହେବ ଭାବ ଅଭିନବ
ପରିପୂର୍ଣ୍ଣତାର ପରଶେ ଆସିବ
ସୁବର୍ଣ୍ଣ ସତ୍ୟଯୁଗ,
ପୁଲକିତ ହେବ ଦିଗ ।।୫।।

ଅତିମାନସର ପ୍ରଭା,
ଗଗନ,ପବନ, ଗିରି, ନଦୀ, ବନ
ସାଗର, କେଦାର, ଦରୀ, ଉପବନ
ନବୀନ ଆଲୋକେ ଝଲସାଇଦେବ
ଝରାଇ ବିମଳ ବିଭା,
ଅତିମାନସର ପ୍ରଭା ।।୬।।

ଅତିମାନବର ପାଦ
ଫୁଟାଇବ କେତେ ଲାବଣ୍ୟ-କମଳ
ଛୁଟାଇବ ମୃଦୁ-ବାସ-ପରିମଳ
ବିଷାଦର ବିଷ ଧୋଇ ନେଇଯିବ
ହଜାଇ ସକଳ ଦ୍ୱନ୍ଦ୍ୱ
ଅତିମାନବର ପାଦ ।।୭।।

# ନୂଆ ଦିନ ଆସିବ

ଦିଗ ମହକିବ ଅଜଣା ଫୁଲର ବାସେ
ଭଲ କଥା ସବୁ ସୁନ୍ଦର ପାଦ ଥାପି
ଗୋଟି ଗୋଟି ହୋଇ ଆସି ପହଞ୍ଚିବେ
ମଣିଷ ମନର ଦେଶେ ॥୧॥

ନୀଳ ଦରିଆର ବୁକେ
ବଣା ନାବିକର ବତୀଘର ପରି
ଦେଖା ଦେବ ସେହି ଦିନ
ଯେଉଁଦିନ ଆଉ ରହିବ ନାହିଁଟି
ଛଳନାର କୁଶାସନ ॥୨॥

ତୋଫାନ ଆସିଛି ଏବେ
ବତାସ ପବନ ସାଇଁସାଇଁ ସୁରେ
ଗାଉଛି ରୁଦ୍ରଗୀତ,
ଶାନ୍ତ ହୋଇବ ସବୁ
ସ୍ନିଗ୍ଧସୁନ୍ଦର ଦିଗ ଦିଗନ୍ତରେ
ଅଳସେ ଝରିବ, ମାନବିକତାର ରୁଚିର ପଦ୍ମମଧୁ ॥୩॥

ମଣିଷ ରହିବ ଋହିଁ
ନିଜକୁ, ମାଟିକୁ, ନୀଳ ଆକାଶକୁ
ଏତିକି କହିବ,
କି ଥିଲା ଏ ରାଜ୍ୟ କି ହୋଇଛି ଆଜ
କିଛି ବୁଝିହେଉ ନାହିଁ ॥୪॥

ସତ୍ୟ ଯୁଗର ଜୈତ୍ର ମୁକୁଟ ପିନ୍ଧି
ସମୟ ହସିବ, ନାଚିବ ପ୍ରାଣର ପକ୍ଷୀ
ପୁରାତନ ନଦୀ, ପୁରୁଣା ପାହାଡ଼
ରହିବେ କେବଳ ଇତିହାସ ସାଜି
ହେବେ ଅତୀତର ସାକ୍ଷୀ ॥୫॥

•••

# ପ୍ରାର୍ଥନା

ଗାଏ ଯା'ର ଗୀତି ଏ ବିଶ୍ୱଭାରତୀ
ଲଳିତ ମଧୁର ସୁରେ
କି ଭାଷାରେ ତା'ର ମହିମା ଗାଇବି
ଭାବେ ବସି ମୋ ଅନ୍ତରେ ॥୦॥

ପ୍ରକୃତି ଯା'ପାଇଁ ସଜାଇ ଦେଇଛି
ବନଲତା କୁଞ୍ଜେ ଫୁଲ
କି ଫୁଲ ଦେଇ ମୁଁ ତା'ପାଦ ପୂଜିବି
ବୃଥା ଅହମିକା ମୋର
ଫୁଲର ମହକ ଯା'ପାଇଁକି ଧୂପ କି ଧୂପ ଦେବି ମୁଁ ତା'ରେ ॥୧॥

ଚନ୍ଦନର ଗନ୍ଧ ପବନରେ ମିଶି
ଗାଉଛି ମହିମା ତା'ର
ଦିଗେ ଦିଗେ ରାଜେ ତା'ର ରୂପ ଶୋଭା
ନାହିଁ ଯାର ପଟାନ୍ତର
ଦିଗନ୍ତର ସ୍ୱନ ତା'ର ବୀଣାତାନ ବାଜୁଛି ମଧୁର ସୁରେ ॥୨॥

ଜନମେ ଜନମେ ତା'ର ସେବା କରି
ଯାଉ ମୋର ଦିନ ବିତି
ଆଶାର ଆଲୋକେ ଆଲୋକିତ ହେଉ
ଜୀବନର ବନବୀଥି
ତା'ର ନାମ ଗାଇ ମିଳୁ ମତେ ଶାନ୍ତି, ଏତିକି ପ୍ରାର୍ଥନା କରେ ॥୩॥

# ଅତିମାନସ

ଅତି ମାନସର ଅବତାର ତୁମେ
ଚରଣ କମଳେ ତୁମର ପ୍ରଣମେ
ଜୀବନର ପଥେ ହାତ ଧରି ମତେ
ନିଅ ଏଇ ଭବ ଭୂମେ ।।୦।।

ଏ ଧରାର ଧୂଳି ଚନ୍ଦନ ହୋଇବ
ମରତ ସୁମନ ପାରିଜାତ ହେବ
ସରଗର ଶିରୀ ଝଲସି ହସିବ ଏଇ ମରତର ଧାମେ ।।୧।।

ଅଧିକ ସବୁଜ ଗଛଲତା ହେବ
ମଣିଷ ମନରେ ଚେତନା ବଢ଼ିବ
ମାନବିକତାର ଅଭିଷେକ ହେବ ବିଶ୍ୱ ସ୍ୱର୍ଣ୍ଣ ସିଂହାସନେ ।।୨।।

ଅତିମାନବର ଆଗମନ ପାଇଁ
ଦଶଦିଗ ଏବେ ରହିଛନ୍ତି ଚାହିଁ
ଆମ ସହଯୋଗ ମିଳିଲେ ମଣିଷ ବସିବ ଦେବ ଆସନେ ।।୩।।

ଚୈତ୍ୟସତ୍ତା ହେବ ଜୀବନ ମାଲିକ
ମନ ପ୍ରାଣ ଦେହେ ଆସିବ ଆଲୋକ
ବିଶ୍ୱପରିବାର ଗଠିତ ହୋଇବ ଅତିମାନସର ଦାନେ ।।୪।।

•••

# ଦଶଭୁଜା

ଉଚ୍ଛୁଳି ଉଠୁଛି ଆଜି ଭକତିର ସୁଧା ସିନ୍ଧୁ
ମାଆ ତୁମେ ସାଜିଅଛ ତହିଁ ପୂର୍ଣ୍ଣିମାର ଇନ୍ଦୁ ।।୦।।

ଓଁକାରମୟୀ ଜନନୀ  ମାଆ ପତିତ ପାବନୀ
ପରାଶକ୍ତି ସନାତନୀ  ମାଆ ଦନୁଜ ଦଳିନୀ
ଶୈଳସୁତା ଆଦିମାତା ଶରଣାଗତର ବନ୍ଧୁ ।।୧।।

ବରଦ ହସ୍ତା ମାତୃକା ବିଶ୍ୱପ୍ରାଣ ସଞ୍ଚାଳିକା
ଭବ ତାରିଣୀ କାଳିକା ଆନନ୍ଦମୟୀ ଅମ୍ବିକା
ସନ୍ତାନ କଲୁଷହର ବରଷି ଅମୃତ ବିନ୍ଦୁ ।।୨।।

ଚରାଚର ପୁଲକିତ ମାଆ ମହିମା ସଂଗୀତ
ଗାନେ ପୁରବାସୀମ ସରଗ କି ଏ ମରତ
ଚରଣେ ପ୍ରଣତ ତୁମ କିବା ଗୃହୀ କିବା ସାଧୁ ।।୩।।

ମାଆ ମହେଶ୍ୱରୀ ତାରା ଦଶ ଦୁଃଖ ଦୋଷହରା
ମହାସରସ୍ୱତୀ ଧୀରା  ଦେବୀ ମୁକ୍ତିର ପସରା
କ୍ଷମାକର ଦୋଷାଦୋଷ ଦିଅ ମା' ଅଭୟ ମଧୁ ।।୪।।

●●●

# ମାଗୁଣି

ତୁମରି ପାଦକୁ ନିରେଖି ଦେଖିବି
ଗାଉଥିବି ତୁମ ଗୀତ
ପାଦ ଚାଲୁଥିବ ତୁମରି ପଥରେ
କି ବରଷା ଖରା ଶୀତ ॥୦॥

ଆସୁଥିବ ବାସ କୁସୁମ ପ୍ରସରି
ହସୁଥିବ ମିଠାମିଠା
ସେ ବାସରେ ଥିବ ତୁମ ଅଙ୍ଗବାସ
ମଧୁରତା ମାଦକତା ।
ଆସିବ ଦେହେ ମୋ ଶତ ଶିହରଣ, ଚିତ୍ତ ପ୍ରୀତି ପୁଲକିତ ॥୧॥

ଧନ, ମାନ, ଜନ, ଯଶ ଗଉରବ
ସବୁ ଦେବି ତୁମ ପାଦେ
ମୋ ଆଖିର ଲୁହ ତୁମ ଚରଣରେ
ଢାଳିଦେବି ଅପ୍ରମାଦେ ।
ପାଇବି ତୁମକୁ ଭିତରେ ବାହାରେ ସପନ ହେବ ମୋ ସତ ॥୨॥

ତୁମ ହାତ ଧରି ବାଟ ଚାଲୁଥିବି
ଏ ଜୀବନ ଚଲାପଥେ
ଆରପାରେ ହୋଇ ଆଲୋକର ରେଖା
ବାଟ ଦେଖାଇବ ମତେ
ତୁମରି ଚରଣେ ଏତିକି ମାଗୁଣି, ମାଗେ କରି ପ୍ରଣିପାତ ॥୩॥

❁❁❁

# ବନ୍ଦନିକା




ଡକ୍ଟର ଶରତ ଚନ୍ଦ୍ର ରଥ

ପ୍ରକାଶ କାଳ : ୨୦୧୯

ପ୍ରଚ୍ଛଦ : ବିଭୁ ପ୍ରସୂନ

# ମାଆଙ୍କୁ ପ୍ରଣାମ

ମାଆ ଆସିଛିରେ ବିଜୟବାନାକୁ ଉଡ଼ାଇ ଉଡ଼ାଇ ତା'ର
ବନଲତା କୁଞ୍ଜେ ସଜଫୁଲ ଆଜି ତା' ପାଇଁ କି ପୂଜାଫୁଲ ।।୦।।

ସକାଳର ପକ୍ଷୀ ଗାଉଅଛି ବସି ମାଆର ମହିମା ଗୀତି
ପକାଏ ପବନ ଆଲଟଚାମର ଭକତିରେ ମଥାପାତି
ଅଳିର ଗୁଞ୍ଜନ କିବା ବୀଣା ତାନ ଭରା ଯହିଁ ସାତସୁର ।।୧।।

ସକାଳ ସୂରୁଯ ପକାଏ ମୁରୁଜ ମାଆ ନିରାଜନା ପାଇଁ
ନଦୀ ଜଳ ଆଜି ସାଜେ ଦରପଣ ମାଆଙ୍କର ସେବା ପାଇଁ
ଶେଫାଳି ସୁବାସ ସାଜେ ଧୂପବାସ, ଜହ୍ନରାତି ପୂଜାଘର ।।୨।।

ଭକ୍ତି ଭିଜାମାଟି ଢାଳୁଛି ପ୍ରଣତି କାଶତଣ୍ଡୀ ଓଢ଼ଣାରେ
ସୁନୀଳ ଆକାଶେ ଧଳା ମେଘଭାସେ ପତାକା ମାଆ ରଥରେ
ଶ୍ୟାମଳ କେଦାର ମାଆର ପଣତ, ଖଞ୍ଜା ହୀରା ଘାସ ଫୁଲ ।।୩।।

ନୀଳ ନିଶୀଥରେ ତାରା ଦୀପ ଜଳେ ଦେଖିଲେ ଲାଗୁଛି ନୂଆ
ଶିହରଣ ଆସେ ଦେଖିଲେ ମାନସେ ସତେ କି କୁହୁକ ଛୁଆଁ
କଉମୁଦୀ ରସେ କୁମୁଦ ବିଳସେ, ଭକତିରେ ଜରଜର ।।୪।।

ସଫାତୋଫା ସତେ ଦଶଦିଗ ଆଜି ମାଆଙ୍କ ଆଶିଷ ପାଇ
ଅସୁର ନାଶିବେ ମଧୁ ବରଷିବେ ଦଶଭୁଜା ଦୟାମୟୀ
ସରଗ ହୋଇବ ମାଆ କରୁଣାରେ ମରତର ବାଲିଘର ।।୫।।

•••

## ହେ ଛନ୍ଦାଚରଣ !

ତୁମ ବାଙ୍କଚୂଳେ ଶିଖଣ୍ଡ ଝଟକେ
ଖଞ୍ଜା ପୁଞ୍ଜାପୁଞ୍ଜା ମଲ୍ଲୀ
ଇନ୍ଦ୍ରଝୁମ୍ପା ଝୁଲେ କୁଞ୍ଚିତ କୁନ୍ତଳେ
ଝରା ହୀରା ମୋତି ମାଳି ॥୦॥

ଆଖି ଦୁଇ ତୁମ ଅମଳ କମଳ
ଅଧର ବଧୂଲି ଫୁଲ
ତିଳଫୁଲ ଜିଣା ନାସାରେ ଶୋଭନ
ବସଣି ଅମୂଲ ମୂଲ
କଣ୍ଠେ ବନମାଳ ଲଳିତ ମଞ୍ଜୁଳ ନାଚୁଥାଏ ଝୁଲିଝୁଲି ॥୧॥

ତୁମ କରେ ଶୋଭା ମୋହନ ମୁରଲୀ
ଜଗତ ମୋହିବା ପାଇଁ
ବସନ ତୁମର ପାଟ ପୀତାମ୍ବର
ଲମ୍ବିଲୋଟେ ଭୂଇଁ ଛୁଇଁ
ତୁମ ପାଦ ଶୋଭା, ସୁର ମନଲୋଭା ବୈକୁଣ୍ଠ କୈବଲ୍ୟ କଳି ॥୨॥

ଏତିକି ମାଗୁଣି ତୁମ ଛନ୍ଦାପାଦେ
ବନ୍ଧାରହୁ ମୋର ମନ
ମୋ ରସନା ଗାଉ ଦିବସ ରଜନୀ
ପ୍ରଭୁ ତୁମ ଯଶଗାନ
ବଣାନାବିକ ମୁଁ ସଂସାର ସାଗରେ ତୁମେ ବତୀଘର ସରି ॥୩॥

●●●

# ମାଗୁଣି

ଆଶା ମଧୁକୁଞ୍ଜ ପାରିଜାତ ତୁମେ
ଭାଷାରେ ଓଁକାର ଧ୍ୱନି ଭବ ଭୂମେ
ତୁମକୁ ପ୍ରଣାମ କରେ
ହେ ମହାମହିମ ପ୍ରିୟ ଅନୁପମ ଶରଣ ଚରଣ ତଳେ ।।୦।।

ତୁମେ ନୀଳ ସିନ୍ଧୁ ଅନନ୍ତ ଅପାର
ମୁଁ ଯେ ଛୋଟ ନଈ ଅଙ୍କାବଙ୍କାଧାର
ତୁମକୁ ପାଇବା ପାଇଁ
ସକାଳରୁ ସଞ୍ଜ, ସଞ୍ଜରୁ ସକାଳ ଧାଇଁଛି ଆତୁର ହୋଇ ।।୧।।

ବାଟଜଗେ ମୋର ଗିରିବନ ଭୂଇଁ
ଆଗକୁ ଯିବାକୁ ବାଟ ଛାଡ଼େ ନାହିଁ
ତଥାପି ଅଛି ମୋ ଆଶା
ଦିନେ ମୁଁ ଛୁଇଁବି ତୁମରି ନୀଳିମା ପାହିଯିବ ଅମାନିଶା ।।୨।।

ଜୀବନେ ଆସିବ ସୁନାର ସକାଳ
ନୂଆ ଚେତନାର ତେଜ ଝଲମଲ
ସେ ଦିନ ପାଇବି ସବୁ
ମିଳିଯିବ ମୋର ଜୀବନର ମୂଳ ସେ ଦିନ ହେ ମହାପ୍ରଭୁ ।।୩।।

●●●

# ନିବେଦନ

ଧନମାନ ଦେଇ ଭୁଲାଇ ଦେବନି
ଏତିକି ମୋ ନିବେଦନ
ଯଶ ଗଉରବ ମୋର କିବା ହେବ
ଲୋଡ଼ା ତୁମ ଦରଶନ ॥୦॥

ଜୀବନ ଆକାଶେ ନଇଁଗଲେ ସଞ୍ଜ
ଉଇଁବ ପୂର୍ଣ୍ଣିମା ଶଶୀ
ହାତ ଧରି ବାଟ କଢ଼ାଇ ନେବ ହେ
ପାଦ ଯେବେ ଯିବ ଖସି
ଏତିକି ମିନତି ପାଖେ ପାଖେ ଥିବ ତୁମେ ମୋର ପ୍ରିୟତମ ॥୧॥

ମୋ ମନର ମୁଦି ବନ୍ଧା ଦେଲି ଆଜି
ପ୍ରଭୁ ତୁମ ପାଦ ତଳେ
ସେ ବନ୍ଧା କଉଡ଼ି ଥାଉ ତୁମ ପାଶେ
ଦେବ ମତେ ଆରପାରେ
ତୁମରି ଆଶାରେ ତୁମ ଭରସାରେ ବିତିଯାଉ ମୋର ଦିନ ॥୨॥

ତୁମକୁ ପାଇଲେ ଜୀବନେ ମରଣେ
ଆଉ ଲୋଡ଼ା ନାହିଁ କିଛି
ଯାହାସବୁ ମତେ ମିଳିଛି ହେ ପ୍ରଭୁ
ତୁମେ ତ ଦେଇଛ ବାଛି
ଚରଣ କମଳେ ପ୍ରଣାମ କରୁଛି ଘେନାକର ଅନୁପମ ॥୩॥

●●●

# ଶୁଭ ଆଲୋକ

ଶୁଭ ଆଲୋକର ପରିଭାଷା ତୁମେ
ହତାଶାର ଅନ୍ଧକାରେ
ସବୁଜ ଶୋଭନ ମରୁଦ୍ୟାନ ତୁମେ
ମରୁଭୂମି ବାଲୁକାରେ ।।୦।।

ଭାବିବାକୁ ଭଲ ଲାଗେ ତୁମ କଥା
ଏକା ଏକା ବସି ବସି
ଯେତେ ଭାବୁଥିଲେ ନୂଆ ଲାଗୁଥାଏ
ତୁମ ମୁହଁ ଯାଏ ଦିଶି
କେହି ନ ଥିଲେ ବି ତୁମ ମିଠାକଥା
ଭାସି ଆସେ ପବନରେ ।।୧।।

ଭଲ ଲାଗେ ବସି ଗାଇବା ପାଇଁ କି
ତୁମ ପାଇଁ କେତେ ଗୀତ
ପକ୍ଷୀଙ୍କ କାକଳି ସୁରେସୁରେ ତହିଁ
ବାଜେ ବାଦ୍ୟ ସୁଲଳିତ
କୋଇଲିର କୁହୁ ଢାଳିଦିଏ ମହୁ
ମୋ ଗୀତର ବାଦୀ ସୁରେ ।।୨।।

ଏକା ବସିଥିଲେ ବେଳେବେଳେ ଶୁଭେ
ତୁମରି ପାଦ ଶବ୍ଦ
ଚାହିଁଲା ବେଳକୁ ତୁମେ ନୁହେଁ ସିଏ
ସକାଳ ଝିଙ୍କାରୀ ନାଦ
ବେଳେବେଳେ ଲାଗେ ତୁମେ ଚାରିପଟେ,
ରହିଅଛି ମୁଁ ମଝିରେ ।।୩।।

●●●

# ପ୍ରଶ୍ନମାଳା

ତୁମ କଥା ବସି କେତେ ମୁଁ ଲେଖିଲି କିଛି ପାରିଲିନି ଲେଖି
ତୁମ ରୂପ ଛବି କେତେ ମୁଁ ଆଙ୍କିଲି କିଛି ପାରିଲିନି ଆଙ୍କି ।।୦।।
କଳାଭଅଁରକୁ ପଚାରିଲି ଦିନେ
କି ଗୀତ ଗାଉ ତୁ ବସି
କିଛି ନ କହି ସେ ଆନମନା ହୋଇ
ଦେଲା ଖାଲି ଟିକେ ହସି
ସେଇ ହସଥିଲା କହି ନ କହିବା, ନ କହି କହିବା ସାକ୍ଷୀ ।।୧।।
ପଚାରିଲି ଦିନେ ଗିରି ଝରଣାକୁ
ଏତେ ନାଚୁ କାହା ପାଇଁ
ଦୂରେ ବହୁ ଦୂରେ ସୁନୀଳ ସାଗର
ରହିଛି କି ତତେ ଚାହିଁ ?
କିଛି ନ କହି ସେ ନୀରବ ରହିଲା ଆଖିରେ ସରମ ମାଖି ।।୨।।
ପବନ ଦୋଳିରେ ଝୁଲୁଥିଲା ବସି
ସକାଳର ସଜଫୁଲ
କାହା ଲାଗି ଏତେ ସୁମଧୁର ହସ
କିଏ ଦେବ ତା'ର ମୂଲ
ନୀରବ ଭାଷାରେ କହି ଦେଲା ମତେ କେତେ କଥା ମନ ଲାଖି ।।୩।।
ପଚାରିଲି ଦିନେ ଶିଶିର ବିନ୍ଦୁକୁ
କାହା ପାଇଁ ଯାଉ ଝରି
ଗୋଟାଇ ନେବାକୁ କିଏ ବସିଛି କି
ଯତନେ ପଣତ ପାରି
ଯାହା ସେ କହିଲା ସବୁ ବୁଝିହେଲା,ହବ ନାହିଁ କିଛି ଲେଖି ।।୪।।
ସକାଳ ପକ୍ଷୀକୁ ପଚାରିଲି ଦିନେ
କାହାପାଇଁ ଗାଉ ଗୀତ
ଆସୁଛନ୍ତି କିବା ଦୂର ରାଇଜରୁ
ସତେ କି ତୋ ପ୍ରାଣମିତ !
ଚାହାଣିରେ ତା'ର ନ ଫୁଟି ଫୁଟିଲା ଫୁଲ କଢ଼ି ପେନ୍ଥିପେନ୍ଥି ।।୫।।

●●●

ଜୀବନଗୀତି

# ବାଉଳା ମୁଁ ଦିଗହରା

ମୋ' ଭିତରେ ଅଛି ଚନ୍ଦନର ବାସ
ଅଛି ମନ୍ଦାକିନୀ ଧାରା
ବାଉଳା ହୋଇ ମୁଁ ବାହାରେ ବୁଲୁଛି
ନମାନି ବରଷା ଖରା ॥୦॥

ମୋ' ଭିତରେ ଝୁଲେ ମଳୟ ମଧୁରେ
କୁସୁମିତ ବନ ଲତା
ଗୁଣୁଗୁଣୁ ହୋଇ ଭଅଁର ଗାଉଛି
ଲଳିତ ମୋହନ ଗାଥା
ସେସବୁ ନଦେଖି ସେସବୁ ନ ଶୁଣି ବାହାରେ ମୁଁ ଦିଗହରା ॥୧॥

ମୋହର ଅନ୍ତରେ ପ୍ରେମ ପାରାବାରେ
ନାଚୁଛି ଲହରୀମାଳା
ଲହରୀ ନୁହେଁ ସେ ଭରା କଳସରୁ
ଉଛୁଳଇ ସୁଧାଧାରା
ତାକୁ ମୁଁ ନ ଦେଖି ତାକୁ ମୁଁ ନ ଚାଖି କାମନାରେ ଦିଗହରା ॥୨॥

ସାତ ସୁରେ ବାଜେ ମୋହନ ମୁରଲୀ
ରହି ରହି ଦୂରେ ଦୂରେ
ଧାନ କ୍ଷେତ ଧାରେ ସବୁଜ ଶୋଭାରେ
ଅଳସୀ ପବନ ଖେଳେ
ତାକୁ ମୁଁ ନ ଶୁଣି ତାକୁ ମୁଁ ନ ଦେଖି ବାସନାରେ ବାସହରା ॥୩॥

ମୋ ସାଥିରେ କିଏ ଖେଳୁଅଛି ପରା
କେତେ ଲୁଚକାଳି ଖେଳ
ବେଳେବେଳେ ମତେ ଛୁଇଁଯାଏ ଆହା
ନରମ ହାତ କାହାର
ତାକୁ ମୁଁ ନ ଖୋଜି, ବାତୁଳ ପରାୟେ ବୁଲୁଛି ଦୁନିଆଁ ସାରା ॥୪॥

●●●

# ମୁଦି ବନ୍ଧା ଦେଲି

ମୋ ମନର ମୁଦି ଜଗା
ବନ୍ଧା ଦେଲି ତତେ
ସେ ବନ୍ଧା କଉଡ଼ି ଦବୁ
ଆର ପାରେ ମତେ ।।୦।।

ଟଙ୍କା ସୁନା ଲୋଡ଼ା ନାହିଁ
ଏତିକି ମୋ ମାଗୁଣି
ମୋର ପାଖେପାଖେ ଥିବୁ
ମୋ ମଉଡ଼ ମଣି
ଅନ୍ଧାରରେ ଦୀପଶିଖା ଜାଳି ଦେବୁ କେତେ ।।୧।।

ଜନମ ଜନମ ପାଇଁ
ମାଗୁଛି ମୁଁ ଏତିକି
ଦୁଃଖ ବେଳେ ଦୁଃଖ ବନ୍ଧୁ
ଆସିବୁ ମୋ କତିକି
ହାତ ଧରି ଚଳାଇବୁ ଜୀବନର ପଥେ ।।୨।।

ଧନମାନ ଗଉରବ
ଲୋଡ଼ା ନାହିଁ ମୋହର
ମନଭରି ଗାଇବିରେ
ଭଜନ ମୁଁ ତୋହର
ନାଚୁଥିବି ମାରିତାଳି ତୋ ଭକତ ସାଥେ ।।୩।।

●●●

# ବିଶ୍ୱାସ

ବିଶ୍ୱାସେ ମିଳନ୍ତି ହରି
ତର୍କେ ବହୁ ଦୂରେ
ବିଶ୍ୱାସେ ବାରି ଗାଡ଼ିଆ
ପ୍ରୟାଗ ପୁଷ୍କର ।।୦।।

ବିଶ୍ୱାସରେ ଖମ୍ବୁ ଉଭା
ନରସିଂହ ମୂର୍ତ୍ତି
ବିଶ୍ୱାସେ କୋଟି ବସନ
ଦ୍ରୌପଦୀଙ୍କୁ ପ୍ରାପ୍ତି
ବିଶ୍ୱାସେ ଅମୃତ ହେଲା ମୀରାଙ୍କୁ ଜହର ।।୧।।

ଆସିବେ ବୋଲି ବିଶ୍ୱାସ
ଶବରୀ ମନରେ
ବିଶ୍ୱାସ ବଳେ ଆସିଲେ
ଶ୍ରୀରାମ ବନରେ
ଚାଖିଚାଖି ଠାକୁରଙ୍କୁ ଦେଲା ମିଠା ଫଳ ।।୨।।

ବିଶ୍ୱାସରେ ବାଲି ରଥେ
ଜଗନ୍ନାଥ ବିଜେ
ଭକତର ଭାବେ ବନ୍ଧା
ଭାବଗ୍ରାହୀ ନିଜେ
ତାଙ୍କ ଚରଣ କମଳେ କୋଟିଏ ଜୁହାର ।।୩।।

•••

## ଆସ ସଖୀ ଦେଖ

ଆସ ଆସ ସଖୀ ଦେଖ
କାଳିଆ କାହ୍ନାକୁ
ବଡ଼ ଦେଉଳରେ ବସି
ଉଡ଼ାଏ ବାନାକୁ ।।୦।।

ରସିକ ମଉଡ଼ମଣି ଛଇଳ ନାଗର
ଚିତ୍ତ ଚୋରା ଦଗାଦିଆ ବରଜ ସୁନ୍ଦର
ଗଲା ସେ ମଥୁରା ପୁର ନମାନି ମନାକୁ ।।୧।।

କେତେଆଡ଼େ ରହିରହି ଏଠାକୁ ଆସିଛି
ଗୋପପୁର ଫେରିବାକୁ ଭୁଲି ସେ ଯାଇଛି
ଆଉ ଥରେ ଦେଖ ସଖି ମଉନ ମୁହାଁକୁ ।।୧।।

କେଉଁଠୁ ଆସି କେଉଁଠି ରହିଛି କେମନ୍ତେ
ସେ ଭାବୁଛି ଆମେ କିଛି ଜାଣି ନାହୁଁ ସତେ
ଆମକୁ ଦେଖି ଲାଜରେ ଲୁଚାଏ ମୁହଁକୁ ।।୩।।

ଆମେ ଗୋପବାଳା ପ୍ରେମେ ବାନ୍ଧିଥିଲୁ ତାକୁ
ଏମିତି ଭୁଲିଲା ସିଏ କେମିତି ଆମକୁ
ଭୁଲିଲା କଦମ୍ବକୁଞ୍ଜ, ନୀଳ ଯମୁନାକୁ ।।୪।।

●●●

# ମା'

ମାଆ ଆସିଛିରେ ବିଜୟ ବାନାକୁ
ଉଡ଼ାଇ ଉଡ଼ାଇ ତା'ର
ଶରତ ସକାଳ ଅଞ୍ଜଳିରେ ଭରା
ଶେଫାଳିର ପୂଜାଫୁଲ ।।୦।।

ଧଳା ମେଘ ଭାସେ ନୀଳ ଆକାଶରେ
ତରଣୀ ପରାୟ ହୋଇ
ବନ ଉପବନ ଶ୍ୟାମଳ ଶୋଭନ
ଶୋଭାର ଉପମା ନାହିଁ
ତା' ପାଦ ପରଶେ ହସି ଉଠୁଅଛି ମରତର ବାଲିଘର ।।୧।।

ନଦୀ ସାଜି ଅଛି ଦରପଣ ଆଜି
ମାଆ ନିରଜନା ପାଇଁ
ଦିଗଦିଗ ମଣ୍ଡି ସାଜେ କାଶତଣ୍ଡୀ
ଆଲଟ ଚାମର ହୋଇ
କେବେକେବେ ଝରେ ବରଷା ଅସରେ ଧୋଇ ଦିଏ ମହୀତଳ ।।୨।।

ଅପରାଜିତାର ନୀଳ ରଙ୍ଗ ଚୋର
ଦୂର ପରବତ ଧାରେ
ସରଗରୁ ହସି ପଡୁଛି କି ଖସି
ଲଳିତ ଲାବଣ୍ୟ ତଳେ
ଦିଗ ପରିମଳ, ପବନ ବିମଳ, ଆନନ୍ଦର ଗନ୍ତାଘର ।।୩।।

ଝଲମଲ ଝରେ ଜହ୍ନରୁ ଜୋଛନା
ସରଗର ସୁଧାଧାରା
ଝରା ଚାନ୍ଦିନୀରେ ତାରକସୀ କାମ
ଚଉଦିଗ ଆତ୍ମହରା
ଦିଗ ଦେଉଅଛି ରୁପାର ଗହଣା, ମାଆ ପାଇଁ ଉପହାର ।।୪।।

•••

# ଆଉ ଥରେ କିବା

ଆଉ ଥରେ କିବା ଶୁଭନ୍ତା ଜୀବନେ
କୋଇଲିର କୁହୁତାନ
କିଶଳୟ ଛୁଇଁ ବହନ୍ତା ମଳୟ
ଚହଲାଇ ତନୁ ମନ ॥୦॥
ଫୁଲ ପାଖୁଡ଼ାରେ ପ୍ରେମର କବିତା
ଭଅଁର ଯାଆନ୍ତା ଲେଖି
ଅରୁଣ କିରଣେ ସେ କବିତା କୁଞ୍ଜେ
ମନ ମୋ ଯାଆନ୍ତା ଲାଖି
ଶ୍ୟାମଳ ଶୋଭନ ଘାସର ଗାଲିଚା ମୋହନ୍ତା ମାଟିର ମନ ॥୧॥
ପରାଣ ନଦୀରେ ନାଚନ୍ତା କି ଧୀରେ
ଆନନ୍ଦ ଲହରୀ ମାଳା
ଅଳପ ହସରେ ମହୁଆ ବାସରେ
ଆସନ୍ତା କି ଦେବବାଳା
ନ କହି କହନ୍ତା ସିଏ କେତେ କଥା, ଭାବିଭାବି ଆନମନ ॥୨॥
ପାରିଜାତ ଡାଳ ଛୁଅଁନ୍ତା କି ଆସି
ମରତ ମାଟିକୁ ଥରେ
ଲାବଣ୍ୟ ଲିପିରେ ଲେଖି ଯାଆନ୍ତା କି
ନିଜ ନାମ ସୁବର୍ଣ୍ଣରେ
ନୂଆ ଲାଗୁଥାନ୍ତା ଯେତେ ପଢ଼ିଲେ ବି ସେ ନାଁ କୁ ନିଶିଦିନ ॥୩॥
ଉଛୁଳି ପଡ଼ନ୍ତା ଆଶାର କଳସ
ଅଳସରେ ଭରିଯାଇ
ମାଟିରୁ ଆକାଶ ଆକାଶରୁ ମାଟି
ବହନ୍ତା ଆଲୋକ ନଈ
ଆଲୋକ ନଈର ଧାରେ ବିରଜନ୍ତା ଆଷାଢ଼ୀ କଦମ୍ବ ବନ ॥୪॥
ଭାସି ଆସନ୍ତା କି ପବନ ଦୋଳିରେ
ଚନ୍ଦନ ବନରୁ ବାସ
ଅନେକ ତାରାର ରାତି ସାଜନ୍ତା କି
ମଧୁମୟୀ ବଧୂବେଶ
ରେଶମୀ ଜୋଛଡ଼ା ପଣତ କାନିରେ ସରୁସରୁ ଜରି କାମ ॥୫॥

●●●

# ତୁମେ ମୋର ପ୍ରଭୁ

ମୁଁ ତୁମ ଦାସାନୁଦାସ
ତୁମେ ମୋର ପ୍ରଭୁ
ତୁମେ ଦେଇ ଅଛ ବୋଲି
ପାଇଛି ମୁଁ ସବୁ ॥୦॥

ମୁଁ ହିଁ ଯେ ନୟନ ତୁମେ
ନୟନର ଜ୍ୟୋତି
ମୁଁ ଯେ ଏକ କଢ଼ି ତୁମେ
ବସନ୍ତର କାନ୍ତି
ଦେବନି ଓହ୍ଲାଇ ମତେ ତୁମ ପ୍ରେମ ନାବୁଁ ॥୧॥

ମୋର ନିଃଶ୍ୱାସ ପ୍ରଶ୍ୱାସ
ତୁମରି ଆଶିଷ
ତୁମ ପ୍ରେମ ମୋ ଅଧରେ
ଫୁଟେ ହୋଇ ହସ
ଝରଇ ଲୋତକ ତୁମ କଥା ଭାବୁଭାବୁ ॥୨॥

ହାତ ମୋର ଧରି ନିଅ
ତୁମ ଚଲାପଥେ
ତୁମେ ହୋଇବ ସାରଥୀ
ମୋ ଜୀବନ ରଥେ
ଅଧମେ କରିବ ପାରି ଏ ଦାରୁଣ ଭବୁ ॥୩॥

•••

# ଗାଏ ତୁମ ଯଶ

ଗାଏ ତୁମ ଯଶ　　ପ୍ରତି ପ୍ରଭାତରେ
　　ଫୁଲେ ଫୁଲେ ବସି ଅଳି
ସବୁଜ ପତର　　ଗାଏ ତୁମ ଗୀତ
　　ପବନରେ ଝୁଲିଝୁଲି ॥୦॥

ପୂର୍ଣ୍ଣିମା ଜହ୍ନର　　ଚାରୁ ଜୋଛନାରେ
　　ମାଟିଯାଏ ଭିଜିଭିଜି
ମନେହୁଏ ଅବା　　କ୍ଷୀର ସାଗର କି
　　ତମକୁ ଆସିଛି ଖୋଜି
ତୁମେ ଏ ମାଟିର ରାଜରାଜେଶ୍ୱର ରଙ୍କର ରତନ ମାଳି ॥୧॥

ଆଲଟଚାମର　　ଢାଳେ ଦିବାନିଶି
　　ଶରତର କାଶତଣ୍ଡୀ
ବସନ୍ତକାନନ　　ଜୁହାର ଜଣାଏ
　　କବରୀରେ ଫୁଲ ମଣ୍ଡି
ତୁମରି ଚରଣ ରେଣୁରେ ଲୋଟଇ ସରଗ ସଂପଦ ଶିରୀ ॥୨॥

ପ୍ରଦୋଷ ବିହଙ୍ଗ　　ଆସେ ନୀଡ଼େ ଫେରି
　　ଜପିଜପି ତୁମ ନାମ
ତାରାମାନେ ଜାଳି　　ଜାଗର ଦୀପାଳି
　　ଖୋଜୁଥାନ୍ତି ତୁମ ପ୍ରେମ
ପାହାନ୍ତାପହରେ ପଡ଼ନ୍ତି ଘୁମାଇ ସାରା ରାତି ଭାଳିଭାଳି ॥୩॥

•••

# ଧ୍ରୁବତାରା

ତୁମକୁ ଖୋଜିବା ପାଇଁ ମୁଁ ଆସିଲି
ମରତ ମାଟିକୁ ପରା
ତୁମକୁ ନଖୋଜି ଧନ ଜନ ଖୋଜି
ବାଉଳା ମୁଁ ଦିଗହରା ॥୦॥

ପଣ କରିଥିଲି ତୁମ ନାମ ଧରି
ଚାଲିବି ଜୀବନ ବାଟ
ତୁମ ନାମ ଭୁଲି 'ମୁଁ' 'ମୁଁ' ହେଲି
ହେଲି ବଡ଼ ଛଟପଟ
ବୁଝିଲା ବେଳକୁ ବେଳ ଗଡ଼ିଲାଣି ଆକାଶେ ଡାହାଣୀ ଖରା ॥୧॥

ମଣି ନ ଗୋଟାଇ କାଚ ଗୋଟାଇଲି
ଅଣ୍ଟିରେ ଭରିଲି କାଚ
ଜଳବେଣୀ ଭାବି ଯା' ପଛେ ଧାଇଁଲି
ସବୁ ମରୀଚିକା ମିଛ
କ୍ଷମାଦିଅ ପ୍ରଭୁ କ୍ଷମାର ସାଗର ଢାଳି ଆଶିଷର ଧାରା ॥୨॥

ପାରି କରିଦେବ ସେପଟ ଘାଟରେ
ଏତିକି ମୋ ନିବେଦନ
ଘାଟର କଉଡ଼ି ଦେବାପାଇଁ ପ୍ରଭୁ
ନାହିଁ ମୋ ପାଖରେ ଧନ
ଏତେ ନିରାଶାରେ ତୁମେ ଏକା ଆଶା ଭରସାର ଧ୍ରୁବତାରା ॥୩॥

•••

# ସର୍ବନାମ

ପୂରୁବ ଦିଗର ଅରୁଣ ତୁମେ ତ
ପଶ୍ଚିମର ବିବର୍ତ୍ତନ
ରୁଦ୍ର ମଧ୍ୟାହ୍ନର ମାରତଣ୍ଡ ତୁମେ
ଏକ ସୂର୍ଯ୍ୟ ନାମ ଭିନ୍ନ ॥୦॥

ଲୋଡ଼ିଲା ପଣର ତୁମେ ଆଶାବାଡ଼ି
ଶୁଭ କାମନାର କାନ୍ତି
ମାଟିର କବରୀ ସଜାଇବା ପାଇଁ
ତୁମେ ଅନୁରାଗ ଦୀପ୍ତି
ମରତେ ସରଗ ସୁଲଳିତ ଭାବ ସୁକୁମାର ସୁଶୋଭନ ॥୧॥

ଭାବନାର ଦୂର ଗହନ ବନରେ
ତୁମେ ଚନ୍ଦନ ପାଦପ
ଭାବର ସାଗର ସିକତାରେ ତୁମେ
ପାଦଚିହ୍ନ ଦପଦପ
ତୁମେ ଅନୁଭବ ବିଭୂତି ବିଭବ ଆନନ୍ଦ ନନ୍ଦନ ବନ ॥୨॥

ତୁମେ ମହାନଦୀ ସାଳନ୍ଦୀ କାଳନ୍ଦୀ
ସିନ୍ଧୁ ବ୍ରହ୍ମପୁତ୍ର, ଜିରା
ଗଙ୍ଗା ଗୋଦାବରୀ ଯମୁନା କାବେରୀ
ରେବା ଚାରୁ ରତ୍ନଚିରା
ତୁମେ ହେମାଚଳ ତୁମେ ହିମାଚଳ ବିନ୍ଧ୍ୟଗିରି ମେଘାସନ ॥୩॥

୫୩୯ // ବନ୍ଦନିକା

ତୁମେ ଗୀତା ତୁମେ ପୁଣ୍ୟ ଭାଗବତ
କୋରାନ ଓ ବାଇବେଲ
ମାନବିକତାର ସୂତାରେ ସଜଡ଼ା
ଭକତିର ପୂଜାଫୁଲ
ତୁମେ କାବାକାଶୀ ପୁରୀ ରାମେଶ୍ୱର ମଧୁପୁରୀ ବୃନ୍ଦାବନ ।।୪।।

ତୁମେ ଗୁରୁଦ୍ୱାର ମଠ ଓ ମନ୍ଦିର
ତୁମେ ଗୀର୍ଜା ମସ୍‌ଜିଦ୍
ତୁମେ ପାଦୋଦକ କୈବଲ୍ୟ ମୋଦକ
ତୁମେ ତ ମହାପ୍ରସାଦ
ତୁମେ ତ ସାରଥି ତୁମେ ପୁଣି ରଥୀ ରଥ ପଥବିଭୂଷଣ ।।୫।।

•••

# ଅଭିଷେକ

ଫୁଟା ମଲ୍ଲିଫୁଲ ଭରା ଜହ୍ନରାତି
ପାଦରେ ଅଳସୀ ଚାଲି
ମହୁଆ ଅତର ମାଖି ଏ ପବନ
ଆନମନା ଝୁଲିଝୁଲି ॥୦॥

ରସିକପଣର ଭରା ସୁବାସରେ
ବନଭୂମି ତନୁ ବାସେ
ରେଣୁ ରେଣୁ ସେଇ ଜୋଛନା ଝରାରେ
ଅତଣ୍ଡୀଲତା କି ଖସେ
ନୂଆ ଦିନଟିଏ ସତେ କି ଆସୁଛି ପାଖୁଡ଼ା ପାଖୁଡ଼ା ମେଲି ॥୧॥

ରୁପା ଚାଦରର ବେଢ଼ଣରେ କିବା
ଶୋଭା ତାରକସୀ କାମ
ଅଭିଷେକ ପାଇଁ ରାଜକୁମାରର
ଏତେ ସବୁ ଆୟୋଜନ
ସାରା ଆକାଶର ତାରା ଉଜାଗର ନୀରବେ ଜାଗର ଜାଳି ॥୨॥

ନୀଳ ସାଗରର ଲହରୀ ଦୋଳିରେ
ଆକାଶ କି ଆସେ ଖସି
ଶୁଭ କାମନାର ବାରତା ଦିଅନ୍ତି
ସୁରବାଳା ହସିହସି
ସରଗର ଫୁଲ ଫୁଟିବେ ମରତେ ସତେ କି ସରଗ ଭୁଲି ॥୩॥

ନୂଆ ଚେତନାର ଲଳିତ ଝଙ୍କାରେ
ନୂଆ ଆଲୋକ ପରଶେ
ପୁଲକିତ ହେବ ଆଶାର ଆକାଶ
ମଧୁମୟୀ ନବ ବେଶେ ।
ଅଭିନନ୍ଦନିକା ଆମେ ତ ଗାଇବା ନୂଆ ଛନ୍ଦେ ମନଖୋଲି ॥୪॥

# ମାଦକତା

ତୁମେ କି ରହିଛ ନୀଳ ଆକାଶର
ନୀହାରିକା ଧାରେ ଧାରେ
ତୁମେ କି ରହିଛ ପୂର୍ଣ୍ଣିମା ଜହ୍ନର
ଶଶଚିହ୍ନ କଳା ଗାରେ ।।୦।।

ତୁମେ କି ରହିଛ ତାରା ଦୀପାଳିର
ସରୁ ସରୁ ଶିଖା ତଳେ
ଅବା ଅଛ ତୁମେ ସାତରଙ୍ଗ ବୁଣା
ଇନ୍ଦ୍ରଧନୁ ରଙ୍ଗ କୋଳେ
ତୁମେ କି ରହିଛ ଶରତ ସକାଳ ଶିଶିର ମୁକୁର ମାଳେ ।।୧।।

ରହିଛ କି ତୁମେ ମାଟି ମହକରେ
ମଳୟର ମଧୁବାସେ
ରହିଛ କି ତୁମେ ବନ ଝରଣାର
କୁଞ୍ଚିତ ମଞ୍ଜୁଳ କେଶେ
ଅବା ରହିଛକି ସକାଳ ପକ୍ଷୀର ସାମଗାନ ସୁରେସୁରେ ।।୨।।

ମଣିଷ ମନରେ ତୁମେ କି ରହିଛ
ଭରା ଆଶା ଫୁଲଝରି
ଭଲପାଇବାର ନିକୁଞ୍ଜକାନନେ
କିଶଳୟ କେରି କେରି
ମମତା ମଧୁର ଭାଷା ପଦ୍ମବନେ ଆନନ୍ଦର ଅଳି ସୁରେ ।।୩।।
କିଛି ନ ଜାଣି ମୁଁ ଏତିକି ଜାଣିଛି
ଭିତରେ ବାହାରେ ତୁମେ
ତୁମେ ଅଛ ବୋଲି ଏ ସାରା ସଂସାର
ଆଗକୁ ଆଗକୁ ଗମେ
ମାଟିରୁ ଆକାଶ, ଆକାଶରୁ ମାଟି, ତୁମ ପୂଜାଦୀପ ଜଳେ ।।୪।।

•••

# ତୁମ ନାମ

ତୁମ ନାମ ଛଡ଼ା ଆଉ ସବୁ ନାମ
ଲାଗୁଛି ଅଲଣା ମତେ
ତୁମ କଥା ପରି ଆଉ କିଛି କଥା
ଲାଗୁନାହିଁ ଭଲ ଏତେ ॥୦॥

ମନ ମୋ କହୁଛି ସବୁକିଛି ଅଛି
ତୁମେ ଥିଲେ ପାଶେ ପାଶେ
ଭରି ଉଠୁ ଅଛି ମୋ ମନ ଗହନ
ମାଳତୀ ମଧୁର ବାସେ
ବିପଦ ବନ୍ଧନ ଘୁଞ୍ଚି ଯାଉଅଛି ମୋ ଜୀବନ ଚଲାପଥେ ॥୧॥

ମୋ ମନ ମୁକୁରେ ପଡୁଅଛି ଯେବେ
ତୁମ ରୂପ ପ୍ରତିବିମ୍ବ
ହତାଶା ଅନ୍ଧାର ଦୂରେ ଯାଏ ଚାଲି
ପାଇ ଆଶା ଅବଲମ୍ବ
ତୁମେ ମୋର ଆଶା ତୁମେ ମୋ ଭରସା ଭବସିନ୍ଧୁ ସଇକତେ ॥୨॥

ତୁମରି ଆଶିଷ ମୋ ପାଇଁ ପୀୟୂଷ
ମନ୍ଦାକିନୀ ମଧୁଧାରା
ତୁମ ଦିବ୍ୟଦାନ ଆଦରର ଧନ
ମଣି ମୁକୁତା ଓ ହୀରା
ଏଇ ଅଳି ମତେ ଜନମେ ଜନମେ ବନ୍ଧାରଖ ପାଦ ଗତେ ॥୩॥

●●●

# ଆଭୂମ ପ୍ରଣାମ

ମାଆ ତୁମେ ଜଗତର କଲ୍ୟାଣୀ କାରିଣୀ
କ୍ଷମାମୟୀ ସ୍ନେହମୟୀ ଜଗତ ପାଳିନୀ ।।୦।।

ଅନ୍ଧର ଲଉଡ଼ି ଆଉ ଖଞ୍ଜ ଆଶାବାଡ଼ି
ଦରିଦ୍ର ମାଣିକମାଳା ମରୁଜଳବେଣୀ
ଆଶାର ପାହାନ୍ତି ତାରା ଆଲୋକ ବରଣୀ ।।୧।।

ତୁମରି ଆଶିଷ ମାଆ ସଂଜୀବନୀ ସୁଧା
ଦୂର କରେ ଜୀବନରୁ ଯେତେ ସବୁ ବାଧା
ଆନନ୍ଦର ମନ୍ଦାକିନୀ ମୁକତି ସରଣୀ ।।୨।।

ତୁମ ପାଦ ପରଶରେ ଫୁଟେ ଶତଦଳ
ପଙ୍ଗୁ ଗିରି ଲଂଘେ ମାଆ ମୂକଟି ବାଚାଳ
ଦାନବଦଳିନୀ ଦେବୀ ମହିଷାମର୍ଦ୍ଦିନୀ ।।୩।।

ଧୀରଧୀର ଏ ପବନ ତୁମରି ନିଃଶ୍ୱାସ
ଲତାକୁଞ୍ଜ କିଶଳୟେ ତୁମ ମୃଦୁହସ
ବୈଭବ ଦାୟିନୀ ଦେବୀ ଦୂରିତ ନାଶିନୀ ।।୪।।

ଆଭୂମ ପ୍ରଣାମ ମାଆ ତୁମରି ଚରଣେ
ସେବା ଦାସ କର ମତେ ଜନମେ ଜନମେ
ଦଶଭୁଜା ଦୟାମୟୀ ଜଗତଜନନୀ ।।୫।।

●●●

# ତଥାପି ଚାଲିଛି

ଯାଉଅଛି ବହୁବାଟ ଧୀରେଧୀରେ ଚାଲିକି
ତୁମ୍ଭ ଦରଶନ ପ୍ରଭୁ ରହିଯିବ କାଲିକି ॥୦॥

ଆଲୁଅ ଗଲେ ତ ଚାଲି ଅନ୍ଧାର ଆସିବ ମାଡ଼ି
ଦିଶିବନି ବାଟଘାଟ ଯିବି ବାଟ ଭୁଲିକି ॥୧॥

ଅଳପ ଚାଲୁଛି ବାଟେ ବେଶୀ ଚାଲୁଛି ଅବାଟେ
ପାରି ହେବାକୁ ପଡୁଛି ମରୁଭୂମି ବାଲିକି ॥୨॥

ଗଛ ନାହିଁ ଛାଇ ନାହିଁ ନାଗଫେଣୀ କଣ୍ଟାଭୂଇଁ
ହାଲିଆରେ ପଡ଼େ ଶୋଇ ଦେଇ ଗଡ଼ଘାଲିକି ॥୩॥

ଚାଲିବାକୁ ନାହିଁ ବଳ ବେଳ ହେଲାଣି ଅବେଳ
ଯେ ଦିଗେ ଚାହିଁଲେ ଦିଶେ ସବୁ ଖାଲି ଖାଲିକି ॥୪॥

ଆଗରେ ପାଦକୁ ରଖି ନିଜେ ହୋଇ ନିଜ ସାକ୍ଷୀ
ଏଥର ଚାଲିବି ବାଟ କାଳେ ପ୍ରେମ ଝୁଲିକି ॥୫॥

ଆସିଲେ ଝଡ଼ ବରଷା ତୁମକୁ କରି ଭରସା
ପଛକୁ ଚାହିଁବି ନାହିଁ ଆଉ ବୁଲି ବୁଲିକି ॥୬॥

•••

# ନିବେଦନ

ଭକତେ ଡାକିଲେଣି ଆସ ହେ ଜଗନ୍ନାଥ
ଡାକୁଛି ତୁମ ନନ୍ଦିଘୋଷ
ପହଣ୍ଡି ବିଜେକରି ଆସ ହେ ଝୁଲିଝୁଲି
ଭକତ ନେତ୍ର ହେବ ତୋଷ ॥୦॥

ସୁର ନାଗ ନର ଗନ୍ଧର୍ବ କିନ୍ନର
ତୁମକୁ ଅଛନ୍ତି ଚାହିଁ
ବଡ଼ଦାଣ୍ଡ ଆଜି ଉଛୁଳି ପଡୁଛି
ଭକତ ଜନଙ୍କୁ ନେଇ
ତୁମ ଦରଶନ ପାଇବା ପାଇଁକି ଚାହିଁଛନ୍ତି ଦଶଦିଶ ॥୧॥

ଦେବରାଜ ଆଜି ପଠାଇ ଅଛନ୍ତି
ପାରିଜାତ ଫୁଲମାଳା
ସେହି ମାଳା ଧରି ଉଭା ହୋଇଛନ୍ତି
ତୁମ ପାଇଁ ଦେବବାଳା
ନାରଦଙ୍କ ବୀଣା ସପତ ସୁରରେ ଗାଉଅଛି ତୁମ ଯଶ ॥୨॥

ଅଳକା ବିଭବ ମଉଳି ପଡ଼ିବ
ଶ୍ରୀକ୍ଷେତ୍ର ସୁଷମା ଦେଖି
ଗଗନେ ପବନେ ଆକାଶେ ବତାସେ
ବିରାଜୁଛି ଚକାଆଖି
ଅଦୂରେ ସିନ୍ଧୁର ଗୁରୁ ଗରଜନ ତୁମ ପାଇଁ ବାଦ୍ୟଘୋଷ ॥୩॥

କିଏ ନାଚୁଅଛି କିଏ ଗାଉଅଛି
କିଏ ମାରୁ ଅଛି ତାଳି
ଦୁଃଖୀ ଚାହିଁ ଅଛି ଦୁଃଖ ଜଣାଇବ
ନୟନୁ ଲୋତକ ଢାଳି
ଆସ ଆସ ପ୍ରଭୁ ନକର ବିଳମ୍ବ ଚାହିଁଅଛି ନନ୍ଦିଘୋଷ ॥୪॥

•••

# ମତେ ମିଳୁ

ମତେ ମିଳୁ ତବ ପାଦ ଦରଶନ
ଗୋଧୂଳି ବେଳାରେ ପ୍ରଭୁ
ଆଉ କିଛି ନାହିଁ ମାଗିବାକୁ ମୋର
ତୁମେ ତ ଦେଇଛ ସବୁ ।।୦।।

ତୁମରି ଜଗତ ଦେଖିବା ପାଇଁ କି
ତୁମେ ତ ଦେଇଛ ଆଖି
ଦେଇ ଅଛ କାନ ଶୁଣିବାକୁ ତୁମ
ଯଶଗାନ ମନ ଲାଖି
ବସନ୍ତ କାନନେ ହଜିଯାଏ ମନ ତୁମ କଥା ଭାବୁଭାବୁ ।।୧।।

ବେଳେବେଳେ ଲାଗେ ତୁମେ ମତେ ଖୋଜ
ଯାଏ ମୁହିଁ ଯେବେ ହଜି
ଶୁଭେ ତୁମ କଥା ଅତି ଧୀରଧୀର
ପାରେ ନାହିଁ ମୁହିଁ ବୁଝି
ତୁମେ ଅଛ ବୋଲି ଲାଗେ ଭଲ ଏଇ ଜୀବନ ଜଗତ ସବୁ ।।୨।।

ନିଶୀଥ ଝଡ଼ରେ ଭାଙ୍ଗି ପଡ଼େ ଆହା
କେତେ କେତେ ଗଛ ଡାଳ
ପୁଣି ଆସିଯାଏ ନୂତନ ପତର
ପେନ୍ଥାପେନ୍ଥା ସଜଫୁଲ
ନଇଁ ପଡୁଅଛି ତୁମ ପାଦେ ମଥା ତୁମ କଥା ଭାବୁଭାବୁ ।।୩।।

●●●

# ଘୋଷଯାତ୍ରା

ଆଷାଢ଼ ହାତରେ କଦମ୍ବ କୁସୁମ
ଆକାଶ ଦେଶରେ ମେଘ ବାଦ୍ୟସ୍ୱନ
ବାମନଙ୍କୁ ଆଜି ରଥରେ ଦେଖିଣ
ତୋଷ ହେବେ କୋଟି ଜନ ।।୦।।

ମହତୀ ବୀଣାରେ ଆଜି ସାତସୁର
ଦେବବାଳା ହାତେ ପାରିଜାତମାଳ
ଚତୁର୍ମୁଖେ ବ୍ରହ୍ମା ବେଦଗାନେରତ, ଶୁଭୁଛି ଦୁନ୍ଦୁଭି ତାନ ।।୧।।

ମରତେ ବୈକୁଣ୍ଠ ଆଜିପୂର୍ଣ୍ଣ ଶୋଭା
ସୁର ନାଗ ନର ବଡ଼ଦାଣ୍ଡେ ଉଭା
ଧୀର ପବନର ଲହରାରେ ଶୁଭେ ଜୟ ଜଗନ୍ନାଥ ନାମ ।।୨।।

ନବ କଳେବର ଘୋଷଯାତ୍ରା ପାଇଁ
ଦାଣ୍ଡେ ଆସୁଛନ୍ତି ବ୍ରହ୍ମାଣ୍ଡ ଗୋସାଇଁ
ଦଶ ଦିଗ ଆଜି ଆନନ୍ଦେ ମଗନ ରଙ୍କ ପାଇଛି କି ଧନ ।।୩।।

ବାହୁ ଟେକି ଭକ୍ତ ନାଚୁଛନ୍ତି ଢଳି
କିଏ ଜପୁଛନ୍ତି ତୁଳସୀର ମାଳି
ତ୍ରିରଙ୍ଗୀ ଭଙ୍ଗୀରେ କିଏ ନାଚୁଛନ୍ତି ଭାବରେ ମଗନ ମନ ।।୪।।

ଭକତଙ୍କ ସାଥେ ହୋଇ ଏକ ମନ
ନନ୍ଦିଘୋଷ ଆଜି କରେ ଆବାହନ
ଆସ ମହାବାହୁ ତୁମ ଦରଶନେ ସବୁ ନେତ୍ର ହେଉ ଧନ୍ୟ ।।୫।।

# ହାତ ଧରି ମୋର

ହାତ ଧରି ମୋର ଭିତରକୁ ନିଅ
ଏତିକି କରୁଛି ଅଳି
ଦିନପରେ ଦିନ ସରି ତ ଯାଉଛି
ବାହାରେ ବାହାରେ ବୁଲି ॥୦॥

ଭିତରକୁ ଗଲେ ତୁମକୁ ଭେଟିବି
ଜୀବନ ହେବ ମୋ ଧନ୍ୟ
ତୁମରି ଆଶିଷ ତୁମରି କରୁଣା
କରିବ ଜୀବନ ପୂର୍ଣ୍ଣ
ଅନ୍ତର ଚେତନା ଜାଗରିତ ହେବ ସଜଫୁଟା ଫୁଲ ଭଳି ॥୧॥

ଏଇଥିପାଇଁ ତ ଜନମ ଲଭିଛି
ଧୂଳିର ଧରଣୀ ତଳେ
ବୃଥା ନ ହେଉ ଏ ମାନବ ଜନମ
ଏତିକି ପ୍ରାର୍ଥନା କରେ
ତୁମରି ସନ୍ତାନ ହେବାକୁ ଆଶିଷ ଦିଅ ମୋ ମଥାରେ ଢାଳି ॥୨॥

●●●

# ଏତିକି ମାଗୁଣି

ମାଆ ଦୟାମୟୀ ତୁମରି ଋଣକୁ
ପାରିବି ନାହିଁ ମୁଁ ଶୁଝି
ବୁଝିବାକୁ ଚାହିଁ ତୁମରି ମହିମା
ପାରୁ ନାହିଁ ମୁହିଁ ବୁଝି ।।୦।।

ଡାକିଲେ ଆକୁଳେ ଶୁଣ ତୁମେ ଡାକ
ପଠାଅ କରୁଣା ଫେଡ଼ିବାକୁ ଦୁଃଖ
ପାଉ ନାହିଁ କାହିଁ ତୁମପରି କେହି ଏ ସାରା ଜଗତ ଖୋଜି ।।୧।।

ଝୁଣ୍ଟି ପଡ଼ିଲେ ମୁଁ ନିଅ ତୁମେ ତୋଳି
ସତ କହୁଛି ମାଆ ତୁମେ ତୁମ ଭଳି
ଲୁହ ପୋଛିଦିଅ କାନିପଣତରେ ଦୁଃଖ ଦାଉ ଯାଉ ଭାଜି ।।୨।।

ଦନୁଜଦଳିନୀ ମାଆ ଦଶଭୁଜା
ପଲ୍ଲୀ ଓ ନଗରେ ଶାରଦୀୟ ପୂଜା
ଆକାଶ ବିମଳ ଦିଗ ପରିମଳ ନଦୀ ନିରିମଳ ଆଜି ।।୩।।

ଅଗସ୍ତି କୁସୁମ ଖେଳୁଅଛି ଦୋଳି
ଆନନ୍ଦ ମନରେ ଗଛ ଡାଳେ ଝୁଲି
ଝରା ଶେଫାଳିର ଜୀବନ ଯେ ଧନ୍ୟ ମାଆ ତୁମ ପାଦ ପୂଜି ।।୪।।

ଚନ୍ଦ୍ରମଣ୍ଡଳରେ ତାରା ଦୀପ ଜଳେ
ମାଆ ତୁମ ପୂଜା ନିରାଜନା ବେଳେ
କୋଟି ପଦ୍ମ କାନ୍ତି ଜିଣା ପାହାନ୍ତିରେ ଜଡ଼ଭାବ ଯାଏ ହଜି ।।୫।।

ତୁମ ପାଦ ତଳେ ରହୁ ମୋର ମନ
ବନ୍ଧାରଖ ମାଆ ମୋର ଏ ଜୀବନ
ଜନମେ ଜନମେ ସେବା ଦାସ କର ଏତିକି ମାଗୁଣି ଆଜି ।।୬।।

●●●

# ମାଣିକ ଦୀପ

ଦୂର ଆକାଶର ଚାନ୍ଦ ଆଇନାରେ
ତୁମ ମୁହଁ ମତେ ଦିଶେ
ରାଗ ଆଶାବରୀ ଧ୍ୱନିମାଳା ଶୁଭେ
ଅଦୂର ଗଗନ ଦେଶେ ।।୦।।

ଘୁମାଏ ଶାମୁକା ବିଜନ ବେଳାରେ
କାହା ବାଟ ଚାହିଁଚାହିଁ
ଅଳସୀ ମନର ଆଖି ପରଦାରେ
ପଡ଼ିଯାଏ କାହା ଛାଇ
ସେ ବାଟ ତୁମର ସେ ଛାଇ ତୁମର ଅପେକ୍ଷାର ଭାଗଶେଷେ ।।୧।।

କୁଞ୍ଜ କିଶଳୟ ଗବାକ୍ଷରେ ଜଳେ
ମାଣିକର ନୂଆ ଦୀପ
ପବନ ଛନ୍ଦର ଅନୁବନ୍ଧେ ବାଜେ
ଭରସାର ଶୁଭଶଙ୍ଖ
ଅବସୋସ ଆଉ ଶୋଷର ମଝିରେ ରେଶମୀ ରାତିକି ବାସେ ।।୨।।

ମଧୁ ଜୋଛନାର ପରଶରେ ହସେ
ଚୂନା ଚୂନା ଘାସ ଫୁଲ
ମାଟିର ପରଶେ ମିଠାମିଠା ହସେ
ହସ ତା' ଅମୂଲ ମୂଲ
ନମନୀୟତାର ମହାଭାବେ ତା'ର ମନ ମହମହ ବାସେ ।।୩।।

●●●

# ଆଉ କିଛି ମାଗୁନାହିଁ

ତୁମକୁ ପାଇଲେ ସବୁ ତ ପାଇବି
ପାଇବାର କିଛି ନାହିଁ
ହେ ପରମ ପ୍ରଭୁ ଏତିକି ମାଗୁଣି
ଆଉ କିଛି ମାଗୁନାହିଁ ॥୦॥

ତୁମକୁ ଦେଖିବି ବନ ଗହନରେ
ଭରା ସବୁଜିମା ଦେଶେ
ତୁମକୁ ଦେଖିବି ମାଟି ଆକାଶର
ମିଳନ ମହୁଆ ବେଶେ
ତୁମକୁ ଶୁଣିବି ବନ ଝରଣାର କୁଳୁକୁଳୁ ନାଦେ ମୁହିଁ ॥୧॥

ଫୁଲ ପାଖୁଡ଼ାର ବିମଳ ଝୁଲଣେ
ଦେଖିବି ତୁମରି ହସ
କୁମାରୀ ଲାଜର ଅଳସୀ ଆବେଗ
ଗାଉଥିବ ତୁମ ଯଶ
ପ୍ରକୃତି କୁଞ୍ଜରେ ତୁମ ରୂପ ବିଭା ତୁଳନା ତାହାର ନାହିଁ ॥୨॥

ଆନନ୍ଦ ରୂପରେ ଦିଗ ଦିଗନ୍ତରେ
ସବୁଠି ରହିଛ ତୁମେ
ଚେତନାର ତୁମେ ରାଜରାଜେଶ୍ୱର
ଏ ସାରା ମରତ ଭୂମେ
ତୁମେ ଆଶାଆଉ ତୁମେ ତ ଭରସା ତୁମ ବିନା କିଛି ନାହିଁ ॥୩॥

●●●

# ତୁମ କଥା

ତୁମ ଦରଶନ ପାଇବା ପାଇଁ କି
ଆକୁଳେ ବସିଛି ଚାହିଁ
ଦିନ ପରେ ରାତି ରାତି ପରେ ଦିନ
ସମୟ ଯାଉଛି ବହି ॥୧॥

ମନ ହୁଏ ମୋର ତୁମ କଥା ମତେ
କହନ୍ତା କେ ଦିନରାତି
ଶୁଣି ଶୁଣି ତାହା ତୁଟିଯାନ୍ତା ଆହା
ଅବିଳମ୍ବେ ଭବତାତି ॥୨॥

ନିରାଶାରେ ତୁମେ ଦେଇ ଅଛ ଆଶା
ସାହସ ପ୍ରଶାନ୍ତ ଭାବ
ବିଳାପ ନ କରି ହସିବା ପାଇଁ କି
ମନରେ ଦେଇଛ ଦମ୍ଭ ॥୩॥

ଭାଗ୍ୟ ବଦଳିବ ରାତି ପାହିଯିବ
ହୋଇବ ନୂଆ ପାହାନ୍ତି
ନବ ଚେତନାର ଅରୁଣ କିରଣେ
ଝଲସିବ ନୂଆ କାନ୍ତି ॥୪॥

ଦୁଃଖ ଯନ୍ତ୍ରଣାର ମୂଳକଥା ଅଟେ
ଅହଂଭାବ ବଡ଼ ପଣ
ସବୁ ସୁଖ ଶାନ୍ତି ମିଳିବ ଛାଡ଼ିଲେ
ଅହଂଭାବ ଅନୁକ୍ଷଣ ॥୫॥

ତୁମ ନାମ ଧରି ବାଟ ଚାଲୁଥିଲେ
ବିପଦ ଯେ ଯିବ ଘୁଞ୍ଚି
ଚଲାପଥେ ଯେତେ କଳୁଷ କାଳିମା
ତୁମ ନାମ ଦେବ ପୁଞ୍ଛି ॥୬॥

ଅଗ୍ନିବୀଜ ଆଉ ଚନ୍ଦ୍ର ବୀଜ ମିଶି
ହୋଇଅଛି ମା' ନାମ
ସେଇ ନାମ ଧରି ଯଥାଯଥ କର୍ମ
କରିବାକୁ ଦିଅ ଜ୍ଞାନ ॥୭॥

ତୁମ କାମ ସାରି ତୁମ ଧାମେ ଫେରି
ଯାଏ ମୁହିଁ ଏଇ ଅଳି
ତୁମ ଚରଣରେ ମନ ଥାଉ ସଦା
ପଦ୍ମଫୁଲେ ଯଥା ଅଳି ॥୮॥

●●●

# ଶୋଭାବିଭବ

ଶିଶିରରେ ଭିଜା ଘାସଫୁଲ କଢ଼ି
ମନୋରମ ଶୁଭ କାନ୍ତି
ଦେଖିଲି ଯେଦିନ ବୁଝିଲି ସେଦିନ
ତୁମେ ହୀରା ତୁମେ ମୋତି ।।୦।।

ଯେଦିନ ଦେଖିଲି ମେଘ ମୁଲକରେ
ଇନ୍ଦ୍ରଧନୁ ରଙ୍ଗରେଖା
ରେଖା ନୁହେଁ ଧନୁ ବୁଣା ହୋଇଅଛି
ସାତରଙ୍ଗେ ମଧୁମଖା
ଆଖି ଗଲା ଲାଖି ମନ ଗଲା ଲାଗି ଦେଖି ତୁମ ରୂପକାନ୍ତି ।।୧।।

ଯେଦିନ ଦେଖିଲି ପଦ୍ମପାଖୁଡ଼ାରେ
ଢଳଢଳ ଜଳ ବିନ୍ଦୁ
କିରଣ ମାଳୀଙ୍କ କିରଣ ମାଳାରେ
ଢଳ ଢଳ ସାତ ସିନ୍ଧୁ
ଚଉଦିଗ ଭରି ଆନନ୍ଦଲହରୀ ପ୍ଲାବନରେ ସତ୍ୟ ଶାନ୍ତି ।।୨।।

ଯେଦିନ ଶୁଣିଲି ପକ୍ଷୀ କାକଳିରେ
ଛନ୍ଦାୟିତ ମଧୁତାନ
ସେଦିନ ଜାଣିଲି ଏ ଜଗତ ଆହା
ଆନନ୍ଦ ନନ୍ଦନବନ
ଜୀବନର ପୂଜା ପାଇଁ ଲୋଡ଼ା ସତେ ପ୍ରୀତିର ହୀରକ ଜ୍ୟୋତି ।।୩।।

•••

# ଶିଳ୍ପୀ ଓ ଶିଳ୍ପକଳା

ଶିଳ୍ପୀ ସିନା ନାହିଁ ଅଛି ଶିଳ୍ପକଳା
ମୂକସାକ୍ଷୀ ହେବା ପାଇଁ
ଶିଳ୍ପକଳା ଫାଙ୍କେ ଶିଳ୍ପୀ ମୁହଁ ଦିଶେ
କିଛି ଖରା କିଛି ଛାଇ ।।୧।।

ପଥରରେ ଅଙ୍କା ସରୁ ସରୁ ଲତା
ଲତାରେ ଫୁଟିଛି ଫୁଲ
ଫୁଲ ପାଖୁଡ଼ାରୁ ଲାବଣ୍ୟ ଝରଇ
ଦିବାନିଶି ଝଲମଲ ।।୨।।

ମନ୍ଦିର ଗଠନ ବେଳାରେ ସେଦିନ
ଲାଗିଥିବେ ଶିଳ୍ପୀ କେତେ
ବଙ୍କା ହୋଇଥିବ କେତେ ଯେ ନିହାଣ
ପଥର ଖୋଳାରେ ସତେ ।।୩।।

ରାଜାଙ୍କ ଆଦେଶ ମଥାର ମୁକୁଟ
ତଳେ ନୁହେଁ ଥୋଇବାର
ତଳେ ଥୋଇ ଦେଲେ ସରିଗଲା କଥା
ଆସିବ ସଙ୍କଟ ଘୋର ।।୪।।

ଶିଳ୍ପୀ ଚିତ୍ତ କେତେ ମାଦକ ମଧୁର
କିଏ ବା ପାରିବ ବୁଝି ?
ନୀଳ ଆକାଶରେ ଚାଲିଥାଏ ସିଏ
ନୀହାରିକା ଖୋଜିଖୋଜି ।।୫।।

ଦୂରାଗତ ଶିଳ୍ପୀ ମନ ବନାନୀରେ
ଲାଗିଯାଉଥିବ ନିଆଁ
କିଶଳୟ କୁଞ୍ଜେ ଶୁଭୁଥିବ ଯେବେ
କୋଇଲିର କୁହୁ ଆହା ॥୬॥

ଅଲକ୍ଷ୍ୟରେ ତା'ର ଖସି ପଡ଼ିଥିବ
ହାତରୁ ନିହାଣ ସତେ
କାହା ମୁଖ ଛବି ଝଟଝଟ ହୋଇ
ଦିଶୁଥିବ ନେତ୍ର ପଥେ ॥୭॥

ଭାବସାଗରରେ ଉଠୁଥିବ କେତେ
ଛଳଛଳ ବୀଚିମାଳା
ରାଜାଙ୍କ ଆଦେଶ ମନେପଡ଼ିଗଲେ
ଭଙ୍ଗା ପଡୁଥିବ ପରା ॥୮॥

ଶିଳ୍ପୀ ତ ଯାଇଛି ଅଫେରା ରାଇଜେ
ଆଉ ଫେରିବାର ନାହିଁ
ରଜାବାଟ ନୁହେଁ ଶିଳ୍ପୀ ବାଟ ଚାହିଁ
ଶିଳ୍ପକଳା ଅଛି ରହି ॥୯॥

ସକାଳେ ଚାହିଁଛି ସଂଜରେ ଚାହିଁଛି
ଆସିବ ଆସିବ ବୋଲି
ତା' ହାତ ପରଶେ ଭରିଯିବ ବୋଲି
ଝୁରାମନ ଭିକ୍ଷା ଝୁଲି ॥୧୦॥

❀❀❀

# ଦୂରସୀମାନ୍ତ

ତନ୍ଦ୍ରାଭରା ଏ ଲାଜୁଆ ସକାଳ
ଖୋଷାରେ ମଉଳାଫୁଲ
ଝରା ପତରର ପାଉଁଜିରେ ବାଜେ
ପ୍ରୀତିଭିଜା ଗୀତି ସୁର ॥୦॥

ଚହଲା ଲହାରୀ ବେଳା ଛୁଇଁ ଭାସେ
ବୁଝିବାର ନିଶା ଖୋଜିବାରେ ମିଶେ
ମହୁଆ ବାସରେ ମନ ମହକାଇ ଦୂରେ ହସେ ଚକ୍ରବାଳ ॥୧॥

ଭାବନା ବିଳାସ ଭଙ୍ଗା ଅଳସରେ
ଭରିଦିଏ କିଏ ମନ କଳସରେ
ଭାରି ଭଲ ଲାଗେ ଶୁଣିବା ପାଇଁ କି ମନ ମଣିଷର ସୁର ॥୨॥

ତା'କଥାରୁ ଝରେ ବିମଳ ଜୋଛନା
କେରି କେରି ଚାରୁ କୁସୁମ ରଚନା
ପରାଣ ରେଣୁରେ ମୋହନ ବେଣୁର ବାଜି ଉଠେ ସାତସୁର ॥୩॥

ସେଇ ସାତସୁର ଭରିଦିଏ ଆଶା
ନିଜକୁ ବୁଝିବା ପାଇଁ ନୂଆ ଭାଷା
ଆଗକୁ ଯିବାକୁ ଇଙ୍ଗିତ ଦିଏ ସେ ହୋଇ ଅତି ଆପଣାର ॥୪॥

ଦୂର ସୀମାନ୍ତର ସେ ପାରେ ଆଲୋକ
ଦୂର ଦିଗନ୍ତର ସେ ପାରେ ପୁଲକ
ସେ ଆଲୋକ ଡାକେ ଅତି ଆଦରରେ ଭାଙ୍ଗିବାକୁ ଘୁମଘୋର ॥୫॥

ନୂଆ ଚେତନାର ନୂତନ ମୂଲକ
ନୂଆ ସବୁଜିମା ନୂତନ ମହକ
ଅସୀମ ଆଶାରେ ବସିଛି ଅନାଇଁ କଣ୍ଠେ ଆବାହନୀ ସୁର ॥୬॥

•••

# ନାଲି ସୁରୁଯ

ଆଶାର ଚଉରାମୂଳେ ତୁମେ ନାଲି ସୁରୁଯ
ତୁମେ ତ ଗୀତିକବିତା ମୁଁ ସାଦା କାଗଜ ॥୦॥

ମଧୁ ଜୋଛନା ପରଶେ
ମଲ୍ଲୀ ହେନା ଝୁଲିବାସେ
ତାରା ଦୀପାଳି ଜଳାଇ
ଆକାଶ ବୋଇତ ହସେ
ଅଳସି ପବନ ଭାଙ୍ଗେ
ବନଦେହ ଦରଜ ॥୧॥

ଖଣ୍ଡ ଖଣ୍ଡ ଧଳାମେଘ
ଭାସି କହେ କାହାଣୀ
ଲାଜକୁଳୀ ନାୟିକାର
ସରୁ ସରୁ ଚାହାଣୀ
ତୁମେ ମୋର ରାଜା
ଆଉ ମୁଁ ତୁମର ରାଇଜ ॥୨॥

●●●

ଜୀବନଗୀତି

# କେମିତି କେମିତି

ଜୀବନ ନଦୀର ଧାରେ ସୋରିଷ କ୍ଷେତର ମାୟା
ତା' ଉପରେ ପଡ଼ିଗଲେ ଭସାବାଦଲର ଛାୟା
ଦିଶେ ଖାଲି କେମିତି କେମିତି
ନୁହେଁ ଖରା ନୁହେଁ ଛାଇ, କିଏ ସତେ ମାରେ ହାଇ
ଥକିଗଲେ ଯେମିତି ଯେମିତି ॥୦॥

ନଦୀ ତ ଚାହେଁନା ଫେରି ସେ ଉଦାସୀ ବେଳାକୁ
କାହା ଡାକ ଶୁଣେନା ସେ ନ ଚାହେଁ ସେ କାହାକୁ
ସିଏ ସତେ କେମିତି କେମିତି
ବୁଝିଲେ ନ ହୁଏ ବୁଝି, ଖୋଜିଲେ ନ ହୁଏ ଖୋଜି
ସିଏ ଖାଲି ସେମିତି ସେମିତି ॥୧॥

ତଥାପି ତ ଲାଗେ ଭଲ ନଦୀଛୁଆଁ ପବନ
ଶୀତଳ ପରଶ ତା'ର ନିଦାଘର ଚନ୍ଦନ
ସତେ ସିଏ କେମିତି କେମିତି
ବହୁ କଥା ଜାଣେ ସିଏ ଲାଗେ କିଛି ଜାଣେ ନାହିଁ
ସତେ ଅବା ଏମିତି ଏମିତି ॥୨॥

●●●

# ତୁମେ ହିଁ ତୁମେ

ତୁମେ ଶୀତ ପାହାନ୍ତିର ଶୀତଳତା
ତୁମେ ନୀଳବୀଚିମାଳା ଚଞ୍ଚଳତା
ତୁମେ ପ୍ରଣୟିନୀ ପ୍ରୀତି ପ୍ରବଣତା
ତୁମେ ପ୍ରଣୟ ମୋହନ ମାଦକତା ।।୧।।

ତୁମେ ଭକତ ପରାଣ ବ୍ୟାକୁଳତା
ତୁମେ ବିରହୀ ମନର ଆକୁଳତା
ତୁମେ ବାସନ୍ତୀ ସଞ୍ଜର ମଧୁରତା
ତୁମେ ଶ୍ରାବଣୀ ମେଘର ଗମ୍ଭୀରତା ।।୨।।

ତୁମେ ନୀଳ ପାରାବାର ବିଶାଳତା
ତୁମେ ମାତୃମମତାର ଗଭୀରତା
ତୁମେ ସଜଫୁଟା ଫୁଲ ପ୍ରଫୁଲ୍ଲତା
ତୁମେ ଶିଶୁ ମିଠାହସ ସରଳତା ।।୩।।

ତୁମେ ଘର ବାହୁଡ଼ାର ଅନୁଚିନ୍ତା
ତୁମେ ଶୋଷିଲା ପ୍ରାଣର ଆତୁରତା
ତୁମେ ପରାଜିତ ମୁଖ ମଳିନତା
ତୁମେ ବିଜନ ବିଳାସୀ ନୀରବତା ।।୪।।

ତୁମେ ଅଳସ ପାଦର ଶିଥିଳତା
ତୁମେ ଭରାସଦିଚ୍ଛାର ଶକ୍ତିମତ୍ତା
ତୁମେ ଦରଦୀ ଆଗରେ ମନବ୍ୟଥା
ତୁମେ ଭୋକିଲା ପ୍ରାଣର ଅନ୍ନଚିନ୍ତା ।।୫।।

ତୁମେ ଭାବୁକର ଭାବଗଭୀରତା
ତୁମେ ଚନ୍ଦ୍ରରଜନୀର ମସୃଣତା
ତୁମେ କବିଚିତ୍ତ ସ୍ପର୍ଶକାତରତା
ତୁମେ ଏକାକୀ ଜୀବନ ବାସ୍ତବତା ।।୬।।

ତୁମେ ମିଠା ମିଠା ସ୍ମୃତି ସରସତା
ତୁମେ ବିଜୟଲାଭର ହରଷତା
ତୁମେ ପାହାନ୍ତି କଢ଼ିର ଅଧୀରତା
ତୁମେ ସଜଫୁଲେ ଅଳି ଗୀତିକଥା ।।୭।।

●●●

# ଜୀବନ

ଭାବି ଭାବି ଜୀବନକୁ ପାରୁନି ମୁଁ ଜାଣି
ଏମିତି କେମିତି ହୁଏ କାହିଁକି କେଜାଣି !
ପୁରୁଣାରେ ନୂଆ କି ସେ
ନୂଆରେ ପୁରୁଣା
ଜଣାରେ ଅଜଣା କିବା
ଅଜଣାରେ ଜଣା
କାହାଣୀରେ ଗୀତ କି ସେ ଗୀତରେ କାହାଣୀ ॥୧॥
ଭାବନାରେ ଭାବ ଅବା
ଭାବରେ ଭାବନା
କଳ୍ପନାରେ ବାସ୍ତବ କି
ବାସ୍ତବେ କଳ୍ପନା
ଯାମିନୀର ଅମା କିବା ଅମାର ଯାମିନୀ ॥୨॥
ନିରାଶାରେ ଆଶା ଅବା
ଆଶାରେ ନିରାଶା
ଭାଷାରେ ଭାବନା ଅବା
ଭାବନାରେ ଭାଷା
ଶ୍ରାବଣର ଲୁହ କିବା ଲୁହର ଶ୍ରାବଣୀ ॥୩॥
ଜଳରେ ନଉକା ଅବା
ନଉକାରେ ଜଳ
ଲତାର ପତର କିବା
ଲତାରେ ପତର
ପାଣିରେ ପାଖୁଡ଼ା ଅବା ପାଖୁଡ଼ାରେ ପାଣି ॥୪॥
ଚନ୍ଦନର ବାସ କିବା
ବାସର ଚନ୍ଦନ
ପବନର ଛନ୍ଦ ଅବା
ଛନ୍ଦର ପବନ
ପାଣିର ଭଉଁରୀ କିବା ଭଉଁରୀର ପାଣି ॥୫॥

●●●

# କରୋନାଗୀତି- ୧

କାହୁଁ ଆଇଲା ଏ କରୋନା
ଅସ୍ତବ୍ୟସ୍ତକଲା ଜନ ଜୀବନକୁ
କହନା ତା'କଥା କହନା ।୦।

ମଣିଷ ମଣିଷ ଦି ମିଟରୁ ଦୂରେ
ମାସ୍କ ରହିଲା ମଣିଷ ମୁହଁରେ
ସାବୁନ ପାଣିରେ ହାତ ଧୁଆଇଲା, କହିଲା ପଦାକୁ ଯାଆନା ।୧।

ସଭାସମିତିକୁ କରିଦେଲା ଦୂର
ଭକତକୁ ମନା ମନ୍ଦିର ଦୁଆର
ବିବାହ ବ୍ରତରେ କହିଲା କରୋନା ଅଧିକ ଲୋକଙ୍କୁ ଡାକନା ।୨।

ବୟସାନୁସାରେ ଟୀକା ନିଅ ବୋଲି
ସରକାରଙ୍କର କଥାକୁ ନଭୁଲି
ଟିକାଯିବାନେଇ ତାରିଖକୁ ଗଣି କରିବାନି କିଛି ବାହାନା ।୩।

●●●

# କରୋନାଗୀତି-୨

ଏ କୋଭିଡ୍ ମହାମାରୀ
　　　　　ଦିନୁଦିନ ଯାଏ ବଢ଼ିବଢ଼ି
ମଣିଷ ଉପରେ ଦାଉ ସାଧୁଛି ସେ
　　　　　ଦାନ୍ତକଡ଼ମଡ଼ କରି ।୦।

ମୁଣ୍ଡବିନ୍ଧା, ତଣ୍ଟିବଥା ସହ ଜର
ଗୋଡ଼ହାତ ବିନ୍ଧା ଦୁର୍ବଳଶରୀର
ନାଲିନାଲି ଚିହ୍ନ ଚର୍ମରେ ଦିଶିଲେ ପରୀକ୍ଷା କରନା ଡେରି ।୧।

ପଜିଟିଭ ହେଲେ ହୁଅନାହିଁ ବ୍ୟସ୍ତ
ଅଉଷଧ ନେଲେ ହୋଇଯିବ ସୁସ୍ଥ
ମନୋବଳରଖି କରୋନାର ନଇ ହୋଇପାରେ ଜଣେ ପାରି ।୨।

ବଡ଼ ଅଉଷଧ ସଚେତନହେବା
ଅଦରକାରୀରେ ପଦାକୁ ନଯିବା
ଦରକାରଥିଲେ ବାହାରକୁ ଯାଅ ମୁହେଁ ମାସ୍କ ପିନ୍ଧି ସାରି ।୩।

ବାହାରୁ ଆସିଲେ ଧୋଇବାକୁ ହାତ
ଭୁଲିବ ନାହିଁଟି ଏଇ ମହାମନ୍ତ୍ର
ସତର୍କ ରହିଲେ କୋଭିଡ଼ଭୂତାଣୁ ପାରିବେନି କିଛି କରି ।୪।

●●●

# କରୋନାଗୀତି-୩

ବର୍ଷକରୁ ଅଧିକ ସମୟ
ରହିଲାଣି କୋଭିଡ୍ ନାଇଣ୍ଟିନ୍
ସାରାବିଶ୍ୱେ କରି ପ୍ରଭାବିତ, ଜୀବନ ଯେ ଅଶାନ୍ତ ଅଥୟ । ।୧।

ବର୍ଷା ଖରା-ଶୀତ ଓ ବସନ୍ତ
ତା'ପ୍ରଭାବ ଅତୀବ ଦୁରନ୍ତ
ନେଲାଣି କେତେ ଜୀବନ ଆଉ କେତେ ନିଃସ୍ୱ, ଅସହାୟ ।୨।

ଉପଲବ୍ଧ ଏବେ ଟୀକା
ମନରେ ନରଖି ଶଙ୍କା
ଟୀକା ସହ ସତର୍କ ରହିଲେ ଦୂର ହେବ କରୋନାର ଭୟ ।୩।

ଆସିଅଛି ଦ୍ୱିତୀୟ ଲହର
ମାଡ଼ି ମାଡ଼ି ଗାଁ ଓ ସହର
ଲକ୍ଷଣ ଜାଣିବା କ୍ଷଣି  କର ଆଗ ପରୀକ୍ଷା ନିଶ୍ଚୟ ।୪।

●●●

# କରୋନା ପ୍ରଭାବ

ମନ୍ଦିରରେ ଅଛନ୍ତି ଦେବତା
ଭକ୍ତଙ୍କୁ ମନ୍ଦିର ମନା
କେଡ଼େ କଥା ହେଲା ସତେ
ଭାବିଲେ ଲାଗୁଛି ଦୁଃଖ
କରୋନାର ଏମିତି କ୍ଷମତା ।।

ଦି'ହଜାର କୋଡ଼ିଏ ମସିହାରେ
ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର
ରଥଯାତ୍ରା ଭକ୍ତହୀନ ହେଲା
ରଥଯାତ୍ରା ପରେ
କରୋନାର କଟକଣା ମାନି
କିଛିଦିନ ପ୍ରଭୁଙ୍କର ଦର୍ଶନ ମିଳିଲା ।।

ଦି'ହଜାର ଏକୋଇଶ ମସିହାରେ
ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କର
ଯାତ୍ରା ହେଲା ଭକ୍ତହୀନ
ନ ହେଲା ଅଷ୍ଟପ୍ରହରୀ
ଖୋଳ କରତାଳ ।
ହରିହାଟ, ପ୍ରସାଦ ସେବନ ।।

ଜନମାନସ ସତେ କେତେ ସଂକୁଚିତ
ନୀରସ, ନିଷ୍ପ୍ରଭ
ଆଉ କେତେ ଭାରାକ୍ରାନ୍ତ ।
ସାହିତ୍ୟ ସଂଗୀତ ନାହିଁ,
ନାହିଁ ଖେଳକୁଦ, ମେଳା ମହୋତ୍ସବ
କରୋନାର ଦ୍ୱିତୀୟ ଲହରେ
ପ୍ରଭାବିତ ସମଗ୍ର ଭାରତ ।।

ନ ଦେଖିଲେ ଜଣେ
ବିଶ୍ୱାସ କରିବ ନାହିଁ ମନର ଅବସ୍ଥା
କାହାପୁଅ, କାହାଝିଅ, କାହା ସ୍ୱାମୀ
କାହା ପତି କାହା ପିତାମାତା
ଚିକିତ୍ସିତ ଡାକ୍ତରଖାନାରେ,
କରୋନା ପୀଡ଼ିତ ।।

ଧନ୍ୟବାଦ ଶତ ଧନ୍ୟବାଦ
ଡାକ୍ତର ଓ ସ୍ୱାସ୍ଥ୍ୟ କର୍ମୀମାନଙ୍କୁ
ରୋଗୀମାନଙ୍କ ପାଇଁ
ସେମାନେ ତ ଜଣେଜଣେ
ମାନ୍ୟ ଦେବଦୂତ ।।

●●●

ଶରତ ଚନ୍ଦ୍ର ରଥ
୨୭-୪-୨୧ ରିଖ
(ମଙ୍ଗଳବାର)

# ଗୀତିକବି ଶରତଚନ୍ଦ୍ରଙ୍କ ଗୀତିଧାରାରେ ବିବିଧବର୍ଣ୍ଣବୈଭବ

ଅଧ୍ୟାପକ ଡ. ସନ୍ତୋଷ କୁମାର ମିଶ୍ର

ମନୁଷ୍ୟ ଜୀବନ ବିବିଧ ଓ ଅନୁଭବର ଏକ ବହୁ ବର୍ଣ୍ଣୀ ଚିତ୍ରଶାଳା।ଏହାର ଛତ୍ରେ ଛତ୍ରେ ପୂରି ରହିଛି ଅନନ୍ତ ଭାବନାର ସୂତାଖିଅ ଯାହାର ସୀମା ତଥା ପରିସୀମାକୁ ଆକଳନ କରିବା ଦୁରୂହ ବ୍ୟାପାର। ସେହି ଅତୁଆ ଖିଅକୁ ଫିଟାଇ ତା'ର ଗୂଢ଼ ରହସ୍ୟକୁ ଭେଦ କରିବା ଯେତିକି କଷ୍ଟକର, ସେତିକି ସମୟ ସାପେକ୍ଷ। ତଥାପି ଈଶ୍ୱର ଦତ୍ତ ପ୍ରତିଭା ଆଧାରରେ ସ୍ରଷ୍ଟାଟିଏ ତାକୁ ଅନୁଭବରେ ଧାରଣ କରି ସେ ହୋଇଉଠେ ଭାବଗର୍ଭା। ଭାବମୟ ଆବେଗକୁ ନେଇ ସେ ଆବିଷ୍ଟ ହୁଏ। ନବ୍ୟ ପୁଲକରେ ହୁଏ ପୁଲକିତ। ସେହି ଭାବସମ୍ବେଦୀ ଉଚ୍ଛ୍ୱାସ ସବୁ ଲଳିତ ଛନ୍ଦ ରାଗିଣୀ ତୋଳି ଶବ୍ଦରେ ଶବ୍ଦରେ ନିଜକୁ ସଜାଇଦେଲେ ତାହା କବିତାର ପରିଚୟ ବହନ କରେ। ଯୁଗେ ଯୁଗେ ପ୍ରତି ଭାଷା ସାହିତ୍ୟରେ ସାଧକମାନେ ନିଜର ତୀବ୍ର ଭାବାବେଗକୁ ନେଇ ସୃଷ୍ଟି କରିଛନ୍ତି ବହୁବିଧ କାବ୍ୟକୃତି, ଯାହା ତା'ର ନିଜସ୍ୱ ଦୀପ୍ତିରେ ତେଜୀୟାନ।

ଓଡ଼ିଆ ସାହିତ୍ୟ ପରିପ୍ରେକ୍ଷୀରେ ବିଚାର କଲେ କବିତାର ବିଭିନ୍ନ ବିଭାଗ ପରି ଆଧୁନିକ ଗୀତିକବିତା ବିଭାଗଟି ତା'ର ନିଜସ୍ୱ ସ୍ୱାତନ୍ତ୍ୟରେ ଗୌରବୋଜ୍ଜ୍ୱଳ ତଥା ମହୀୟାନ। କବିତ୍ୱପୂର୍ଣ୍ଣ ଗାନଯୋଗ୍ୟ କ୍ଷୁଦ୍ର କ୍ଷୁଦ୍ର କବିକୃତିକୁ ଗୀତିକବିତାର ମର୍ଯ୍ୟାଦା ଦିଆଯାଏ, ଯେଉଁଥିରେ ସ୍ରଷ୍ଟାର ହୃଦୟଗତ ବିଦଗ୍ଧ ଭାବାବେଗ କୋମଳ ଶବ୍ଦ ରାଜିରେ ସ୍ୱତଃ ଝରିଆସେ ଛନ୍ଦମୟ ଝଙ୍କାର ତୋଳି। ସେଥିରେ ନଥାଏ ଜଟିଳ ଶବ୍ଦଗୋଲକର ଧନ୍ଦା, ଥାଏ କିନ୍ତୁ ମଧୁସ୍ରାବୀ ଭାବନିର୍ଝରିଣୀର ଛଳଛଳ ପ୍ରବାହ। ବିନ୍ଦୁରେ ସିନ୍ଧୁ ଦର୍ଶନର ଆସ୍ଥା ପ୍ରକଟ କରି ସେ ପାଠକକୁ ମୋହାବିଷ୍ଟ କରେ। ଏଣୁ ଗୀତିକବିତାର କମନୀୟ ରୂପବିଭାରେ ଥାଏ ଏକ ନିଆରା ଉପଲବ୍ଧି ଓ ଅପାସୋରା ଅନୁଭୂତି।

ସାମ୍ପ୍ରତିକ ଓଡ଼ିଆ ଗୀତିକବିତାର ସୁବର୍ଣ୍ଣ ପରିସର ଅମିତ କୀର୍ତ୍ତି ବୈଭବରେ ପରିପୂର୍ଣ୍ଣ। ଅନେକ କୃତବିଦ୍ୟ ସାଧକ ନିଜର ନିଷ୍ପାପର ସାଧନାରେ ଗୀତିକବିତାର କଳେବରକୁ କରିଛନ୍ତି ମହିମାମଣ୍ଡିତ। ଏହି ସାଧକମାନଙ୍କ ମଧ୍ୟରେ ପ୍ରଫେସର ଡ. ଶରତଚନ୍ଦ୍ର ରଥଙ୍କ ନାମ ଏକ ସ୍ୱର୍ଦ୍ଧିତ ଉଚ୍ଚାରଣ। ଜଣେ ସମାଲୋଚକ, ପ୍ରାବନ୍ଧିକ, କବି, ବରିଷ୍ଠ ଶିକ୍ଷାବିତ୍ ତଥା ସୁବକ୍ତା ଭାବରେ ତାଙ୍କ କୃତି ଓ କୃତିତ୍ୱ ବହୁଜନ ବିଦିତ। ପରନ୍ତୁ ଯେଉଁଥିପାଇଁ ତାଙ୍କ ସ୍ରଷ୍ଟା ଜୀବନର ବିଶେଷ ପ୍ରସିଦ୍ଧ ସୁଦୂର ପ୍ରସାରୀ ତାହାହେଲା ତାଙ୍କର ଉଚ୍ଚକୋଟିର ଆକର୍ଷଣୀୟ ଗୀତିକବିତାର ମନ୍ଦ୍ରମୋହନ ସୃଷ୍ଟି ସାଧନା। ସ୍ରଷ୍ଟା ଜୀବନର ଶୁଭ ପ୍ରଭାତରୁ ଗୀତିକବିତା ପ୍ରତି ତାଙ୍କର ଆନ୍ତରିକ ଆବେଗ ଥିଲା ପ୍ରଖର। ସେଥିପାଇଁ ଦୀର୍ଘ ଚାରି ଦଶନ୍ଧି ଧରି ତାଙ୍କ ସରସ ଲେଖନୀରୁ ନିଃସୃତ ହୋଇଛି ଗୀତିକବିତାର ଅବାରିତ ସୁଧାଝର। ତନ୍ମଧ୍ୟରେ 'ଧୂପବାସ', 'ଆରାଧନା', 'ବନମାଳା', 'ନବଚେତନା', 'ମାଟି ମହକ', 'ତୁମେ ଓ ମୁଁ' ପ୍ରଭୃତି ଗୀତିକବିତା ସଙ୍କଳନ ଉଲ୍ଲେଖଯୋଗ୍ୟ କୃତି ସମୂହ।

ପ୍ରଫେସର ଡ଼. ଶରତ ଚନ୍ଦ୍ର ରଥଙ୍କ ଉପର୍ଯ୍ୟୁକ୍ତ ଗୀତିକବିତା ସଂକଳନ ଓଡ଼ିଆ ଗୀତିକବିତା ସାମ୍ରାଜ୍ୟର ଗୋଟିଏ ଗୋଟିଏ କୀର୍ତ୍ତିସ୍ତମ୍ଭ କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରଫେସର ରଥଙ୍କ ଜୀବନାନୁଭୂତିର କମନୀୟ ଭାବାତ୍ମକ ଅଭିବ୍ୟକ୍ତି ହେଉଛନ୍ତି ଏହି ସୃଷ୍ଟିନିଚୟ ଯେଉଁଥିରେ ଭରିରହିଛି ତାଙ୍କ ଭାବାବେଗର ବହୁବର୍ଣ୍ଣିଳ ରୂପବିଭା । ସେହି ଭାବରାଜିକୁ ଅନୁଶୀଳନ କରି ସାଉଁଟି ଆଣିବା ହେଉଛି ଉକ୍ତ ପ୍ରବନ୍ଧର ମୂଳ ଉଦ୍ଦେଶ୍ୟ । ସେଗୁଡ଼ିକୁ ନିମ୍ନମତେ ବିଚାର କରାଯାଇପାରେ ।

**(୧) ବିଭୁବୋଧର ପବିତ୍ର ପ୍ଲାବନ :**

ଏକମାତ୍ର ମାନବ ହିଁ ଅଳିକ ସଂସାରରେ ରହି ମଧ ଅନନ୍ତ ସତ୍ତାର ପୂର୍ଣ୍ଣାନୁଭବ କରିବାରେ ସମର୍ଥ ହୋଇଥାଏ । ସେଥିପାଇଁ ବୋଧେ ମାନବକୁ ଶ୍ରେଷ୍ଠ ପ୍ରାଣୀର ମର୍ଯ୍ୟାଦା ଦିଆଯାଏ । ଏହି ହସକାନ୍ଦ, ସୁଖଦୁଃଖ ସଂସାର ମଧରେ ମଣିଷର ଭାରାକ୍ରାନ୍ତ ମନ କିଞ୍ଚିତ୍ ଆନନ୍ଦ ପାଇଁ ଯେତେବେଳେ ଆକୁଳ ହୋଇଉଠେ, ତାକୁ ସେତେବେଳେ ସ୍ଥୂଳରୁ ସୂକ୍ଷ୍ମାନୁଶୀଳନ କରିବାକୁ ପଡ଼େ । ଶାଶ୍ୱତ ଭାବରେ ଚିରନ୍ତନ ଧାରାରେ ନିଜକୁ ସାମିଲ୍ କରିବାକୁ ହୁଏ । ସେହିଠାରୁ ଜାତ ହୁଏ ଦିବ୍ୟ ଆବେଗର ସ୍ଫୁରଣ । ଅସୀମ ପ୍ରତି ଅକପଟ ନିରୁତା ପ୍ରେମ । ଡ଼. ଶରତ ଚ୍ନ୍ଦ୍ର ରଥଙ୍କ ଗୀତିମାନସରେ ଏହି ଅସୀମ ସତ୍ତା ପ୍ରତି ଅସୀମ ଆବେଗ ବିଶେଷ ଲକ୍ଷ୍ୟଣୀୟ । ସେହି ପ୍ରେମରେ ବାହ୍ୟ ପ୍ରଦର୍ଶନର ଅତିରଞ୍ଜିତ ଉଚ୍ଚାରଣ ନାହିଁ, ଅଛି ନିଜକୁ ସେହି ଚିନ୍ମୟ ସତ୍ତାରେ ତଲ୍ଲୀନ କରି ଜଗତକୁ ନିଗୂଢ଼ ତତ୍ତ୍ୱଜ୍ଞାନର ପରିଚୟ ଦେବାର ଅକପଟ ପ୍ରୟାସ । ସେଥିପାଇଁ ତାଙ୍କ ଗୀତିମାନସ ବିଭୁବୋଧର ପବିତ୍ର ମନ୍ଦାକିନୀରେ ଅବଗାହନ କରି ତା' ମହିମାର ଗୁଣଗାନ କରିଛି ।

ବିଭୁବୋଧର ନିରାଜନାରେ କବିଙ୍କ ଭାବ ପୂତପାବନ ହୋଇଛି । ସେଥିରେ ଉଭୟ ସଗୁଣସାକାର ଓ ନିର୍ଗୁଣନିରାକାର ପ୍ରତି ଭକ୍ତି ନୈବେଦ୍ୟ ସମର୍ପିତ । ସଗୁଣ ସାକାର ରୂପରେ ଦୁର୍ଗା, ଲକ୍ଷ୍ମୀ, ସରସ୍ୱତୀ, ମାତୃବନ୍ଦନା, ଶ୍ରୀକୃଷ୍ଣ, ଶ୍ରୀଜଗନ୍ନାଥ ପ୍ରଭୃତିଙ୍କଠାରେ ତାଙ୍କର ଅନ୍ତରାନୁରକ୍ତି ବେଶ୍ ସୁସ୍ପଷ୍ଟ । ଜଗତର ମୂଳହେତୁ ମାତୃଶକ୍ତିର ଆରାଧନାରେ କବିଙ୍କ ଭାବାବେଶ ସତତ ମୁଖର ହୋଇଥିବାର ଦେଖାଯାଏ । ଦେବମାନବର ଅଭୟଦାୟିନୀ ଶକ୍ତି ପ୍ରତି ତାଙ୍କ ନିବେଦନ:-

"ମାଆ ତୁମେ ଅରଚନା ଦେବ ମାନବର
ମାଆ ତୁମ ସରଜନା ଏ ସାରା ସଂସାର
ଜଡ଼ରୁ ଜୀବନ ତୁମେ ଜୀବନରୁ ମନ ତୁମେ
ମନରୁ ଯେ ଅତିମନ ତୁମରି ବିଚାର ।"

(ଆରାଧନା)

ସଂସାର ବନ୍ଧୁର ପଥରେ ଇତସ୍ତତଃ ହେଉଥିବା ପାଦକୁ ଥୟକରି, ତାଙ୍କ ହାତଧରି ନେବାପାଇଁ ସରଳଭଙ୍ଗୀରେ ମାଆଙ୍କ ପ୍ରତି ତାଙ୍କର ପ୍ରାର୍ଥନା ମାତୃଭକ୍ତିର ସୁରମ୍ୟ ଚିତ୍ର ପ୍ରଦାନ କରେ ।

"ମାଆ, ନିଅ ତୁମ ଚଲାପଥେ
ପଡ଼ିଯିବି ମୋର ପାଦ ଥରଥର
ଧରିନିଅ ତୁମ ହାତେ ।"

(ଆରାଧନା)

ଶ୍ରୀକୃଷ୍ଣଙ୍କ ପ୍ରତି ନିବେଦିତ କବିଙ୍କ କେତୋଟି ଗୀତିକବିତାର ମଧୁର ମୂର୍ଚ୍ଛନା ପାଠକ ପ୍ରାଣରେ ଭାବ ତରଙ୍ଗ ଖେଳାଇଦିଏ । ଶ୍ରୀକୃଷ୍ଣଙ୍କ ମଧୁର ମାଦକଭରା ନୂପୁର ଓ ବେଣୁର ଶବ୍ଦରେ ବିଭୋର କବିଚିତ୍ତ ବୈକୁଣ୍ଠର ସୁଖ ଓ ଅମୃତ ଛାଡ଼ି, ସେହି ପ୍ରାଣେଶ୍ୱରଙ୍କ ଗୀତ ଗାଇ ଗାଇ ଭାବପ୍ରେମରେ ନିଜକୁ ହଜାଇ ଦେବାକୁ ଋହିଁଛି ।

"ମଧୁର ମୋହନ ମୁରଲୀର ତାନ
ଶୁଣୁଥିବି କାନେ ମୋର
କଟିର କିଙ୍କିଣୀ ପାରୁଥିବି ଶୁଣି
ସତେ କେତେ ଭାଗ୍ୟ ମୋର
ତୁମରି ମହିମା ଗାଇ ମହାପ୍ରଭୁ ଭୁଲିଯିବି ସବୁ ବାଧା ।"

(ନୀଳକଇଁ - ଭକ୍ତି ଶତକ)

ଶ୍ରୀଜଗନ୍ନାଥଙ୍କ ଠାରେ ଭୈରବ, ଦକ୍ଷିଣକାଳିକା, ଗଣପତି, ଶ୍ରୀରାମ, ଶ୍ରୀକୃଷ୍ଣ ପ୍ରଭୃତି ସମସ୍ତ ଚେତନା ସମାହିତ, ଏହି ସିଦ୍ଧାନ୍ତକୁ କବିଙ୍କ ଲେଖନୀ ସରସ ଗୀତିକବିତାର ରୂପ ଦେଇଛି । ବ୍ରହ୍ମାଣ୍ଡର ରାଜରାଜେଶ୍ୱର କରୁଣା ସାଗର ଶ୍ରୀ ଜଗନ୍ନାଥଙ୍କଠାରେ ପ୍ରଜାରୂପୀ ଜଗତବାସୀଙ୍କ ପ୍ରତିନିଧିତ୍ୱ କରି, ସେ ଗାଇଉଠିଛନ୍ତି ତାଙ୍କର ବିପୁଳ ମହିମାର ଜୟଗୀତି ।

"ତୁମେ ଭଇରବ ଦକ୍ଷିଣ କାଳିକା
ତୁମେ ପୁଣି ଗଣପତି
ରାମ ଅଭିରାମ ନବଘନ ଶ୍ୟାମ
କରୁଣା ସରିତପତି ।
ପତିତପାବନ ଦୀନବନ୍ଧୁ ବୋଲି ଉଡ଼େ କୀରତିର ଧ୍ୱଜା ।"

(ଆଭୂମପ୍ରଣାମ - ଭକ୍ତି ଶତକ)

କବିଙ୍କ ସୂକ୍ଷ୍ମାନୁଶୀଳନରେ ବିଭୁବୋଧର ବ୍ୟାପ୍ତି ଆକାରରୁ ନିରାକାର ଅଭିମୁଖୀ ଓ ରୂପରୁ ରୂପାତୀତ ଆଡ଼କୁ ତାଙ୍କ ଦୃଷ୍ଟିର ଅନୁଗମନ । ଏଣୁ ସେହି ସତ୍ୟସନାତନଙ୍କୁ ସେ ଜଡ଼ଠାରୁ ଚେତନ ସବୁଠାରେ ଅନୁଭବ କରନ୍ତି । ତାଙ୍କୁ ପ୍ରତିଟି ଅଣୁରେ ଅନୁଭବ କରି ତନ୍ମୟ ଚିତ୍ତରେ କବିଙ୍କର ଭାବକକ୍ଷ ଅତୀନ୍ଦ୍ରିୟ ଆବେଗରେ ପୁଲକିତ ହୋଇ ଉଠିଛି । ଯାହାର ଉଦାହରଣ କବିଙ୍କ ସଂଖ୍ୟାଧିକ ଗୀତିକୃତିରେ ପରିଦୃଷ୍ଟ ହୋଇଥାଏ । ଯେପରି :-

"ତୁମେ ଅଛ ପୂରି ଦିଗ ଦିଗନ୍ତରେ
ଗଗନେ ପବନେ ଭୂମେ
ତୁମକୁ ପାଇଲେ ଆଉ କିଛି ନାହିଁ
ପାଇବାକୁ ଏ ଜୀବନେ । ୦ ।

(ତୁମେ ଅଛପୂରି ଦିଗଦିଗନ୍ତରେ - ଭକ୍ତି ଶତକ)

ଏହିଭଳି ଡ଼. ଶରତଚନ୍ଦ୍ର ରଥଙ୍କ ଗୀତିଧାରାରେ ଅନେକ ଛନ୍ଦରେ ବିଭୁବୋଧର ପତିତପାବନୀ ଗଙ୍ଗା ମନୋଜ୍ଞ ନିନାଦ ତୋଳି ପ୍ରବାହିତ ।

**(୨) ଗଭୀର ଆଶାବାଦୀ :**

କବି ଡ଼. ଶରତ ଚନ୍ଦ୍ର ରଥଙ୍କ ଦର୍ଶନର ପରିସୀମା ସାମ୍ପ୍ରତିକ ଜୀବନ ଜିଜ୍ଞାସାରେ ଆବଦ୍ଧ ନୁହେଁ। ସେ କେବଳ ଘଟଣା ଚକ୍ରର ପ୍ରଭାବରେ ପ୍ରଭାବିତ ହୋଇ ହତୋତ୍ସାହିତ ନୁହନ୍ତି, ବରଂ ଏକ ସୁରମ୍ୟ ସକାଳର ଆଶାରେ ଉତ୍‌ଫୁଲ୍ଲିତ। ସେ ଜାଣନ୍ତି ସମାଜର ଏହି ସାମ୍ପ୍ରତିକ ତ୍ରୁଟି ବିଚ୍ୟୁତି ସ୍ଥିର ନୁହେଁ। କାଳର ଅପରିବର୍ତ୍ତନୀୟ ଧାରାରେ ପରିବେଶର ସ୍ୱରୂପ ବଦଳିବ। ଉଜୁଡ଼ା ଧାନକ୍ଷେତରେ ପୁଣି ସବୁଜିମା ଖେଳିବ। ଅମାନବୀୟ ମନାକାଶରେ ପୁଣି ଦେଖାଦେବ ମାନବିକତାର ଦିବ୍ୟ ଅରୁଣିମା। ଶୂନ୍ୟ ଦିଗନ୍ତରେ ମାନବିକତାର ମଧୁମୟ ସଂଗୀତ ଗଗନ ପବନକୁ ପ୍ରତିଧ୍ୱନିତ କରିବ। ତେଣୁ ମଣିଷର ପରିଶ୍ରମ ଜାରି ରହିବା ଦରକାର। ତା'ର ଆଶା ଓ ପରିଶ୍ରମ କେବେବି ବୃଥା ଯିବନାହିଁ। ଯେପରି :-

"ମୁଁ କିନ୍ତୁ କହିବି ପ୍ରୟାସ ତୁମର
ବ୍ୟର୍ଥ ହୋଇବ ନାହିଁ
ଆଶାରେ ମିଳିବ ଖୋଜିବାର ମୂଳ
ସ୍ୱର୍ଗ ଆସିବ ନଇଁ ।"

(ଆହ୍ୱାନ - ବନମାଳା)

ଡ଼. ଶରତ ଚନ୍ଦ୍ର ରଥଙ୍କ ଆନ୍ତରିକ ଉତ୍କଣ୍ଠା ବେଶ ଦୃଢ଼। ସେ ସାମ୍ପ୍ରତିକ ସମୟର ସମସ୍ତ ବିଶୃଙ୍ଖଳତା ମଧ୍ୟରେ ବି ଶୁଣିଛନ୍ତି ଆନନ୍ଦ ସଂଗୀତର ସୁଲଳିତ ରାଗିଣୀ। ମଣିଷ ଆନନ୍ଦମୟ ସତ୍ତାଙ୍କର ଅଂଶ ସ୍ୱରୂପ, ତେଣୁ ସେ ହିଁ ଆନନ୍ଦର ପ୍ରକୃତ ଅଧିକାରୀ। ସେହି ଆନନ୍ଦ ପାଇଁ କେବଳ ମାତ୍ର ଶ୍ରଦ୍ଧାଶୀଳ ଅନ୍ତର୍ଦୃଷ୍ଟିର ଆବଶ୍ୟକତା ରହିଛି। ଏହି ବାର୍ତ୍ତାର ଯଥାର୍ଥ ରୂପକାର କବି ଡ. ଶରତ ଚନ୍ଦ୍ରଙ୍କ ଲେଖନୀରୁ ଝରିଉଠେ:-

"ଆଲୋକର ବୀଣା ବାଜେ ଦୂର ନୀଳ ଗଗନେ
ପୁଲକରେ ଭିଜେ ମାଟି ଏଇ ମଧୁ ଲଗନେ। ୦।
ପାଖୁଡ଼ା ପାଖୁଡ଼ା ମେଲି
ଫୁଲଫୁଟେ ସଧୀରେ
ଚୋରାଇ ସୁବାସ ତା'ର
ବାଆ ବହେ ଅଧୀରେ
ଆଶାର ପ୍ରଣବ ଧ୍ୱନି ଉଠେ ଲତା ବିତାନେ।

(ଆନନ୍ଦ ସଂଗୀତ - ପ୍ରତିଧ୍ୱନି)

ଏବଂବିଧ ଅନେକ କବିତାର କଳେବର ଗଭୀର ଆଶାବାଦର ଆଲୋକରେ ଆଲୋକିତ ହୋଇଥିବାର ଅନୁଭୂତ ହୁଏ।

**(୩) ମାଟିମନସ୍କତା :**

ଡ଼. ଶରତ ଚନ୍ଦ୍ର ରଥଙ୍କ କବିତା ସମୂହର ଅନ୍ୟତମ ରୂପବୈଭବ ହେଉଛି ତାଙ୍କର ନିରୁତା ମାଟିମନସ୍କତା। ପ୍ରତିଟି ଜୀବ ମାତୃଗର୍ଭରୁ ଭୂମିଷ୍ଠ ହେବାମାତ୍ରେ ଯାହାର ସ୍ପର୍ଶ ପାଏ ସେ ହେଉଛି ତା'ର ଦ୍ୱିତୀୟ ମାତା ଧରିତ୍ରୀ। ତାହାର ପାଣି, ପବନ, ଖାଦ୍ୟଶସ୍ୟ, ଫଳମୂଳରେ ବଢ଼େ ରକ୍ତମାଂସର ଦୁର୍ଲଭ

ଶରୀର । ଏଣୁ ସେହି ମାଟି ମାଆର ମହିମା ସୁଦୂର ପ୍ରସାରୀ । କବିଙ୍କର ଏବଂବିଧ ଭାବନାର ମଧୁମୟ ଆବେଗ ଅନେକ ଗୀତିକବିତାର ପ୍ରାଣ ପ୍ରାଚୁର୍ଯ୍ୟ ପାଲଟିଛି ।

ମାଟି ମାଆର ମହତ୍ତ୍ୱପୂର୍ଣ୍ଣ ଗରିମା ଓ ପୁଣ୍ୟ ଜନ୍ମଭୂମିର ଗୁଣଗାନରେ କବିଙ୍କର ଭାବନା ସତତ ଆକୁଳିତ । ଯଥାର୍ଥ ଦାୟାଦ ପରି ତାଙ୍କର ଏହି ସେବା ତାଙ୍କୁ ଜନ୍ମଭୂମିର ଜଣେ ସଫଳ ପୂଜାରୀ କରିପାରିଛି । ତାଙ୍କ ବିଚାରରେ ଏ ମାଟି ମାଆ ଉପେକ୍ଷା ଯୋଗ୍ୟା ନୁହେଁ, ତା' ପ୍ରତି ଅନାଦର ଶୁଭଙ୍କର ନୁହେଁ । ଏଣୁ କବିଙ୍କ ଭାଷାରେ :-

"ମାଟିରେ ମଧୁ ଅଛି,
ମାଟିରେ ବନ୍ଧୁ ଅଛି
ମାଟିକୁ ଦିଅନା ଦୋଷ, କହନା ତୁ ଛି ଛି । ୦ ।
(ମାଟିଘଟ - ପ୍ରତିଧ୍ୱନି)

ଶୂନ୍ୟ ହୋଇ ଆସିଥିବା ମଣିଷଟିଏ ଜାଣେ ଯେ ସେଦିନେ ଶୂନ୍ୟ ହୋଇ ଫେରିଯିବ; ମାତ୍ର ମାଟିର ମମତା ଓ ସୁଗନ୍ଧ ତାର ମନକୁ ଟାଣିଧରେ । ମାଟିର ଅନନ୍ତ ଆକର୍ଷଣରେ ସେ ବିଭୋର ହୁଏ । ସେହି ବିଭୋର କବିମାନସ ଗାଇ ଉଠେ:-

"କିଛି ନେବାପାଇଁ ଆସିନି ମଣିଷ
ଏ କଥାତ ମନ ଜାଣେ
ସବୁ ବୁଝିଲେ ବି କେଜାଣି କାହିଁକି
ଏଇ ମାଟି ମନ ଟାଣେ ।"
(ମାଟିଗନ୍ଧ - ପ୍ରତିଧ୍ୱନି)

ମାଟି ମାଆର ମାଧୁରିମା କେବଳ ତା'ର ସ୍ଥୁଳ ଶରୀରରେ ସୀମିତ ନୁହେଁ, ତା'ର ସୂକ୍ଷ୍ମ ଆଦର୍ଶରେ ମଧ ମହିମାନ୍ୱିତ । କବିଙ୍କ ଅନ୍ତର୍ମୂଲ୍ୟାୟନରେ ତାଙ୍କ ଜନ୍ମଭୂମିର ପବିତ୍ର ଭାବାଦର୍ଶ ସମଗ୍ର ଜଗତପାଇଁ ଶିକ୍ଷଣୀୟ । ଜଡ଼ର ଚେତନା, ବିନ୍ଦୁରେ ସିନ୍ଧୁତ୍ୱର ବିଶାଳ ଦର୍ଶନ ନେଇ ଏଇ ଭାରତ ଭୂମି ଆଜି ସଦର୍ପ ଦଣ୍ଡାୟମାନ । ପୁଣି ଯେଉଁ ମାଟିର ଋଷିକଣ୍ଠର 'ଓଁ' କାର ଧ୍ୱନି ଜଗତ କଲ୍ୟାଣ ପାଇଁ ସତତ ଉଚ୍ଚାରିତ, ସେ ପବିତ୍ର ମାଟିର ବନ୍ଦନା କରି କବି ପରିଚୟ ଦିଅନ୍ତି ତାଙ୍କର ମାତୃଭୂମି ପ୍ରତି ଅସୀମ ମମତ୍ୱବୋଧକୁ । ଯେପରି :-

"ଆର୍ଯ୍ୟ ଋଷିର ଏଇ ଆମ ଦେଶ
ମୁଠାଟିଏ ମାଟି ଟୋଳି
ପଚାରିଲେ ତା'ର ଇତିହାସ ତାକୁ
କହିବ ସେ ମନଖୋଲି । ୦ ।
ଜଡ଼ରେ ଏ ଦେଶ ଜୀବନ ଖୋଜିଛି ବିନ୍ଦୁରେ ଖୋଜିଛି ସିନ୍ଧୁ
ଚେତନା ଦୀପାଳି ଜଳାଇ ଲୋଡ଼ିଛି ବିଭୁ ପ୍ରୀତି - ପଦ୍ମ- ମଧୁ
ଶୁଭ ସାଧନାର ସୁର ସଜାଡ଼ିଛି
ପ୍ରଣବ ଝଙ୍କାର ଟୋଳି ।"
(ମାଟି ମହକ)

ଆର୍ଯ୍ୟଋଷି ପ୍ରତିଷ୍ଠିତ ବିଶ୍ୱବିଶ୍ରୁତ ଏହି ଭାରତ ବର୍ଷର ଅସୀମ ମହିମାକୁ ଭାଷାରେ ବର୍ଣ୍ଣନା ସର୍ବଥା ଅସମ୍ଭବ। ସେଥିପାଇଁ କବିଙ୍କର ବିନୀତ ମଥା ନିରତ ସେହି ମାଟିକୁ ପ୍ରଣାମ କରେ ଏବଂ ଦିବାନିଶି ତା'ର ବନ୍ଦନା ଗାଇଚାଲେ।

**(୪) ମାନବବାଦୀ ତଥା ବିଶ୍ୱବାଦୀ ଆଦର୍ଶବୋଧ :**

ବିନ୍ଦୁ ଯେତେବେଳେ ସିନ୍ଧୁ ଅଭିମୁଖୀ ହୁଏ, ସେତେବେଳେ ସେ ସେଥିରେ ପୂର୍ଣ୍ଣତାକୁ ଉପଲବ୍ଧି କରେ। ସେଥିରେ ନଥାଏ ସଂକୀର୍ଣ୍ଣତା, ନଥାଏ ବ୍ୟକ୍ତି କୈନ୍ଦ୍ରିକ ସୀମିତ ଭାବଧାରାର ସ୍ୱାର୍ଥ ସର୍ବସ୍ୱ ଆବେଗ। ଥାଏ କିନ୍ତୁ ସାର୍ବଜନୀନ ସାର୍ବଭୌମ ସୀମାହୀନ ଶାଶ୍ୱତ ଆନନ୍ଦ, ବିଶାଳତା, ଅନେକ ମଧ୍ୟରେ ନିଜକୁ ମିଶାଇ ଦେଇ ଶାନ୍ତି ମୈତ୍ରୀର ଭାବରେ ଭାବିତ ହେବାର ତନ୍ମୟତା। କବି ଡ଼. ଶରତ ଚନ୍ଦ୍ରଙ୍କ କବିତା ପରିପ୍ରେକ୍ଷୀରେ ଏହି ଭାବ – ବିଭବର ବିଚାର ସ୍ୱତନ୍ତ୍ର। କେବଳ ମାତୃଭୂମିର କଲ୍ୟାଣ ନୁହେଁ ମାତୃଭୂମି ସହିତ ସମଗ୍ର ଜଗତର କଲ୍ୟାଣ ମଧ୍ୟରେ ସେ ଚାହିଁଛନ୍ତି ଏକ ବିଭେଦହୀନ ସାର୍ବଭୌମ ସଂସାର। ଆର୍ଯ୍ୟଋଷିର "ସର୍ବେ ଭବନ୍ତୁ ସୁଖିନଃ" ମନ୍ତ୍ରର ଯଥାର୍ଥ ସ୍ୱରରେ କବିଙ୍କ ଲେଖନୀ ଚଳଚଞ୍ଚଳ ହୋଇଥିବାର ଲକ୍ଷ୍ୟ କରାଯାଏ।

"ସଭିଙ୍କର ଶୁଭ କାମନା
ଆମ ଜୀବନର ବାସନା
ଆମେ ଭାରତୀୟ ଏଇ ପରିଚୟ
ଏ ଆମ ମନର ଭାବନା।"

(ମାଟି ମହକ)

ଅନେକର ସମଷ୍ଟିରେ ବିଶ୍ୱୈକ ଭାବର ସଞ୍ଚାର ଘଟେ। ଅନେକ କୁସୁମର ସୁଷମ ସମାହାରରେ ସୁରମ୍ୟ ମାଳାଟିଏ ଗଠିତ ହୁଏ। ଏଣୁ ଅନେକ ବିଭେଦତା ମଧ୍ୟରେ ଅନେକ ଦେଶପ୍ରାଣତା ଆସୁ ଏବଂ ଏହି ଉତ୍‌ଫୁଲ୍ଲ ଦେଶପ୍ରାଣତାରୁ ମଧୁମୟ ବିଶ୍ୱର ପରିକଳ୍ପନା ଅବଶ୍ୟ ସମ୍ଭବ, କବିଙ୍କର ଏହି ଧାରଣା ଦୃଢ଼ୀଭୂତ ହୋଇଛି।

"ଆମେ ଏକ ଏକ ନଦୀ ମିଶିଲେ ସାଗର
ଅନେକ କୁସୁମ ଆମେ ଏକ ବଗିଚାର
ମିଳିମିଶି ଆମେ ହସି ହସାଇବୁ
ବିଶ୍ୱହେବ ମଧୁମୟ
ଏଇ ଆମ ପରିଚୟ
ଏଇ ଆମ ପରିଚୟ।"

(ବନମାଳା)

'ବସୁଧୈବ କୁଟୁମ୍ବକମ୍'ର ଆଦର୍ଶରେ ଆସ୍ଥା ପ୍ରକଟ କରି କବି ସେଥିରେ ବିଶ୍ୱକଲ୍ୟାଣର ସୂଚନା ପାଇଛନ୍ତି। ସେଥିପାଇଁ ମହାନ ଭାରତୀୟ ଦର୍ଶନକୁ ସେ ସମ୍ମାନ କରିଛନ୍ତି। ଏହାର ତ୍ୟାଗ, ତପସ୍ୟା, ମୈତ୍ରୀ ଓ ସାମ୍ୟଭାବର ମହାନ୍ ମୂଲ୍ୟବୋଧ ଯେ ବିଶ୍ୱ ଜୀବନରେ ଅମୃତତ୍ୱ ଭରିଦେବ, ସେ ଭରସା ତାଙ୍କର ଉଚ୍ଚରିତ ହୋଇଛି। ଭାରତୀୟ ଭାବନାରେ ସେହି ଦିବ୍ୟ- ସାଧନାକୁ ଶବ୍ଦରେ ଶବ୍ଦରେ ରୂପଦେଇ ସେ ଗାଇ ଉଠିଛନ୍ତି :

"ବିଳାସ ଆମର କାମ୍ୟ ନୁହେଁତ
ଅଳସ ନୁହଁଇ କାମ୍ୟ

ଆମେ ଚାହୁଁ ଆଜି ବିଶ୍ୱ ଜୀବନେ
ମୈତ୍ରୀ ସମତା ସାମ୍ୟ । ୦ ।
(ବନମାଳା)

ଉପର୍ଯ୍ୟୁକ୍ତ ବିଚାରରୁ କବି ଡ. ଶରତ ଚନ୍ଦ୍ରଙ୍କର କବିତାରୁ ମାନବବାଦୀ ବିଶ୍ୱବୋଧର ସ୍ପଷ୍ଟ ଝଲକ ଅନୁଭବ ହୁଏ । କବିଙ୍କର ଅନେକ ସୃଷ୍ଟି ଏହି ଭାବଧାରାରେ ଅନୁସୃତ, ଯାହାର ବିଶେଷ ଆଲୋଚନା ଓଡ଼ିଆ ସାହିତ୍ୟ ପାଇଁ ଉପଯୋଗୀ ମନେହୁଏ ।

## (୫) ଗଠନ ମୂଳକ ବ୍ୟଙ୍ଗର ଅବତାରଣା

କବିତାରେ ବ୍ୟଙ୍ଗ ବା ହାସ୍ୟରସର ଅବତାରଣା ଏକ ସ୍ୱତନ୍ତ୍ର ଆକର୍ଷଣ ସୃଷ୍ଟିକରେ, ଏଥିରେ ସନ୍ଦେହ ନାହିଁ । ଓଡ଼ିଆ ସାହିତ୍ୟର ଯୁଗକ୍ରମରେ ଅନେକ ସାଧକ ନିଜ ନିଜର ଧୀମତ୍ତା ବଳରେ ଏହି ବ୍ୟଙ୍ଗ ଭାବର ପରିବେଷଣ କରିଛନ୍ତି । କିନ୍ତୁ ଏଠି ଲକ୍ଷ୍ୟ କରିବାର କଥା ବ୍ୟଙ୍ଗ- ସାହିତ୍ୟ କେବଳ ଆମୋଦଧର୍ମୀ କ୍ଷଣ ତୃପ୍ତିକର ବିଷୟ ନୁହେଁ । ଯେଉଁ ବ୍ୟଙ୍ଗ ସାହିତ୍ୟ ପାଠକର ଉପରିସ୍ଥ ମନକୁ ଦ୍ରବୀଭୂତ କରି, ତାକୁ ହାସ୍ୟମୁଖର କରିପକାଏ, ତାହା ଯଥାର୍ଥ ବ୍ୟଙ୍ଗ ସାହିତ୍ୟର ପଦବାଚ୍ୟ ନୁହେଁ । ଉପସ୍ଥାପନାରେ ବ୍ୟଙ୍ଗୀୟ ଛଟା ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ଗଠନମୂଳକ ଦିଗପ୍ରତି ଇଙ୍ଗିତ କରି ଯେଉଁ ସାହିତ୍ୟ ପାଠକଙ୍କୁ ସଚେତନ କରେ, ତାହା ହିଁ ଯଥାର୍ଥ ବ୍ୟଙ୍ଗ ସାହିତ୍ୟ । ଏଥିରେ ଭାଷାର ରମ୍ୟତା ରହିବା ସହ ଭାବର ସାନ୍ଦ୍ରତା ମଧ୍ୟ ପ୍ରକାଶିତ ହୁଏ । ମନୋରଞ୍ଜନ କରିବା ସହ ସାହିତ୍ୟ ପାଠକର ମନୋଜଗତରେ ଚିନ୍ତାଶୀଳ ବୃତ୍ତିଟିଏ ଛାଡ଼ିଯାଏ । ଯାହା ସମାଜ ପରିବର୍ତ୍ତନରେ ଅନେକ ସହାୟକ ହୋଇଥାଏ ।

ଡ଼. ଶରତ ଚନ୍ଦ୍ର ରଥଙ୍କ ବ୍ୟଙ୍ଗ ବିଚାରରେ କେତେକ କବିତା ସ୍ୱତନ୍ତ୍ର ସ୍ଥାନୀୟ । କାରଣ ଏହାର ରଚନାରେ କବିଙ୍କର ଧ୍ୟାନ କେବଳ ଶବ୍ଦ ଚାତୁରୀରେ ପାଠକଙ୍କୁ କ୍ଷଣିକ ଆନନ୍ଦ ଦେବା ନୁହେଁ, ମାତ୍ର ଗଠନମୂଳକ ଟିପ୍‌ପଣୀ ଦ୍ୱାରା ବ୍ୟକ୍ତି ଚେତନାକୁ ଜାଗୃତିର ସ୍ପର୍ଶଦେବା । ସ୍ୱାର୍ଥସର୍ବସ୍ୱ ମଣିଷର ମାନବିକତାହୀନ ଭାବନାର ନାନାଦି ଦିଗରେ ଦେଖାଦେଉଥିବା ତ୍ରୁଟି ବିଚ୍ୟୁତିକୁ ଲକ୍ଷ୍ୟକରି କବିଙ୍କର ଉପସ୍ଥାପନା ଏଠାରେ ଉଲ୍ଲେଖଯୋଗ୍ୟ ।

"କଥେ ଭାବିବୁ କଥେ କହିବୁ
ଆଉ ପ୍ରକାରେ କାମ
ଅଳପ ହସି କାଟିବୁ ବେର
ସଭିଙ୍କୁ ଦେବୁ ନାମ ।"
(ପବନ ଯୁଗ -ବନମାଳା)

ସାମ୍ପ୍ରତିକ ଶିକ୍ଷାରେ ବ୍ୟବସାୟୀକରଣ ତଥା ଶିକ୍ଷାୟତନର କଳୁଷିତ ବାତାବରଣ ଏବେ ସମାଜପାଇଁ ମହାବ୍ୟାଧି ଭଳି ମୁଣ୍ଡ ଟେକିଛି । ଶିକ୍ଷା ଯେପରି ଏକ ଅର୍ଥକାରୀ ଫସଲ । ଶିକ୍ଷା କ୍ଷେତ୍ରରେ ମୂଲ୍ୟବୋଧର ଅବକ୍ଷୟ ଜନିତ ପ୍ରତିକ୍ରିୟାରେ ରଚିତ କବିଙ୍କର 'ପାଠରେ ପାଠ' ବ୍ୟଙ୍ଗ କବିତାଟି ଦେଶ ଗଠନମୂଳକ ବାର୍ତ୍ତା ବହନ କରେ । ଯଥା :-

"ପାଠ ପଢ଼ିଲେ ଶିକ୍ଷିତ ହେବ
ଏମିତି ମାନେ ନାହିଁ
ସବୁ ପାଠୁଆ ଶିକ୍ଷିତ ନୁହେଁ

ଜାଣି ରଖିଥା ଭାଇ।
କଲେଜ କଥା କହନା ଆଉ
ହେଲାଣି ଭୂତଖାନା
ନଲେଜ ସେଠୁ ଗଲାଣି ଚାଲି
ବହୁ ଦୂରକୁ ଅନା"

(ପାଠରେ ପାଠ – ବନମାଳା)

ଆଜି ମଣିଷ ଅଛି ହେଲେ ମଣିଷ -ପଣିଆ ନାହିଁ। ସବୁଠି ଯେପରି ଲମ୍ପଟତାର ରାଜୁତି। ପୂଜ୍ୟ ଉପେକ୍ଷିତ ହେଉଥିବା ବେଳେ ଅପୂଜ୍ୟ ପୂଜାପାଏ। ରକ୍ଷକ ଭକ୍ଷକ ସାଜି ଶୋଷଣ କରେ। ବ୍ୟଭିଚାରର ଅମା ଅନ୍ଧକାର ପୂରା ସମାଜଟାକୁ କବଳିତ କରିପକାଏ। ଏଥିରେ ମ୍ରିୟମାଣ କବିସତ୍ତା ଗାଇଉଠେ :-

"କହନା କହନା      ସମାଜର କଥା
କହିଲେ ହୋଇବ ପୋଥି
ଖତ ଖାଇଯାଏ      ମଣିଷ ପଣିଆ
ସବୁ ଏଠି ଜାଲିଆତି।

(ବନମାଳା)

ଦୁରାଚାରୀ ମହିଷାସୁରର ବିନାଶ ପାଇଁ ମା ଦୁର୍ଗାଙ୍କର ଆବିର୍ଭାବସ୍ମରଣରେ କବିଙ୍କର 'ମହିଷମର୍ଦ୍ଦିନୀ' କବିତାଟି ଆଧୁନିକ ସମାଜ ପରିପ୍ରେକ୍ଷୀରେ ବିଶେଷ ବିଚାର୍ଯ୍ୟ। କାରଣ ଆଜି ଅସଂଖ୍ୟ ମହିଷାସୁର ନିଜ ନିଜର ଦୁଷ୍ଟ ସ୍ୱଭାବରେ ସମାଜ ଜୀବନକୁ ଅସ୍ତବ୍ୟସ୍ତ କରନ୍ତି। ସେମାନଙ୍କର ନିଧନ ପାଇଁ ମା'ଙ୍କର ଆବାହନ କରି କବି ଏକ ସୁନ୍ଦର ଧରିତ୍ରୀର କାମନା କରିଛନ୍ତି।

"ଗୋଟିଏ ଅସୁର ମାରିବା ପାଇଁକି
ଥିଲା ଏତେ ଆୟୋଜନ
ଏବେ କୋଟି କୋଟି ଅସୁର ଦାଉରେ
ଚରାଚର ହୀନିମାନ।
କୋଟିଏ ତ୍ରିଶୂଳ ଲୋଡ଼ା ହେବ ଏବେ
ଗୋଟିଏ ତ୍ରିଶୂଳ ନୁହେଁ
ରାଜନୀତି ଛତ୍ରଛାୟାରେ ଅଛନ୍ତି
ତାଙ୍କୁ ବା ପାରିବ କିଏ ?"

(ମହିଷ ମର୍ଦ୍ଦିନୀ – ବନମାଳା)

ଆଲୋଚନାର ନିଷ୍କର୍ଷରୁ ଏହା ସୂଚିତ ହୁଏ ଡ଼. ଶରତ ଚନ୍ଦ୍ର ରଥଙ୍କ ଗୀତିଧାରାର ବର୍ଣ୍ଣବୈଭବ। ଏ ସ୍ୱତନ୍ତ୍ର ନାନାଦି ଭାବଧାରାର ସୁଲଳିତ ପରିପ୍ରକାଶରେ ସେଗୁଡ଼ିକର ମର୍ଯ୍ୟାଦା ସୁରକ୍ଷିତ ଓ ସୁସଜ୍ଜିତ। ଗଭୀର ଦୃଷ୍ଟିରେ ନିରୀକ୍ଷଣ କଲେ ଏହାର ସୌନ୍ଦର୍ଯ୍ୟ ଭାବଚକ୍ଷୁରେ ଆପେ ଆପେ ଧରାଦିଏ, ଏଥିରେ ସନ୍ଦେହ ନାହିଁ।

– ବୀର ରାମଚନ୍ଦ୍ରପୁର, ସାକ୍ଷୀଗୋପାଳ, ପୁରୀ

# "ପ୍ରଫେସର ଶରତ ଚନ୍ଦ୍ର ରଥଙ୍କ କବିପ୍ରତିଭା : ଏକ ଆକଳନ"

ଅଧ୍ୟାପକ ଡ. ଭଗବାନ ପଟେଲ

ସାଂପ୍ରତିକ ସମାଲୋଚନା ସାହିତ୍ୟ ପ୍ରଫେସର ରଥଙ୍କ ଯେପରି ପ୍ରବେଶ ରହିଛି, ସେହିପରି ଓଡ଼ିଆ ଗୀତିକବିତାରେ ମଧ୍ୟ ଯଥେଷ୍ଟ ସୁନାମ ରହିଛି । ଇଂରାଜୀ କବି William Wordsworthଙ୍କ ଭାଷାରେ, "Poetry is the spontaneous overflow of powerful feelings"- କବିତାର ସ୍ୱତଃସ୍ଫୁର୍ତ୍ତ ପ୍ରବାହମାନତା ଭିତରେ ଜୀବନ ହୋଇଉଠେ ଉଦ୍‌ଭାସିତ । ସାଂପ୍ରତିକ ଓଡ଼ିଆ ଗୀତି କବିତା ବହୁବର୍ଣ୍ଣା । ଏଣୁ ପ୍ରଫେସର ରଥଙ୍କ ଗୀତି କବିତା ଗୁଡ଼ିକ ଅଧିକ ମନୋଜ୍ଞ, ମର୍ମସ୍ପର୍ଶୀ, ହୃଦୟଗ୍ରାହୀ ତଥା ସୁଖପାଠ୍ୟ ବୋଲି ମନେହୁଏ । ସଂଗୀତମୟତା ହେଉଛି ତା'ର ଅନ୍ୟତମ ବୈଶିଷ୍ଟ୍ୟ । ଶ୍ରୀରଥଙ୍କ ପ୍ରକାଶିତ 'ଧୂପବାସ', 'ମାଟିମହକ', 'ବନମାଳା', 'ନବଚେତନା', 'ଆରାଧନା' ଆଦି ଗୀତି କବିତା ସଂକଳନମାନ ପ୍ରକାଶିତ ହୋଇଅଛି ।

ଗୀତିକବି ଶରତ ଚନ୍ଦ୍ର ରଥ ଜଣେ ବହୁଚର୍ଚ୍ଚିତ ଗୀତି କବି ଭାବରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବେଶ୍ ସୁପରିଚିତ । ଓଡ଼ିଶାର ପ୍ରାୟ ଅଧିକାଂଶ ପତ୍ରପତ୍ରିକା ମାନଙ୍କରେ ନିୟମିତ ଭାବରେ ତାଙ୍କର ଗୀତିକବିତା ଗୁଡ଼ିକ ପ୍ରକାଶିତ ହୋଇ ଆସୁଅଛି ଏବଂ ବେଶ୍ ସଫଳତାଲାଭ କରିପାରିଥିବାର ଜଣାଯାଏ । ଏଣୁ ତାଙ୍କର କବିତାରେ ରହିଛି ଜୀବନ ଓ ଜଗତ ପ୍ରତି ଗଭୀର ଅନୁରାଗ ଏବଂ ଆସକ୍ତି । ସେ ମାନବୀୟ ଭାବଚେତନାର ଏକ ଅମୂର୍ତ୍ତ ପରିପ୍ରକାଶ ଦିଗରେ ସଦାସର୍ବଦା ଯତ୍ନଶୀଳ ଅଟନ୍ତି । ଭକ୍ତିରେ ପ୍ରୀତି ନଥିଲେ କିମ୍ବା ପ୍ରୀତିରେ ଭକ୍ତି ନଥିଲେ ତାହା ନିରର୍ଥକ ତଥା ଅର୍ଥଶୂନ୍ୟ ମନେ ହୋଇଥାଏ । ଗଭୀର ପ୍ରେମାନୁଭବ ମଧ୍ୟରେ ଜୀବନର ଚରମ ତଥା ପରମ ସାର୍ଥକତା ଯେ ପ୍ରଚୁର ପରିମାଣରେ ଅନୁଭବ କରାଯାଇପାରେ, ଏହା ପ୍ରଫେସର ରଥଙ୍କ ଗୀତିକବିତା ଗୁଡ଼ିକ ପ୍ରମାଣିତ କରିପାରିଛନ୍ତି । ଭକ୍ତି ହେଉଛି ଜୀବନର ଏକ ମହତ୍ ଚେତନା । ଭକ୍ତର ପରମ ନିଷ୍ଠା, ତ୍ୟାଗ ଓ ଆଦର୍ଶ ବଳରେ ସମାଜରେ ଶାନ୍ତି, ପ୍ରୀତି, ମୈତ୍ରୀ ଆଦିର ପ୍ରତିଷ୍ଠା କରାଯାଇପାରେ । ସୁତରାଂ ନିଷ୍କାମ ଭକ୍ତିପୂତ ପ୍ରାଣର ନିରାଜନାରେ ମନପ୍ରାଣ ହୋଇ ଉଠେ ପୂତ, ପବିତ୍ର ଓ ନିର୍ମଳ । ପ୍ରଫେସର ରଥଙ୍କ ଭାଷାରେ,-

"ହେବିନି ନିରାଶ ଏଇ ମୋ ବିଶ୍ୱାସ
ରଖିଛି ମନରେ ଅଖିଳ ସାଇଁ,
ପତିତ ପାବନ ବାନା ଉଡ଼ାଉଛ
ମୋ ପରି ପତିତ ତାରିବା ପାଇଁ,"

(କରୁଣାମୟ)

କବିଙ୍କର ନୈସର୍ଗିକ ମନୋଭାବ ଭିତରେ ରହିଛି ପ୍ରଚୁର ଆତ୍ମ-ପ୍ରତ୍ୟୟ । ଏଣୁ ଜୀବନର ପରମ ସାର୍ଥକତାକୁ ଉପଲବ୍ଧ କରି ପାରିଲେ ହିଁ କେବଳ ପରମ ଆନନ୍ଦ ଲାଭ କରାଯାଇପାରେ । ଅନ୍ୟଥା, ଜୀବନ

ମରୁବାଲି ସଦୃଶ ମନେ ହୋଇଥାଏ । ଏଣୁ ସେହି ବ୍ୟକ୍ତି ପରମ ଆତ୍ମ-ସନ୍ତୋଷ ଲାଭ କରିପାରନ୍ତି ଯେ ବିଶ୍ୱକୁ ମଧୁମୟ, ସୁଧାମୟ ତଥା ଅମୃତମୟ ବୋଲି ମନେକରି ପାରନ୍ତି । କବିଟିଏ ଯେତେବେଳେ ଏକ ଆଧାତ୍ମିକ ଜଗତରେ ଅବସ୍ଥାନ କରେ, ସେତେବେଳେ ସେ ହୋଇଯାଏ ଉଦାର, ଦରଦୀ ତଥା ମାନବବାଦୀ । ସଂବେଦନଶୀଳ ମନୋଭାବ ନେଇ ସେ ଦେଖେ ଜୀବନ ଓ ଜଗତର ମହାର୍ଘତାକୁ । ତା ପାଇଁ ସମଗ୍ର ବିଶ୍ୱ ହୋଇଉଠେ ପ୍ରେମର ପସରା ।

ପ୍ରଫେସର ରଥ ଉଦାର ଆଧାତ୍ମିକ ଚିନ୍ତା ଓ ଚେତନାର ଅଧିକାରୀ ଅଟନ୍ତି । ଶ୍ରୀମା ଓ ଅରବିନ୍ଦଙ୍କ ଦ୍ୱାରା ପ୍ରଦର୍ଶିତ ପଥର ଜଣେ ଅନୁସରଣକାରୀ ପଥିକ । ଜୀବନର ଚଲାପଥରେ ଯେତେ ଅଭାବ, ଅସୁବିଧା, ଅନଟନ, ଦୁର୍ବିପାକ ତଥା ବିପଦ ଆସିଲେ ମଧ୍ୟ ନିଜର କର୍ମପଥରୁ ବିଚ୍ୟୁତ ନହେବା ହେଉଛି ମାନବିକତାର ଆଧାରଶିଳା । ଏଣୁ ଏ ମର୍ତ୍ତ୍ୟ ସଂସାର ମଧ୍ୟରେ ଜନ୍ମଗ୍ରହଣ କରି ଜୀବନର ସାର୍ଥକତା ଅନୁଭବ କରିପାରିଲେ ହିଁ ମାନବ ଜୀବନ ସାର୍ଥକ ହୋଇଥାଏ । ଡ.ରଥ ଏହି କବିତାଗ୍ରନ୍ଥ ସମ୍ପର୍କରେ ଯଥାର୍ଥରେ ଲେଖିଛନ୍ତି, 'ଆଶାବାଦର ମଧୁମହକରେ ଶ୍ରୀମା ଶ୍ରୀଅରବିନ୍ଦଙ୍କ ରଚନାରାଜି ଅଭିଷିକ୍ତ ଓ ମହିମାମଣ୍ଡିତ । ସମସ୍ତ ଭାଷା ବିଭବ ଯାହାଙ୍କର ମହତ୍ତ୍ୱର ଆକଳନ ପାଇଁ ଯଥେଷ୍ଟ ନୁହେଁ, ତାଙ୍କ ପାଇଁ ମୁଁ କଣ ବା ଲେଖିବି ? ଏଇ କେତେକ ପ୍ରାର୍ଥନା ସଂଗୀତ ମାଧ୍ୟମରେ ମାଟିଦୀପରେ ସୂର୍ଯ୍ୟପୂଜା କରିବାର କ୍ଷୀଣ ପ୍ରୟାସ ମୁଁ କରିଛି ।"

ଏଣୁ ଜଣେ ସମାଜମନସ୍କ ତଥା ଜୀବନବାଦୀ କାବ୍ୟଶିଳ୍ପୀର ମନ ନେଇ ଡ. ରଥ ଯାହା ଲେଖିଛନ୍ତି ଗୀତି କବିତାରୂପରେ, ତାହା ନିଶ୍ଚୟ ପାଠକୀୟ ସ୍ନେହ, ଶ୍ରଦ୍ଧା ଓ ସମ୍ମାନ ଲାଭ କରିବ, ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ଥାଇ ନ ପାରେ । କବି ହୃଦୟର ସୁନିର୍ମଳ ଅଭିବ୍ୟକ୍ତି ଘଟିଛି ସୌନ୍ଦର୍ଯ୍ୟାତ୍ମକ ଶୈଳୀରେ ।

"ନୂତନ ଚେତନା ନୂତନ ଭାବନା
ଆସିବ ପାଇଲେ ତୁମରି କରୁଣା
ତୁମେ ହେବ ପ୍ରଭୁ ମୋ' ରଥେ ସାରଥି, ସମର ଭୂଇଁରେ ମରମରେ ।
ଜୀବନେ ଆସିବ ନୂଆ ଅନୁଭବ
ସରି କିବା ତାରେ ଅଳକା ବିଭବ
ନିରନ୍ତର ତୁମ ବିମୋହନ ଛବି ନାଚୁଥିବ ମନ ନୟନରେ ।"

(ନିବେଦନ-ନବ ଚେତନା)

ନୂତନ ଚେତନା ଏବଂ ନୂତନ ଭାବନା ମାଧ୍ୟମରେ ତନୁ ମନକୁ ଯଦି ଆକର୍ଷିତ କରାଯାଇପାରେ, ତେବେ ମନୁଷ୍ୟ, ଜନ୍ମ ଧନ୍ୟ ହୋଇଯାଏ । ସାଂପ୍ରତିକ କାଳର ପ୍ରତିଷ୍ଠିତ ଗୀତିକବି ତଥା ଉଚ୍ଚକୋଟୀର ସମାଲୋଚକ ଭାବରେ ପ୍ରଫେସର ଶରତ ଚନ୍ଦ୍ର ରଥଙ୍କ ଅବଦାନ ଓଡ଼ିଆ ବାଣୀ ଭଣ୍ଡାରକୁ ଅତୁଳନୀୟ ଏବଂ ଆମାପ ପରି ମନେହୁଏ । ଏବେ ବି ତାଙ୍କର ଲେଖନୀ ଚଳଚଞ୍ଚଳ । ଏକ ଅନାହତ ଦିବ୍ୟ ପ୍ରେମରେ କବି ପ୍ରଫେସର ଶରତ ଚନ୍ଦ୍ର ରଥ ଅବଗାହନ କରିଛନ୍ତି ଓ ଅନ୍ୟମାନଙ୍କୁ କରାଇବା ପାଇଁ ସାରସ୍ୱତ ଉଦ୍ୟମ କରିଛନ୍ତି । ସର୍ବୋପରି, ଓଡ଼ିଆ ସାହିତ୍ୟର ଜଣେ ରସସିକ୍ତ ମଣିଷଭାବରେ ସେ ପ୍ରତିଷ୍ଠା ଓ ସମ୍ମାନ ଲାଭ କରିପାରିବେ ବୋଲି ମୋର ଦୃଢ଼ ଆଶା ଓ ବିଶ୍ୱାସ ।

ଦଲଦଲି, କୁଣ୍ଡୁକେଲା, ସୁନ୍ଦରଗଡ଼

# ଅନୁରାଗରେ ପୁଲକିତ : କବି ଶରତ ଚନ୍ଦ୍ର ରଥ

ଡକ୍ଟର ସଂଘମିତ୍ରା ମିଶ୍ର

ଗୀତିକବିତା ରାଗ ଓ ଅନୁରାଗର କବିତା ।ଏହାର ଆକାର କ୍ଷୁଦ୍ର, ମାତ୍ର ଉପଲବ୍ଧି ବିରାଟ । ଏହା ସାହିତ୍ୟର ଏକ ସୁକୁମାର ବିଭାଗ । ହୃଦୟ ଦେଇ ଏହାକୁ ଘେନିହୁଏ । ବୁଦ୍ଧିର କସରତ ନୁହେଁ ବରଂ ହୃଦୟ ଓ ଆତ୍ମାର ଅଂଗୀକାର ନେଇ ଏହା ମୁହୂର୍ତ୍ତକୁ ଚିରନ୍ତନରେ ପରିଣତ କରିଦେଇପାରେ । 'ଗୀତିକବିତା' ଭାବରେ ଚିହ୍ନିତ ହେବା ପୂର୍ବରୁ ମଧ୍ୟ ଏହାର ସଙ୍ଗୀତ ମାଧୁର୍ଯ୍ୟ ପ୍ରାଣକୁ ସ୍ପର୍ଶ କରୁଥିଲା । ଗୋଟିଏ କଥାରେ କବିତା ଓ ଗୀତିକବିତା ମଧ୍ୟରେ କୌଣସି ବିଭାଜନ ହିଁ ନଥିଲା । Poetry of eye ଓ Poetry of ear ଭାବରେ ଏହାର ସିଦ୍ଧି ରହିଥିଲା । ମାତ୍ର କବିତା Poetry of intellectରେ ପରିଣତ ହେବା ସମୟରେ ଏହାର ଧାରା ମଧ୍ୟ ବଦଳିଗଲା । ଗୋଟିଏ ଧାରାରେ ଗଦ୍ୟ କବିତା ସ୍ୱର ଓ ଛନ୍ଦହୀନ ମନେ ହେଉଥିଲେ ହେଁ ଅନ୍ତରୀଣ ଛନ୍ଦରେ ଉଦ୍‌ଭାସିତ ହେଲା । ଏହା ଜୀବନର ପରିବର୍ଦ୍ଧିତ ମୂଲ୍ୟବୋଧ ଓ ଜୀବନ ପାଇଁ ଅଙ୍ଗୀକାରବଦ୍ଧତାର କଥା କହିଲା । ଅପର ଧାରାଟି ଛଳ ଛଳ ଗୀତିକବିତା ପାଲଟି ଅନ୍ତରରେ ପୁଲକ ଆଣିଦେବା ସହିତ ଜୀବନକୁ ଭିନ୍ନ ଭାବରେ ବୁଝିବାର ରାହା ଖୋଲିଦେଲା ।

ଭକ୍ତକବି ମଧୁସୂଦନଙ୍କ ସମୟରୁ ଯେଉଁ ଗୀତିକବିତାର ଦିଗନ୍ତ ଆବିଷ୍କାର ହୋଇଥିଲା ତାହା ବିଚିତ୍ର ବର୍ଣ୍ଣବିଭା ନେଇ ଓଡ଼ିଆ ସାହିତ୍ୟକୁ ପ୍ରାଣବନ୍ତ କରିଛି । ଓଡ଼ିଆ ଏଲିଜି, ସନେଟ ପ୍ରଭୃତି ବିଭିନ୍ନ ଫର୍ମର ଗୀତିକବିତା ସ୍ୱତଃସ୍ଫୂର୍ତ୍ତତା, ସଂକ୍ଷିପ୍ତତା, ଗାନଯୋଗ୍ୟତା ତଥା ଭାବୋଚ୍ଛ୍ୱାସକୁ ସାର୍ବଜନୀନ କରିବାର କଳା ନେଇ ପାଠକମାନଙ୍କୁ ଆଜି ପର୍ଯ୍ୟନ୍ତ ମୁଗ୍ଧ କରି ଆସିଛି । ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋର ପ୍ରଭୃତି ଗୀତିକବିତା ରଚନା କରି ଉତ୍କଳ ବାଣୀ ଭଣ୍ଡାରକୁ ପରିପୁଷ୍ଟ କରିଛନ୍ତି । ପୁଣି ପରବର୍ତ୍ତୀ କାଳରେ କାଳୀଚରଣ, କୁନ୍ତଳାକୁମାରୀ, ବୈକୁଣ୍ଠନାଥ, ମାନସିଂହ ଓ ରାଧାମୋହନ ଗଡ଼ନାୟକଙ୍କ ଭଳି ପ୍ରଥିତଯଶା କବିମାନେ ଗୀତିକବିତା ରଚନା କରି ଓଡ଼ିଆ ସାହିତ୍ୟକୁ ମର୍ଯ୍ୟାଦାବନ୍ତ କରିଛନ୍ତି । ଗୀତିକବିତାର ଯେଉଁ ବିଭବଟି ସ୍ୱତନ୍ତ୍ର ତାହା ହେଉଛି କ୍ଷୁଦ୍ର ଅବୟବ ମଧ୍ୟରେ ବିରାଟ ସତ୍ତାର ଉପଲବ୍ଧି ଓ ପ୍ରଥମ ପାଠରେ ହୃଦୟକୁ ଚହଲାଇ ଦେବାର କ୍ଷମତା । ଶବ୍ଦ ଗୁମ୍ଫନରେ ଅସାଧାରଣ କୁଶଳୀ ନ ହେଲେ କବିଟିଏ ଗୀତିକବି ହେବା ସମ୍ଭବ ନୁହେଁ । A Lyric is any fairly short poem, consisting of the utterance by a single speaker, who express a state of mind or a process of perception, thought and feeling." (A Glosary of Literary terms - M.H. Abrahams - P. 108)

କେବେ କବିଟିଏ "ମୁଁ ଭାବରେ ଗୀତିକବିତାରେ ଆତ୍ମପ୍ରକାଶ କରେ । କିନ୍ତୁ ଏ 'ମୁଁ' ସର୍ବଦା କବି ହେବା ଜରୁରୀ ନୁହେଁ । କେବେ ସେ ଘାସ ଫୁଲ, କେବେ ଏକୁଟିଆ ନକ୍ଷତ୍ର, କେବେ ପ୍ରାର୍ଥନାର ସ୍ୱର ପୁଣି କେବେ ରାତି ଶେଷର ଶିଶିର ବିନ୍ଦୁ ମଧ୍ୟ ହୋଇପାରେ । କିନ୍ତୁ ଏ ସକଳ ସ୍ଥିତିକୁ ସେ ଅବଶ୍ୟ ଆତ୍ମସ୍ଥ

କରିବ। ଯେଉଁ କଥାଟି ସେ କହିବାକୁ ଋହୁଁଚି, ତାକୁ ଖୁବ୍ କମ୍ ଶବ୍ଦପୁଞ୍ଜ ଭିତରେ ଖୁବ୍ ସଚେତନ ପୁଣି କଳାତ୍ମକ ଭାବରେ କହିବ। କେବେ ସେ ସମୟର ପ୍ରତିନିଧି ବା କେବେ ପ୍ରତୀକ। କେବେ ପୁଣି ଭବିଷ୍ୟତର ମୁଖପାତ୍ର। କେବେ Lyre ବା ବାଦ୍ୟଯନ୍ତ୍ର ସାହାଯ୍ୟରେ ଗାନ କରାଯାଇଥିବାରୁ ଏହାକୁ Lyric କୁହାଯାଉଥିଲା। ମାତ୍ର ଗୀତିକବିତା କେବଳ ଗାନଯୋଗ୍ୟ ନୁହେଁ ବରଂ ହୃଦୟ ନିର୍ଭର କବିତା ଯାହା କେବେ ଆବୃତ୍ତିଧର୍ମୀ ମଧ୍ୟ। ପୁଣି କେବେ ସମୂହଗାନ ଭାବରେ ଉଦ୍‌ବୋଧନୀ ସଙ୍ଗୀତ। କେବେ ବ୍ୟକ୍ତିଗତ ଜୀବନର ଆନନ୍ଦ ମଧୁର ବା ବେଦନାବିଧୂର ଅନୁଭବକୁ ନେଇ ପରିପୁଷ୍ଟ। କିନ୍ତୁ ଉଦ୍‌ବୋଧନୀ ସଙ୍ଗୀତମାନ ଯେ ଦିନେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ବାର୍ତ୍ତା ନେଇ ଅନାମଧେୟ ପଲ୍ଲୀ ଜନତାକୁ ଉଦ୍‌ବୁଦ୍ଧ କରିଥିଲା ଏକଥା ନଜାଣେ କିଏ ? ଜାତୀୟ କବି ବୀରକିଶୋର ଓ ଋରଣକବି ବାଞ୍ଛାନିଧି ତ ଓଡ଼ିଆ ଜାତିର ପ୍ରାତଃ- ସ୍ମରଣୀୟ।

ଗୀତିକବି ଶରତ ଚନ୍ଦ୍ର ରଥଙ୍କ ରଚନାରେ ଆମେ ପ୍ରାର୍ଥନା ଗୀତି ଦେଶପ୍ରୀତି, ଆଧୁନିକ ଗୀତିକବିତା ତଥା କେତେକ ବ୍ୟଙ୍ଗାତ୍ମକ କବିତା ଦେଖିବାକୁ ପାଇବା। କବି ଖୁବ୍ ସନ୍ତର୍ପଣରେ ଶବ୍ଦ ଚୟନ କରିଛନ୍ତି ଓ ତାକୁ ଜୀବନ୍ତ ତଥା ଭାବମୟ କରିବାର ପ୍ରଚେଷ୍ଟା କରିଛନ୍ତି। ତେଣୁ କ୍ଷୁଦ୍ରାବୟବ ଗୀତିକବିତା ମାଧ୍ୟମରେ ବିପୁଳ ଜୀବନାନୁଭବର ସ୍ଫୁରଣ ଘଟିଛି। ସବୁଠାରୁ ଉଲ୍ଲେଖନୀୟ ଅନୁଭବ ହେଉଛି କବିଙ୍କର ଶ୍ରୀ ଅରବିନ୍ଦ ଓ ଶ୍ରୀମା'ଙ୍କ ପ୍ରତି ଥିବା ଐକାନ୍ତିକ ଭକ୍ତିର ଅନୁଭବ। ଏହି ଅନୁଭବ ତାଙ୍କୁ ଅନେକ ଗୀତିକବିଙ୍କ ମଧ୍ୟରେ ସ୍ୱତନ୍ତ୍ର ଭାବରେ ଚିହ୍ନାଇ ଦିଏ। କବି ଡ. ଶରତ ଚନ୍ଦ୍ର ରଥ ଏହିଭଳି ଜଣେ ଗୀତିକବି, ଯାହା ପାଖରେ ଛନ୍ଦ ସହିତ ଶବ୍ଦର ସୁକ୍ଷମ ସମନ୍ୱୟ ଦୃଷ୍ଟିଗୋଚର ହୁଏ। ଯିଏ କବିତା ଭିତରେ ଜୀବନ ଖୋଜନ୍ତି ଓ ମୂଲ୍ୟବୋଧର କଷଟିରେ ପରଖି ଗୋଟି ଗୋଟି କବିତାର ପ୍ରତିମା ଗଢ଼ି ଋଲନ୍ତି। ଡଃ ଶରତ ଚନ୍ଦ୍ର ରଥ ଭାଷା ସାହିତ୍ୟର ପ୍ରଫେସର, ସୁବକ୍ତା, ସୁସମାଲୋଚକ। ତାଙ୍କର ବିଦ୍ୟାଦାନ କୌଶଳ ଭିତରେ ହାସ୍ୟ ସହିତ ଜୀବନାନୁଭୂତିର ସମନ୍ୱୟ ଛାତ୍ରଛାତ୍ରୀ ଗହଣରେ ତାଙ୍କୁ ଏକ ସ୍ୱତନ୍ତ୍ର ପରିଚିତି ଦେଇଛି। କିନ୍ତୁ ସେ ଗୀତିକବି ଭାବରେ ବିଶେଷ ପରିଚିତ। ଗୀତିକବିତାଟିଏ ରଚନା କରିବା, ତାକୁ ଗୁଣୁଗୁଣୁ ହୋଇ ଗାଇବା ଓ ବାରମ୍ବାର ସଜାଡ଼ିବାରେ ତାଙ୍କର ଆଗ୍ରହ। ସେହି ଗୀତିକବି ଶରତ ଚନ୍ଦ୍ର ରଥଙ୍କ କବିତା ସଂପର୍କରେ କିଞ୍ଚିତ ଆଲୋଚ଼ନା ଏହି ପ୍ରବନ୍ଧର ଉଦ୍ଦେଶ୍ୟ। କବି ପ୍ର. ରଥ ଶ୍ରୀଅରବିନ୍ଦ ଦର୍ଶନରେ ବିଶ୍ୱାସୀ ତେଣୁ ମଣିଷର ଉତ୍ତରଣ ଅବଶ୍ୟ ଘଟିବଏକଥା ସେ ଅନୁଭବ କରିଛନ୍ତି। କେବେ ମାଟିର ମହକରେ ସେ ବିଭୋର ତ କେବେ ସୂର୍ଯ୍ୟର ଆମନ୍ତ୍ରଣରେ ଉଚ୍ଚକିତ। କେବେ ଧୂପବାସ ଭିତରେ ସେ ଜୀବନ ଦେବତାର ଆରାଧନା କରିଛନ୍ତି ତ କେବେ ବନମାଳାରେ ନବଚେତନାର ଦିବ୍ୟ ଅବତରଣ ଦେଖି ଆତ୍ମହରା ହୁଅନ୍ତି। ଶବ୍ଦଟିଏ କବିତାରେ ଖଞ୍ଜିଦେଲେ ଯଥେଷ୍ଟ ନୁହେଁ ବରଂ ପ୍ରକୃତ କବିତାର ଶବ୍ଦଟିଏ ସ୍ୱତନ୍ତ୍ର ଶକ୍ତିରେ ଅଭିମନ୍ତ୍ରିତ ହୋଇଉଠେ, ଏହା ଶରତ ବାବୁଙ୍କ କବିତା ପଢ଼ିବା ମଣିଷଟି ଆପେ ଆପେ ବୁଝିପାରେ। କବିତା କେବଳ ଅବସର ବିନୋଦନ ପାଇଁ ନୁହେଁ ବରଂ ଜୀବନକୁ ଅର୍ଥମୟ କରିବାର କ୍ଷମତା ରଖେ ଏବଂ ପାଠକଙ୍କୁ ଶିକ୍ଷିତ କରି ଉତ୍ତରିତ କରିବାର ଦାୟିତ୍ୱ ବହନ କରିପାରେ। ତାଙ୍କ କବିତା ଗୁଡ଼ିକ ପାଠ କଲେ ଏହା ହିଁ ଅନୁଭବ ହୁଏ।

ଏବେ ପ୍ରାୟ ପ୍ରତ୍ୟେକ ପତ୍ରିକାରେ ଗୀତି କବିତା ପାଇଁ ସ୍ୱତନ୍ତ୍ର ସ୍ଥାନ ରହୁଛି ଓ ଗୀତିକବିତାର ସ୍ୱାତନ୍ତ୍ର୍ୟକୁ ମର୍ଯ୍ୟାଦାମଧ ମିଳିଛି। କବି ଶରତ ଚନ୍ଦ୍ର ରଥଙ୍କର ବହୁ ଗୀତିକବିତା ଏହିଭଳି ପତ୍ର ପତ୍ରିକାରେ ମୁଦ୍ରିତ ଓ ଆଦୃତ।

କବି ଶ୍ରୀଯୁକ୍ତ ରଥଙ୍କର ସଂଖ୍ୟାଧିକ କବିତା ବିଭୁପ୍ରୀତିମୂଳକ। ଏଥିମଧ୍ୟରୁ କେତେ ବିଭିନ୍ନ ଦେବଦେବୀଙ୍କ ଭଜନ ଓ କେତକ ମାତୃବନ୍ଦନା। କିନ୍ତୁ ଏକଥା ମଧ ସତ୍ୟ ଯେ ଦେଶ ବନ୍ଦନା ଶୀର୍ଷରେ ରଚିତ ତାଙ୍କର ଅନେକ କବିତା 'ମାତୃବନ୍ଦନା'ର ସମକକ୍ଷ। ଅର୍ଥାତ୍ ଶ୍ରୀଅରବିନ୍ଦଙ୍କ ଚିନ୍ତାରେ ଭାରତ ବର୍ଷ କେବଳ ଭୂଖଣ୍ଡମାତ୍ର ନୁହେଁ ସେ ଚିନ୍ମୟୀ ଜନନୀର ମଧୁମୟୀ ମୂର୍ତ୍ତି। କବି ଶ୍ରୀଯୁକ୍ତ ରଥଙ୍କର ଭଜନ ଗୁଡ଼ିକ ବେଶ୍ ସାବଲୀଳ। ସେ ଜାଣନ୍ତି ଯେ ସବୁ ପ୍ରଭୁଙ୍କର ଇଚ୍ଛା। ତାଙ୍କ ଜୀବନ ବୀଣାର ତାରରେ ପ୍ରଭୁ ହିଁ ମଧୁର ମୂର୍ଚ୍ଛନା। ତାଙ୍କର ଉପସ୍ଥିତି ହିଁ ଧୂଳିର ଧରାକୁ ଦିବ୍ୟ ବିଭୂତିରେ ପୂର୍ଣ୍ଣ କରିଥାଏ। ସେ ଅନ୍ତର୍ଯ୍ୟାମୀ ମାତ୍ର ଶୂନ୍ୟରୂପ। ତାଙ୍କୁ ଦେଖିବା ହୁଏତ ସମ୍ଭବ ନୁହେଁ ମାତ୍ର ତାଙ୍କର କାମନା –

ତୁମ ରୂପବିଭା ନ ଦେଖିଲେ ନାହିଁ ତୁମ ସ୍ୱରସୁଧା ନ ଶୁଣିଲେ ନାହିଁ
ଏତିକି କର ହେ ଗୋସାଇଁ
ତୁମେ ଅଛ ବୋଲି ପାଶେ ପାଶେ ମୋର
ମୋ ଚେତନା ଯାଉ କହି। (ଧୂପବାସ)

ସେ 'ନବଚେତନା'ର କବି। ଯଦି ତାଙ୍କର ଚୈତ୍ୟ ସତ୍ତା ତାଙ୍କୁ ଇଙ୍ଗିତ ଦେବ ଯେ ତାଙ୍କ ପ୍ରାଣର ଆଲୋକ ତାଙ୍କ ନିକଟରେ ହିଁ ରହିଛନ୍ତି, ସେତିକି ତାଙ୍କ ପାଇଁ ଯଥେଷ୍ଟ। କବି କିନ୍ତୁ ଅପେକ୍ଷା କରନ୍ତି ଅନେକ ପୂଜା ଉପଚାର ନେଇ। ଗୁନ୍ଥିଛନ୍ତି ଗଜରା ହାର, ରଖିଛନ୍ତି ଚନ୍ଦନ ଓ ଧୂପ। ନିଜକୁ କେବେ ବଣଫୁଲ ବୋଲି ଭାବିଛନ୍ତି ତ କେବେ କୃଷ୍ଣଙ୍କ ବଂଶୀ ହେବାକୁ ଅପେକ୍ଷା କରିଥିବା ସାଧାରଣ ବାଉଁଶ ଖଣ୍ଡେ। ପୁଣି କେବେ ଘଣ୍ଟ, କେବେ କାଇଁଚ, କେବେ ଧୂପ ବା ପଙ୍କ। ସେ ଏକଥା ମଧ ଉପଲବ୍ଧି କରିଛନ୍ତି ଯେ ଅହମିକା ଭାଂଗି ନଗଲେ ପ୍ରଭୁଙ୍କ ଦର୍ଶନ କାମନା କରିବା ବୃଥା। ଏତିକିରେ କିନ୍ତୁ ତାଙ୍କର ଭକ୍ତି ଭାବନା ଅଟକି ଯାଇନାହିଁ। ସେ ପ୍ରଭୁଙ୍କ ସହିତ ତାଙ୍କର ସମ୍ପର୍କର ଯୌକ୍ତିକତା ପ୍ରମାଣ କରୁ କରୁ ସମଗ୍ର ବିଶ୍ୱ ମାନବର ବକ୍ତବ୍ୟ ଉପସ୍ଥାପନ କରିଛନ୍ତି–

ମୁଁ ନଥିଲେ ତୁମେ କାହିଁ ରହିବ ହେ ହରି
ଶାମୁକା ହେଲେ ମୁଁ ତୁମେ ମୁକୁତାର ସରି
ମୁହିଁ ନଦୀଧାର ତୁମେ ସୁନୀଳ ସାଗର (ଆରାଧନା)

ସେ ଉପାସନା ଜାଣନ୍ତି ନାହିଁ ତଥାପି ଏତିକି ଜାଣନ୍ତି ଯେ ସବୁ ପ୍ରଭୁଙ୍କ ଦାନ। ସେ ହିଁ ଫୁଲ ପାଖୁଡ଼ାରେ ମଧୁ, ଜୀବନରେ ଆଲୋକ, ଶାନ୍ତିର ନିର୍ଝରିଣୀ, ସକଳ ସମ୍ଭାବ୍ୟ ପ୍ରଶ୍ନର ଉତ୍ତର ଆଉ ଜୀବନ ଆକାଶର ଧ୍ରୁବତାରା ଯିଏ ପଥଭୁଲା ନାବିକର ଏକମାତ୍ର ସହାୟକ। ଥରେ ସେ ଧ୍ରୁବତାରା ନିର୍ଦ୍ଦେଶିତ ପଥରେ ଚାଲିଲେ ଆଉ ବାଟ ଭୁଲିବାର ନାହିଁ। ତେଣୁ ସେହି ଆଲେକ ପଥରେ ଚାଲିବାର ଧୈର୍ଯ୍ୟ ଓ ଆଗ୍ରହ ରଖି କବି ନିଜର ଯାତ୍ରା ଆରମ୍ଭ କରିଛନ୍ତି।

'ଆରାଧନା'ର କେତେକ ସଙ୍ଗୀତ ଓ 'ନବଚେତନା'ରେ ସେ ଯୁଗପୁରୁଷ ମହାଯୋଗୀ ଶ୍ରୀ ଅରବିନ୍ଦ ଓ ଶ୍ରୀମା'ଙ୍କର ବନ୍ଦନା କରିଛନ୍ତି । 'ନବଚେତନା'ର ମୁଖବନ୍ଧ 'ପଦେଅଧେ'ରେ ଶ୍ରୀଯୁକ୍ତ ରଥଙ୍କ ଉକ୍ତି ହେଉଛି "ମହାଯୋଗୀ ଶ୍ରୀ ଅରବିନ୍ଦଙ୍କର ମହନୀୟ ଉପସ୍ଥିତି ଆଗାମୀ ଶୁଭଦିନ ପାଇଁ ଏକ ନିର୍ଭରତାପୂର୍ଣ୍ଣ ପ୍ରତିଶ୍ରୁତି । ନୂତନ ଉଷାଲୋକର ନବରାଗିଣୀ ହେଉଛନ୍ତି ଶ୍ରୀମା' । ଗୋଟିଏ ଚେତନାର ଦୁଇଟି ଭୌତିକ ବିଗ୍ରହ । ଅତିମାନସର ଭଗୀରଥ ମହାଯୋଗୀ ଶ୍ରୀଅରବିନ୍ଦ ଓ ସେହି ଅତିମାନସକୁ ଜଡ଼ଜଗତରେ କ୍ରିୟାଶୀଳ କରାଇଥିବା ଦିବ୍ୟଜନନୀ "ଶ୍ରୀମା', ନୂତନ ଦିଗନ୍ତର ଯଥାର୍ଥ ସନ୍ଧାନଦେଇ ସମଗ୍ର ମାନବଜାତିକୁ ତାଙ୍କଠାରେ ଋଣୀ କରାଇଛନ୍ତି ।" ସେହି ପରମଯୋଗୀ ଶ୍ରୀ ଅରବିନ୍ଦଙ୍କ ଆଶ୍ରିତ ଶରତବାବୁ ଭକ୍ତିର ନୈବେଦ୍ୟ ବାଢ଼ିଛନ୍ତି ଦିବ୍ୟଚେତନା ଉଦ୍ଦେଶ୍ୟରେ ।

"ହସରେ ଲୁହରେ ଆଶା ନିରାଶାରେ ମାଆ ନାମ ହେଲେ ସାଥି
ଜୀବନ ଆକାଶେ ସ୍ୱରୂପ ଉଇଁବ ପାହିଯିବ ଅମାରାତି"
(ନବଚେତନା)

ତାଙ୍କର ପରମ ଉପାସ୍ୟ ତାଙ୍କ ଅବନ୍ଧୁ ଜୀବନର ବନ୍ଧୁ, ବଣା ନାବିକର ବତୀଘର, ସେ ବିଶ୍ୱକଲ୍ୟାଣ ପାଇଁ ଅତିମାନସର ମହତ୍ ଶକ୍ତି ନେଇ ଅବତୀର୍ଣ୍ଣ, ପୁଣି ତାଙ୍କ ପାଇଁ ଦିବ୍ୟଜନନୀ ଶ୍ରୀମା' -

ମାଆ, ମାହେଶ୍ୱରୀ ଅଗତିର ଗତି
ମହାକାଳୀ ମହାଲକ୍ଷ୍ମୀ ସରସ୍ୱତୀ
ସତ୍ୟମୟୀ ତୁମେ ଆନନ୍ଦମୟୀ ଗୋ
ବିଜ୍ଞାନମୟୀ ମାଆ - (ନବଚେତନା)

ଏକଂସଦ୍ ବିପ୍ରାଃ ବହୁଧାବଦନ୍ତି' ଏହି ଶ୍ଳୋକଟି ଶ୍ରୀଯୁକ୍ତ ରଥଙ୍କ ଚେତନାରେ ଉଦ୍ଭାସିତ । ସେ ପ୍ରାର୍ଥନା କରନ୍ତି "ତୁମେ ଥିଲ ଏକ ହୋଇଲ ଅନେକ ଆପଣା ଇଛାବଳେ" (ନବଚେତନା - ପୃ ୨୩) ସେ ପୁଣି ମାହେନ୍ଦ୍ର ବେଳାର ଅପେକ୍ଷା କରନ୍ତି ଯେଉଁଦିନ ସମଗ୍ର ପୃଥିବୀ କେଉଁ ଅନାଗତର ପଦଧ୍ୱନି ଶୁଣିବାକୁ ଉତ୍କର୍ଣ୍ଣିତ ହୋଇ କାନ ଡେରିଥିବ ।

'ଧୂପବାସ'ର କେତେକ କବିତାରେ ମାତୃବନ୍ଦନା ସହିତ ଶ୍ରୀକୃଷ୍ଣ ବନ୍ଦନା ଓ ଜଗନ୍ନାଥଙ୍କ ଜଣାଣ ଏକତ୍ରିତ ହୋଇଛି । ଶ୍ରୀକୃଷ୍ଣ ବା ଶ୍ରୀଜଗନ୍ନାଥଙ୍କୁ ନେଇ ଓଡ଼ିଆ ସାହିତ୍ୟ ସମୃଦ୍ଧ । ତଥାପି ବଡ଼ଦେଉଳର କାଳିଆ ଠାକୁରଙ୍କୁ ସେ "ମୁରଲୀଅଧରା, ରାଧାପଦ ଝରା ଝୁଣ୍ଟିଆ ମୂଲରେ କିଣା" ବୋଲି କୁହନ୍ତି । ପୁଣି "ମୁହିଁ ଜୀବ ତୁମେ ପରମ" ଭାବରେ ପରିକଳ୍ପନା କରୁ କରୁ ଅଖିଳ ବ୍ରହ୍ମାଣ୍ଡ ରାଜରାଜେଶ୍ୱର ବୋଲି ଜଗନ୍ନାଥଙ୍କୁ ସମ୍ବୋଧନ କରନ୍ତି । ସେ କେବେ ଦୀନହୀନ ଈଶ୍ୱରଙ୍କର କୃପାପ୍ରାର୍ଥୀ ଅକିଞ୍ଚନଟିଏ, ପୁଣି ଅନ୍ୟତ୍ର ସେ ଜ୍ଞାନୀସୁଲଭ ବିଚାର ମଧ୍ୟ ରଖିଛନ୍ତି । ଜୀବ ଓ ପରମର ସଂପର୍କ, ନଦୀ ଓ ସାଗରର ସଂପର୍କ ବୋଲି ସେ ଜାଣନ୍ତି । ସଂସାରର ପ୍ରତ୍ୟେକ ଘଟଣା ପଛରେ ଗୋଟିଏ ଦିବ୍ୟଇଙ୍ଗିତ ରହିଛି ବୋଲି ମଧ୍ୟ ବୁଝିପାରନ୍ତି ।

କବି ସଂସାରର କଳୁଷ ମଧ୍ୟରେ କମଳ ସଦୃଶ ଏକନିଷ୍ଠ ହୋଇ ଜୀବନ ଦେବତାର ରଶ୍ମିରେ ଅବଗାହନ କରନ୍ତି । ସଂସାର ମାୟାରେ ସେ ବିବ୍ରତ । ତାଙ୍କ ମନ ଦୃଢ଼ ହୋଇ ଥରେ ଈଶ୍ୱରାର୍ପିତ ହୋଇଯିବା ପରେ ସେ ଆଉ ବ୍ୟସ୍ତ କ'ଣ ପାଇଁ ହେବେ ! ଥରେ ଯଦି ଦିବ୍ୟ ଜନନୀ ତାଙ୍କର ହାତଧରି ଚଲାଇନେବେ,

ତେବେ ଜୀବନରେ ଆଉ ପଡ଼ିବାର ଭୟ ନଥିବ । ଥରେ ଚେତନାର ଦ୍ୱାର ବିମୁକ୍ତ ହେଲେ ଆଶାର ସ୍ୱରରେ ବହୁ ଦିନରୁ ନୀରବିତ ହୃଦୟ ବିପଞ୍ଚିରେ ନବରାଗ ବାଜି ଉଠିବ । 'ଚେତନାର ଫୁଲଝରି' କବିତାରେ ତାଙ୍କର କାମନା –

"ତୁମ ହସରେଖା ଫୁଲ ହୋଇପରା
ଫୁଟନ୍ତା ମୋ ମନ କୁଞ୍ଜେ
ତୁମରି କରୁଣା ତାରାଟିଏ ହୋଇ
ଦିଶନ୍ତା ଜୀବନ ସଂଗେ
ତୁମ ଆଶା ହୋଇ ଆଶାବରୀ ରାଗ
ବାଜନ୍ତା ମରମ ତଳେ
ତୁମ ଭାଷା ହୋଇ ବେଣୁ ତାନ ସୁଧା
ମିଶନ୍ତା ଯମୁନା ଜଳେ"

କବି ଶରତଚନ୍ଦ୍ର ରଥ ସବୁବେଳେ ଆଶାର ସ୍ୱର ହିଁ ଶୁଣିଛନ୍ତି ଓ ଶୁଣାଇବାର ପ୍ରୟାସ କରିଛନ୍ତି । ସଂସାରରେ ଥିବା ମଣିଷର ଦୁଃଖ ଶୋକ ନୈରାଶ୍ୟ ଅବଶ୍ୟ ରହିବ । ମାତ୍ର ଥରେ ଚେତନାର ଦିଗନ୍ତ ପରିଷ୍କାର ହୋଇଗଲେ, ଥରେ ଜୀବନର ଲକ୍ଷ୍ୟ ସ୍ଥିର ହୋଇଗଲେ ଆଉ ନିରାଶା ଭୀତ କରିପାରେ ନାହିଁ । କେଉଁ ଏକ ଶକ୍ତି ହାତଧରି ଉର୍ଦ୍ଧ୍ୱକୁ ଉଠାଇନିଏ । ଅମା ଅନ୍ଧାରରେ ଆଶାର ଆଲୋକରେଖା ଦିଶେ ଆଉ ଜୀବନ ପାଲଟି ଯାଏ ସମଗ୍ର ବିଶ୍ୱ ପାଇଁ ଶୁଭ ଅଭିଳାଷଟିଏ । ନୂଆ ଆଶାର ରାଗରେ ଅନୁରଂଜିତ ହୋଇଯାଏ ମନ । ତେଣୁ କବି ଗାଇଛନ୍ତି

ତୁମେ ଆଶାର ଅମୃତ ଧାରା
ଭାଷା ନାହିଁ ତୁମ ଗୁଣ ଗାଇବାକୁ
ଭାବକୁ ନିକଟପରା । (ଧୂପବାସ)

କବି ଶ୍ରୀଯୁକ୍ତ ରଥ ଦେଶପ୍ରୀତିର ଏକାଧିକ କବିତା ରଚନା କରିଛନ୍ତି । ଭାରତ ତାଙ୍କ ପାଇଁ ଏକ ଭୂଖଣ୍ଡ ମାତ୍ର ନୁହେଁ, ଏହା ଆର୍ଯ୍ୟଋଷିର ଦେଶ, ଯାହା ଭିତରେ ଏକ ଚେତନାଶକ୍ତି ସର୍ବଦା ଜାଗ୍ରତ । 'ମାଟି ମହକ' କବିତା ପୁସ୍ତକର ପ୍ରାରମ୍ଭରେ ସେ ଅରବିନ୍ଦ, ଶ୍ରୀମା' ଓ ବିବେକାନନ୍ଦଙ୍କର ଭାରତ ଭାବନାମାନ ଉଦ୍ଧାର କରିଛନ୍ତି । ଏହି ଉନ୍ନତ ବିଚାରଧାରା ହିଁ କବିଙ୍କୁ ଦେଶପ୍ରୀତିର କବିତା ରଚନା କରିବା ପାଇଁ ଆଗ୍ରହୀ କରିଛି । "ଭାରତ ହିଁ ସମଗ୍ର ବିଶ୍ୱର ଆଧ୍ୟାତ୍ମିକ ଗୁରୁ ହେବାର କ୍ଷମତା ରଖେ" – ଶ୍ରୀମା'ଙ୍କର ଏହି ଜଳଦଗମ୍ଭୀର ବାଣୀ ସବୁ ଭାରତୀୟମାନଙ୍କ ପାଇଁ ପରମ ଆଶ୍ୱାସନାର ବିଷୟ । ବିବେକାନନ୍ଦଙ୍କର ବାଣୀ "ଭାରତର ସମାଜ ମୋର ଶୈଶବର ଶିଶୁଶଯ୍ୟା, ଯୌବନର ଉପବନ ଓ ବାର୍ଦ୍ଧକ୍ୟର ବାରଣାସୀ"ର ଛାୟାରେ ଶ୍ରୀଯୁକ୍ତ ରଥ ଲେଖନ୍ତି –

"ଏଇ ମାଟି ମୋର ସରଗରୁ ବଡ଼
ଶିଶୁ ଶଯ୍ୟା ଏଇ ମୋର ଶୈଶବର
ଅଶେଷ ମମତାମୟୀ

ମୋର ଅଲିଅଳି ଅଛି ସେ ସମ୍ଭାଳି,
ତୁଳନା ତାହାର ନାହିଁ।"

(ମାଟି ମହକ)

ସେ ଭାରତ, ଉତ୍କଳ ଏପରିକି ନିଜ ଗାଁମାଟିର ମମତାକୁ ନେଇ ସଙ୍ଗୀତମାନ ରଚନା କରିଛନ୍ତି। ଏ ଦେଶ ଧର୍ମନୀତି, ଭକ୍ତି ମୁକ୍ତି, ଯୋଗ ଓ ମାନବବାଦର ଭୂମି। ଏ ଦେଶ ଜଡ଼ରେ ଜୀବନର ସତ୍ତା ଖୋଜେ ଓ ମାନବିକତାର ବିଜୟ ବାନା ଉଡ଼ାଇ ନୂଆ ଚେତନାର ଆବାହନ କରେ। କୋଟି ସ୍ୱର୍ଗର ସୁଷମାକୁ ସିଏ ଧରି ରଖିପାରେ। ସେ ପୁଣି କାରଗିଲରେ ମୃତ୍ୟୁବରଣ କରିଥିବା ସୈନିକର ପ୍ରାଣଦାନକୁ ସ୍ମରଣ କରନ୍ତି ଓ ତାକୁ ବୀରର ମର୍ଯ୍ୟାଦା ଦିଅନ୍ତି। ପୁଣି ଧର୍ମ ଜଗତରେ ସଂକୀର୍ଣ୍ଣତାକୁ ସେ ଗ୍ରହଣ କରନ୍ତି ନାହିଁ କାରଣ

ଅନେକ ନଦୀରେ ଆମେ ଏକ ନୀଳସାଗର
ଅନେକ ତାରରେ ଆମେ ଏକ ବୀଣା ଝଂକାର

(ବନମାଳା)

ସେ ବିଶ୍ୱମାନବର ପରିକଳ୍ପନା କରନ୍ତି ଓ ବଗିଚାର ପ୍ରତ୍ୟେକ ଫୁଲର ସ୍ୱତନ୍ତ୍ର ବାସ୍ନା ଅଛି ବୋଲି ସୂଚନା ଦେଇ ଏ ଧରାକୁ ମଧୁମୟ କରିବା ପାଇଁ ସମସ୍ତଙ୍କର ସହଯୋଗ କାମନା କରନ୍ତି। ଭାରତରେ ତାଙ୍କର ଚିନ୍ତା ସୀମିତ ନୁହେଁ ବରଂ ସମଗ୍ର ବିଶ୍ୱକୁ ବିଚାରକୁ ନେଇ ସେ ଧରଣୀର ସ୍ୱର୍ଗର ପରିକଳ୍ପନା କରନ୍ତି। ଭାରତକୁ ସେ ଧର୍ମ, ଭକ୍ତି, ମୁକ୍ତି ଓ ମାନବବାଦର ଜନନୀ ବୋଲି ଗ୍ରହଣ କରି ତାହାକୁ ନିଜ ସାଧନାର ଭୂମି ଭାବରେ ବର୍ଣ୍ଣନା କରିଛନ୍ତି।

କବି ଶ୍ରୀଯୁକ୍ତ ରଥ ଅନେକ ବ୍ୟଙ୍ଗ କବିତା ରଚନା କରିଛନ୍ତି। ଯଦି ସଂସାରର ସବୁ ଘଟଣା ପୂର୍ବ ନିର୍ଦ୍ଧାରିତ ଧାରାରେ ଚାଲିପାରନ୍ତା ତେବେ ଆଉ ଦୁଃଖ କାହିଁକି ଥାଆନ୍ତା ? ବର୍ଷାଦିନର ବଢ଼ନ୍ତା ନଦୀ କୂଳ ଲଘନ କରନ୍ତା ନାହିଁ। ବୟସ୍କ ପିତାମାତାଙ୍କୁ ଗୁଣବାନ ସନ୍ତାନଙ୍କର ସମ୍ମାନ ମିଳନ୍ତା ଆଉ ଆନ୍ତରିକତାର ଦୀପ ଶିଖାରେ ସବୁ ଅଂଧାର ପୋଡ଼ି ପାଉଁଶ ହୋଇଯାଆନ୍ତା। ପବନ ଯୁଗ, କିଛି ଅର୍ଥନାହିଁ, ପାଠରେ ପାଠ, ଜୀବନକଥା ପ୍ରଭୃତି ଅନେକ ଆଧୁନିକ କବିତା ମଧ ଏହି ଶ୍ରେଣୀର କବିତା। ତାଙ୍କର 'ପ୍ରତିଧ୍ୱନି' କବିତା ପୁସ୍ତକରେ ସଂକଳିତ ମଧୁଜ୍ୟୋସ୍ନା, ମରମର ଭାଷା, ଅଭିମାନ, ଚୋରାବାଲି, ମାଟିଘଟ, ନୀଳସରସୀ, ସୁରସୁଧା, ରଜନୀଗନ୍ଧା ଓ ନୀଳକଇଁ ଭଳି କ୍ଷୁଦ୍ର କବିତା ଭିତରେ କବି ଜୀବନରେ ଆଲୋକର ଦିଗର ସନ୍ଧାନ କରିଛନ୍ତି। 'ମାଟିଘଟ' କବିତାରେ – ମାଟିରେ ମଧୁ ଅଛି / ମାଟିର ବଂଧୁ ଅଛି / ମାଟିକୁ ଦିଅନା ଦୋଷ, କହନା ତୁ ଛି ଛି। (ପ୍ରତିଧ୍ୱନି)

ଏହିଭଳି ଏକାଧିକ କବିତାରେ ଜୀବନ ଓ ଜଗତ ପ୍ରତି ଆଦର ଆଉ ଆନ୍ତରିକତାର ଉପଲବ୍ଧି ରହିଛି। କେହି ଅନୁଭବ୍ୟ 'ତୁମେ'ଙ୍କୁ ଅପେକ୍ଷା କରନ୍ତି ଯିଏ ମଳୟ ପବନ ହୋଇ କବିଙ୍କୁ ଛୁଇଁଦେବେ। ତାଙ୍କର ସ୍ପର୍ଶରେ କବିଙ୍କ ତନୁ ଶିହରିତ ହେବ। ସେ ଆକାଶରେ ଚନ୍ଦ୍ରମା, ସାଗରରେ ନୀଳିମା ଆଉ ଆଲୋକର ଜ୍ୟୋତିଶିଖା। ସେ ହୃଦୟରେ କ୍ଷମା ଆଉ ପ୍ରୀତିର ସୁଷମା, ଆଉ ପୁଣି କେବେ କବି ନିଃସଂଗ ଯିଏ ଗାଆନ୍ତି : 'ବାଟତ ଅନେକ ଏକା ମୁଁ ପଥିକ / ସାଥି ମୋର ବଣଫୁଲ ମହୁଆ ମହକ' (ପ୍ରତିଧ୍ୱନି)

ତାଙ୍କ କବିତାରେ ଦୂର ଆକାଶ ଓ ନୀଳ ସରସୀ ଏକାକାର ହୋଇଯାଆନ୍ତି। ବିରହ ବଇଁଶୀ ଆନନ୍ଦର ସଙ୍ଗୀତରେ ରୂପାନ୍ତରିତ ହୁଏ।

ଧାରାରେ ଚାଲିବାର ଆଉ ଏକ ସ୍ୱର 'ସ୍ମୃତିରେଖା'ରେ ଶୁଣାଯାଏ। ମଠ, ମନ୍ଦିର, ଗୀର୍ଜା, ମସଜିଦ୍, ଗୀତା, ଭାଗବତ, କୋରାନ୍, ବାଇବେଲ, ରୋଜା, ରାଇ ଦାମୋଦର ଓଷା ଆଉ ଖ୍ରୀଷ୍ଟମାସ ପର୍ବ ଭିତରେ ସେ ବିଭିନ୍ନ ଧର୍ମ ଓ ତଦନୁସାରୀ ପର୍ବର ସୂଚନା ଦେଇଛନ୍ତି। ମାତ୍ର ସବୁ ଭିତରେ ସେ ସନ୍ତୁଷ୍ଟ ନୁହଁନ୍ତି। କାରଣ : "କାମନା ବିନାଶେ ଦୁଃଖ ବିନାଶ ଶୁଣିଛି ମୁଁ ମନ ଦେଇ / କେବଳୀ ଭାବର ନିରାଜନା କରି ଶାନ୍ତି ପାଇବି ମୁହିଁ। (ପ୍ରତିଧ୍ୱନି / ସ୍ମୃତିରେଖା )

କବି କେତେକ ନିର୍ଦ୍ଦିଷ୍ଟ ଶବ୍ଦ ପ୍ରତି ବିଶେଷ ଅନୁରାଗ ରଖୁଥିବା ଜଣାଯାଏ। ଯେମିତି ସଜ ସୁମନ, ସଜ ସକାଳ, ରାଜରାଜେଶ୍ୱର, ଭରସାର ଧ୍ରୁବତାରା, ବିଶ୍ୱଚେତନାର ଅଧିଶ୍ୱର, ଚେତନାର ନବଉଷା, ବାସଚନ୍ଦନ, ସଜଫୁଟା ଫୁଲ ପ୍ରଭୃତି। ଅନେକ କବିତାରେ ସେ ଶୁଭ ଓ ମଙ୍ଗଳ ବାର୍ତ୍ତା ଶୁଣାଇବା ସଯତ୍ନରେ ପାରଂପରିକ ଉପମାର ହିଁ ପ୍ରୟୋଗ  କରିଛନ୍ତି। ହୁଏତ ଅନ୍ୟ ଭାବରେ ସେ ନିଜର ସ୍ୱତନ୍ତ୍ର ଉପମା ସୃଷ୍ଟି କରିପାରିଥାଆନ୍ତେ, ଯେଉଁଥି ପାଇଁ ତାଙ୍କର ଯଥେଷ୍ଟ କ୍ଷମତା ରହିଛି। ମାତ୍ର ସେ ସେହି ପରମ୍ପରାର ଦୃଢ଼ ଭିତ୍ତି ଉପରେ ଗଢ଼ିଛନ୍ତି ତାଙ୍କ ଗୀତି କବିତାର କୁଟୀର।

ଓଡ଼ିଆ ସାହିତ୍ୟର ଶିକ୍ଷକ ଭାବାରେ କବିଙ୍କର ପରଂପରା ଅନୁରାଗ ଏହି ଗୀତିକବିତାର ଛତ୍ରେ ଛତ୍ରେ ଫୁଟି ଉଠିଛି। ଯଥା :-

ରବି ଅସ୍ତେ କ୍ଷତ ମୃଗ ମନୋଭାବ<br>
କହିବି କାହାକୁ କିଏ ବା ଶୁଣିବ ? (ଧୂପବାସ)

ସହିତ "ରବିକର ରହୁଁଅଛି କ୍ଷତ ମୃଗୀ ପରି<br>
ଦିନ ସରୁ ନାହିଁ ଲବ ହେଲା ଯୁଗସରି। କଳା ମାଣିକରେ"ର ଭାବ ସାମ୍ୟ ପରିଦୃଷ୍ଟ ହୁଏ।

'ଭାଗବତର' –

'ମୂକଂ କରୋତି ବାଚଳଂ ପଙ୍ଗୁଂ ଲଂଘୟତେ ଗିରିମ୍।<br>
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦ ମାଧବମ୍' ପଦର ପ୍ରତିଧ୍ୱନି ଦେଖନ୍ତୁ ଶ୍ରୀଯୁକ୍ତ ରଥଙ୍କ କବିତାରେ

ଦୂବହୁଏ ଦାରୁ ପରା ତୁମରି ମହିମା ବଳେ<br>
ମୂକ ହୁଅଇ ବାଚଳ ପଙ୍ଗୁ ଲଂଘେ ଗିରି ହେଳେ<br>
(ଧୂପବାସ)

ପୁଣି ଗଙ୍ଗାଧର ମେହେରଙ୍କ "ବିଶ୍ୱ ଜୀବନ ହେ ତୁମକୁ କରୁଣା ସିନ୍ଧୁ" କବିତାରେ<br>
'କି ଦେଇ ପୂଜିବି ଯାହା ମୁଁ ଦେଖୁଛି ସବୁ ତୁମରି ପ୍ରସାଦ<br>
ଯାହା ପରସାଦ ତାକୁ ଅରପିଲେ ହେବ ସିନା ଅପରାଧ'ର ଭାବନା ଏହିଭଳି ଗୀତିକବି ଶରତ ଚନ୍ଦ୍ର ରଥଙ୍କୁ ପ୍ରଭାବିତ କରିଛି –

ଯାହା ମୋର ଅଛି ସବୁ ତୁମ ଦାନ<br>
ତୁମେ ମହାଦାନୀ ହେ ମହାମହିମ" (ଧୂପବାସ)

ଏଥି ସହିତ ବୈକୁଣ୍ଠ ନାଥଙ୍କ ଯାତ୍ରା ସଂଗୀତ'ର "ସେ ମହାଦାନୀ ହସେ ପରାଣେ ଦେଖୁନାହୁଁ"ର ସାମ୍ୟ ମଧ୍ୟ ପରିଦୃଷ୍ଟ ହୁଏ । ଦିନେ ବିଶ୍ୱବିଜୟୀ ବିବେକାନନ୍ଦ କହିଥିଲେ ଭାରତ ମୋର ଶୈଶବର କ୍ରୀଡ଼ାଙ୍ଗନ, ଯୌବନର ଉପବନ ଓ ବାର୍ଦ୍ଧକ୍ୟର ବାରଣାସୀ । କବି ମଧ୍ୟ ଏହି ସ୍ୱରରେ ଗାଇଛନ୍ତି -

ଏଇ ମାଟି ମୋର ସରଗରୁ ବଡ଼ / ଶିଶୁ ଶଯ୍ୟା ଏଇ ମୋର ଶୈଶବର
ଯଉବନେ ମୋର ଏଇ ଫୁଲବନ / ସରି ନୁହେଁ ତାରେ ନନ୍ଦନ କାନନ
ବାରଣସୀ ଏଇ ମୋର ବାର୍ଦ୍ଧକ୍ୟରେ / ଆଲୋକର ଶିଖା ମୁକତି ପଥରେ

(ମାଟି ମହକ)

ଏହିଭଳି ଅନେକ ପୂର୍ବସୁରୀଙ୍କର ନିତ୍ୟନୂତନ ସଙ୍ଗୀତର ପ୍ରଭାବ କବିଙ୍କୁ ପରମ୍ପରାର ବାହକ ତଥା ନବଚେତନାର ଆବାହକ ସଜାଇଛି ।

କବି ଶରତ ଚନ୍ଦ୍ର ରଥ କବିତା ରଚନାରେ ସିଦ୍ଧହସ୍ତ । ସେ ଗୀତିକବିତାର ଭାଷା ପ୍ରତି ସେତିକି ସଚେତନ ଭାବପ୍ରତି ତାଠାରୁ ଅଧିକ ଯତ୍ନଶୀଳ । ସବୁଠାରେ ବ୍ୟକ୍ତିଗତ ଦୁଃଖର କିଛି ଛାଇ ହୁଏତ ରହିଛି ମାତ୍ର ତାକୁ ପ୍ରତିହତ କରି ସେହି ଦିବ୍ୟ ଚେତନାଟି ପ୍ରକାଶିତ ହେଇଛି, କେଉଁଠି ସମଗ୍ର ବିଶ୍ୱ କରୁଣାର ବାରିରେ ସିକ୍ତ । ଯେଉଁଠି ବ୍ୟକ୍ତିର ଜୀବନ ସେହି ପରମ ପିତାର ଆଶୀର୍ବାଦ ଭାବେ ପରିଗଣିତ । ଦୁଃଖ ଅବସାଦରୁ ଉତ୍ତରିତ ଏକ ସମାହିତ ଚେତନା -

"ଭିତରେ ମିଳିଲେ ବାହାରେ ମିଳିବ
ବାହାରେ ଭିତରେ ଏକାକାର ହେବ
ଗଛର ଫାଙ୍କରେ ସକାଳ ସୂରୁଯ ସାଜିବେ ରାଜକୁମାର"

ତାଙ୍କର ନିଷ୍ଠା ଅତୁଟ ରହୁ । ସେ ସାହିତ୍ୟ ଓ ସଙ୍ଗୀତର ମଧ୍ୟବର୍ତ୍ତୀ ଶୂନ୍ୟସ୍ଥାନ (ଯଦି କିଛି ଥାଏ) ପୂରଣ କରି ଉଭୟ କ୍ଷେତ୍ରରେ ନୂତନ ସଂଭାବନା ସୃଷ୍ଟି କରନ୍ତୁ ।

ପ୍ରାକ୍ତନ ପ୍ରଫେସର,
ଓଡ଼ିଆ ବିଭାଗ, ବାଣୀବିହାର

# ମିତ୍ରଦୃଷ୍ଟି

## ଡ. ପ୍ରସନ୍ନ କୁମାର ମହାଂତି

ଜଣେ ସଫଳ ଗୀତିକବି ଭାବେ ସୁପରିଚିତ ପ୍ରଫେସର ଡଃ ଶରତ ଚନ୍ଦ୍ର ରଥ ସାହିତ୍ୟ ସମାଲୋଚନା, ପ୍ରବନ୍ଧ, ଗବେଷଣା, କବିତା, ଫିଚର, ସମ୍ପାଦନା, ସଙ୍କଳନ ଭଳି ସାରସ୍ୱତ କର୍ମରେ ଗତ ଛରି ଦଶନ୍ଧିରୁ ଉର୍ଦ୍ଧ୍ୱକାଳ ଧରି ଉତ୍ସର୍ଗୀକୃତ ଭାବେ ସକ୍ରୀୟ ରହି ଆସିଛନ୍ତି । ଶଂସିତ ପୁସ୍ତକଟି ତାଙ୍କର ଏକ କବିତା ସଙ୍କଳନ, ଯାହା ୧୯୯୯ ମସିହାରେ ପ୍ରକାଶିତ ହୋଇଥିଲା ।

ପୁସ୍ତକଟିରେ ସମୁଦାୟ ୨୪ଟି ସାର୍ଥକ ଓ ଉଚ୍ଚମାନର କବିତା ସଙ୍କଳିତ ହୋଇଛି । ବହିର ଶୀର୍ଷକ 'କାଲି ସକାଳର ସୂର୍ଯ୍ୟ'ରୁ ସଙ୍କଳିତ କବିତା ଗୁଡ଼ିକର ସାମୂହିକ ଭାବଭୂମି, ବକ୍ତବ୍ୟ ଓ ବାର୍ତ୍ତାର କଳନା କରିବା କଷ୍ଟସାଧ୍ୟ ନୁହେଁ । ଏକ ସୂର୍ଯ୍ୟସ୍ନାତ, ଉଜ୍ଜ୍ୱଳ, ମୈତ୍ରୀମୟ କମନୀୟ ଭବିଷ୍ୟତର ପ୍ରତ୍ୟୟ ଓ ପ୍ରତିଶ୍ରୁତି ହିଁ କବିତା ଗୁଡ଼ିକର କେନ୍ଦ୍ରୀୟ ଭାବବସ୍ତୁ ଓ ଅନ୍ତଃସ୍ୱର ।

କବିତା ଗୁଡ଼ିକର ଅନ୍ୟତମ ବିଶେଷତ୍ୱ ହେଉଛି ଏଗୁଡ଼ିକର ଗୀତିଧର୍ମୀ ଆଙ୍ଗିକ ଓ ପ୍ରକାଶ ଭଙ୍ଗୀ ତଥା ତଦନୁସୃତ ଶବ୍ଦ ସଂଯୋଜନା । ଚଳନ୍ତି ସମୟରେ ରଚିତ ହେଉଥିବା ଅଧିକାଂଶ କବିତାର ପ୍ରକାଶ ଭଙ୍ଗୀରେ ଗଦ୍ୟଧର୍ମିତାର ଆତିଶଯ୍ୟ ସହଜଲଭ୍ୟ । କବିମାନେ ଆଜିକାଲି ସାଧାରଣତଃ ପ୍ରତୀକ, ଚିତ୍ରକଳ୍ପ, ସଂଳାପଧର୍ମିତା ଆଧାରିତ ଗଦ୍ୟାତ୍ମକ ରୀତିରେ କବିତାର ପରିବେଷଣ କରିବା ଦିଗରେ ଅଧିକ ମନୋନିବେଶ କରି ଗୀତିଧର୍ମୀ ପ୍ରକାଶଭଙ୍ଗୀକୁ ଏକ ପ୍ରକାର ନିର୍ବାସିତ କରି ବସିଥିବା ଲକ୍ଷ୍ୟ କରିହେବ । ମାତ୍ର ଡକ୍ଟର ରଥ ନିଜେ ମୁଖ୍ୟତଃ ଜଣେ ଗୀତିକବି ହୋଇଥିବାରୁ ତାଙ୍କର କବିତା ଗୁଡ଼ିକରେ ସ୍ୱାଭାବିକ ଭାବେ ଗୀତିଧର୍ମୀ ଉପସ୍ଥାପନା ପ୍ରାଥମିକତା ପାଇଛି । ବସ୍ତୁତଃ, ଭାବ ଓ ଆବେଗକୁ ଯଦି କବିତାର ଆତ୍ମାଭାବେ ସ୍ୱୀକାର କରାଯାଏ, ତାହେଲେ ଗୀତିଧର୍ମୀ ପ୍ରକାଶ ଭଙ୍ଗୀ ଭାବାବେଗତାର ତାରଲ୍ୟକୁ ସୁରକ୍ଷିତ ରଖିବା ସଂଗେସଂଗେ ତା'ର ପ୍ରବାହ ଓ ସଂଚରଣକୁ ନିଶ୍ଚୟ ପୁଷ୍କଳ ଓ ଶକ୍ତିଶାଳୀ କରେ । ଶରତ ଚନ୍ଦ୍ର ମୁକ୍ତଛନ୍ଦର ହାତଧରି ଗୀତିଧର୍ମୀ ପ୍ରକାଶ ଭଙ୍ଗୀରେ ବେଶ୍ ପରିପକ୍ୱତା ପ୍ରଦର୍ଶନ କରିଛନ୍ତି ।

କେବଳ ଶବ୍ଦ ପ୍ରୟୋଗ ଦ୍ୱାରା କବିତାକୁ ସଫଳ ଭାବେ ଗୀତିଧର୍ମୀ କରିବା ସମ୍ଭବ ନୁହେଁ । ତା' ସହିତ କବିତାର ଅନ୍ତର୍ଛନ୍ଦ ଓ ଆବୃତ୍ତିଧର୍ମିତା ମଧ୍ୟ ସୁରକ୍ଷିତ ରହିବା ଆବଶ୍ୟକ । ଡ. ରଥ ଏ କ୍ଷେତ୍ରରେ ଯେ ବେଶ୍ ସାଫଲ୍ୟ ପ୍ରଦର୍ଶନ କରିଛନ୍ତି ଏହା ଦ୍ୱିଧାହୀନ ଭାବେ କୁହାଯାଇପାରେ । ଏହାର ଦୃଷ୍ଟାନ୍ତ ଆଡ଼କୁ ଦୃଷ୍ଟିପାତ କରାଯାଇପାରେ ।

"ଭାବିବାକୁ ବେଳ ନାହିଁ
ବାପାଙ୍କ ଶୁଖିଲା ମୁହଁ
ଭଉଣୀର ପଢ଼ା ଶେଷ
ବଡ଼ବୋଉ ପାଳିଜର
ବୋଉର ସେ ରାତିଉଠା କାଶ ।"

(ସୀମାନ୍ତ ପ୍ରହରୀ)

ଗୀତିଧର୍ମିତା ଏକ ପରମ୍ପରାଶ୍ରୟୀ ଆଙ୍ଗିକତା ଓ ଆଧୁନିକତାର ପରିପନ୍ଥୀ ବୋଲି କେହିକେହି ମନେକରନ୍ତି। ମାତ୍ର ପ୍ରଭାବଶାଳୀ ବ୍ୟଞ୍ଜନା, ଶାଣିତ କାବ୍ୟଦୃଷ୍ଟି ଓ ଚିତ୍ରକଳ୍ପର ପ୍ରୟୋଗରେ ଗୀତିଧର୍ମୀ ଆଂଗିକ ଯେ ବେଶ୍ ଭାବପ୍ରବୋଧକ ଓ ଆବେଗସ୍ପର୍ଶୀ ହୋଇପାରେ, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ। ଶରତ ଚନ୍ଦ୍ରଙ୍କ ଅଧିକାଂଶ କବିତାରୁ ଏହାର ବସ୍ତୁନିଷ୍ଠ ଦୃଷ୍ଟାନ୍ତ ସନ୍ଧାନ କରାଯାଇପାରେ।

"ତାରାଫୁଲେ ଭରା ରାତି କୁଞ୍ଜକୁଞ୍ଜ ମସୃଣତା ତୁମେ।
ସାଗରର ଲହରୀରେ ଭଙ୍ଗାଭଙ୍ଗା କେତେ ଚପଳତା
ସାତତାଳ ପଙ୍କ ପୋଖରୀରେ ଫୁଟି ଫୁଟି ଆସୁଥିବା
ତୁମେ ଏକ କଇଁର ପାଖୁଡ଼ା।"

(ଇପ୍‌ସିତ ମୁହୂର୍ତ୍ତ)

"ତଥାପି ମୁଁ ଜାଣେ
ଏ ଶୂନ୍ୟତା ନୁହେଁ ଅନ୍ୟନାମ,
ନୂଆ ଏକ ଜୀବନର ନିରାଜନା ପାଇଁ
ଏହା ଖାଲି ସୀମିତ ବିଶ୍ରାମ।"

(ନୂତନ ବସନ୍ତ)

"ସ୍ଥିରତା ପ୍ରତିଲୋମେ ଯାହା ମିଳେ
ତାହା ନୁହେଁ ଅସ୍ଥିରତା
ସିଏ ଏକ ଭାବସତ୍ତା
ଯାହାର ଚରଣଭୂମି
ଅନ୍ୟ ଏକ ପୃଥକ ଇଲାକା।"

(ଅସ୍ଥିରତା)

ସାମ୍ପ୍ରତିକ କାଳରେ ଲୋକମାନଙ୍କ ମଧ୍ୟରେ ବସ୍ତୁବାଦୀ ମାନସିକତା ଓ ଆତ୍ମକୈନ୍ଦ୍ରିକ ଦର୍ଶନ ବିସ୍ତାର ଲାଭ କରୁଥିବାର ଦୁଃଖଦ ସ୍ଥିତି ସମ୍ବନ୍ଧରେ ଆମେ ସଚେତନ। ଅର୍ଥ ଓ କ୍ଷମତାର ଲୋଭ, ହିଂସାତ୍ମକ ପ୍ରବୃତ୍ତି, ପାଶବିକତା, କପଟ, ଛଳନା, ଅବିଶ୍ୱାସ, ଅନୈତିକତାର ସଂକ୍ରମଣ ସତେଯେପରି ତୀବ୍ରତାରେ କରୋନା ଭୂତାଣୁକୁ ଆହ୍ୱାନ ଦେବାକୁ ପ୍ରସ୍ତୁତ ! କବିତାରେ ସମାଜର ବାସ୍ତବତା ପ୍ରତିଫଳିତ କରିବାକୁ ଓ ସମ୍ମୁଖ ସତ୍ୟକୁ ପ୍ରାଥମିକତା ଦେବାକୁ ଯାଇ ବହୁ କବିଙ୍କ କବିତାରେ ଆମେ ଉପର୍ଯ୍ୟୁକ୍ତ ଚୈତନିକ ସ୍ଖଳନ ଓ ତାହାର ପୀଡ଼ାପ୍ରଦ ପରିଣତିର ଚିତ୍ର ଦେଖିଆସିଛୁ। ମାତ୍ର କବି ଡ. ରଥ କେବଳ ସେସବୁ ବାସ୍ତବତାକୁ ତାଙ୍କ କବିତାରେ ପ୍ରଦର୍ଶିତ ନକରି ସେସବୁ ନକାରାତ୍ମକତାର ଅପସାରଣରେ ଏକ ଉଜ୍ଜ୍ୱଳ ଓ କମନୀୟ ସୂର୍ଯ୍ୟୋଦୟ ସହ ଏକ ସ୍ୱର୍ଗୋପମ ଆସନ୍ତାକାଲିର ଆଗମନୀର ପ୍ରତ୍ୟୟ ତାଙ୍କର ଅଧିକାଂଶ କବିତାରେ ପ୍ରତିଫଳିତ କରିଛନ୍ତି।

ଶ୍ରୀଅରବିନ୍ଦଙ୍କ ଯୋଗ, ଆଧ୍ୟାତ୍ମିକତା ଓ ଦର୍ଶନର ଏକାନ୍ତ ଅନୁରକ୍ତ କବି ଶରତ ଚନ୍ଦ୍ର କହନ୍ତି ମହାପୁରୁଷମାନଙ୍କ ଧରାବତରଣ ଓ ତପସ୍ୟାର ସୁଫଳ ନିଶ୍ଚୟ ଦିନେ ଏ ଧୂଳିମାଟିର ଧରଣୀକୁ ସ୍ୱର୍ଗୋପମ ପରିପ୍ଲୁତ ଓ ଶୁଚିମୟ କରି ତୋଳିବ।

"ସମୁଦ୍ରରେ ଆସିଯିବ ନୂଆ ଚଞ୍ଚଳତା
ମରୁଭୂମି ପାଲଟିବ
ତୁମ ଅଭିଷେକ ପାଇଁ
ଘନ ଶ୍ୟାମଳିମା ଭିଜା ନିଘଞ୍ଚ କାନନ।"
(ଗୀତି ବିମୋହନ)

"ଛୁଇଁବ ସେ ମାଟିଗୋଡ଼ି, ଝରଣା, ସାଗର
ରଙ୍ଗଣି ଫୁଲର ରଙ୍ଗ
ରେଣୁ ରେଣୁ ସରୁବାଲି ଅନେକ ପିଞ୍ଜରା କାଠି
ଟିକ୍ ଟିକ୍ ପାଉଁଶକୁ ମଶାଣି ଭୂଇଁର।"
(ଭବିଷ୍ୟତ)

ଗ୍ରନ୍ଥାବଳୀ ତୁଲ୍ୟ ଏହି ପୃଷ୍ଠାବହୁଳ ସଂକଳନରେ 'କାଲି ସକାଳର ସୂର୍ଯ୍ୟ' କବିତା ପୁସ୍ତକଟି ସ୍ଥାନିତ ହେବାଦ୍ୱାରା ପୁସ୍ତକଟିର ଏକ ପୁନଃ ପ୍ରକାଶନ ବା ନୂତନ ସଂସ୍କରଣ ବସ୍ତୁତଃ ପ୍ରକାଶିତ ହେଲା। ଆଶା କରାଯାଇପାରେ ଯେ ଆଶାବାଦ, ପ୍ରେମ, ପ୍ରତ୍ୟୟ ଓ ସକାରାତ୍ମକ ଆଧ୍ୟାତ୍ମିକ ପୁରୋଦୃଷ୍ଟିରେ ଶୁଚିସ୍ନାତ ଏହି ଗୀତିମୟ ଉଚ୍ଚକୋଟୀର କବିତା ଗୁଡ଼ିକ ପୂର୍ବାପେକ୍ଷା ଅଧିକ ପାଠକଙ୍କ ଦୃଷ୍ଟି ଆକର୍ଷଣ କରିବ ଏବଂ ଏଗୁଡ଼ିକର ଯଥାର୍ଥ ମୂଲ୍ୟାୟନ ତଥା ଅଭ୍ୟର୍ଥନା ମଧ୍ୟ ସମ୍ଭବ ହେବ।

ପ୍ରସନ୍ନ କୁମାର ସ୍ୱାଇଁ

(ପୂର୍ବତନ ନିର୍ଦ୍ଦେଶକ, ଓଡ଼ିଆ ଭାଷା ପ୍ରତିଷ୍ଠାନ
ଏବଂ
ଅବସରପ୍ରାପ୍ତ ଅଧ୍ୟକ୍ଷ, ବି.ଜେ.ବି. କଲେଜ, ଭୁବନେଶ୍ୱର)

# ଧୂପବାସର ପୂର୍ବରାଗ

## ଭଗବାନ ନାୟକ ବର୍ମା

କବିତା ଓ ଗୀତିକା ମଧ୍ୟରେ ଯେଉଁ ମୌଳିକ ପାର୍ଥକ୍ୟଟି ରହିଛି, ତାହାହେଲା ସଙ୍ଗୀତମୟତା। ଏ ଦୁଇଟି ରଚନା ମଧ୍ୟରେ ସର୍ବପ୍ରଧାନ ସାମଞ୍ଜସ୍ୟ ହେଲା ଛନ୍ଦୋବଦ୍ଧତା ଓ କବିତ୍ୱ। ଅର୍ଥାତ୍ ଉଭୟ କ୍ଷେତ୍ରରେ କବିତ୍ୱ ଓ ଛନ୍ଦ ରହିଥିଲେ ମଧ୍ୟ କବିତା କେବଳ ପଠନ ପାଇଁ ଉଦ୍ଦିଷ୍ଟ ହୋଇଥିବା ବେଳେ ଗୀତିକା ଗାୟନ ପାଇଁ ଉଦ୍ଦିଷ୍ଟ ହୋଇଥାଏ। ତେଣୁ ଏହାକୁ ଗୀତ ବୋଲି ମଧ୍ୟ କୁହାଯାଏ। ଯେଉଁ କବିମାନେ ଗୀତିକା ଲେଖିବାକୁ ଆଗ୍ରହ ପ୍ରକାଶ କରିଥାନ୍ତି, ସଙ୍ଗୀତ ଶାସ୍ତ୍ର ସମ୍ପର୍କରେ ସେମାନଙ୍କର କିଛି ମୌଳିକ ଜ୍ଞାନ ରହିଥିବା ଏକାନ୍ତ ଆବଶ୍ୟକ। ମାତ୍ର ଆଜିକାଲିର ଅଧିକାଂଶ ଗୀତିକାର ଏ କଥାଟି ସମ୍ପର୍କରେ ଆଦୌ ସଚେତନ ନଥିବା ପରି ମନେହୁଏ। ସେଥିଯୋଗୁଁ ସଙ୍ଗୀତ କାର୍ଯ୍ୟକ୍ରମ ଗୁଡ଼ିକ ଯଥେଷ୍ଟ ଉପଭୋଗ୍ୟ ହୋଇ ପାରୁନାହିଁ। ବିଶେଷ କରି ଗୀତିକାଂଶଟି ଅତ୍ୟନ୍ତ ଦୁର୍ବଳ ଜଣାପଡୁଛି। ଅବଶ୍ୟ କେତେକ କବି ନିଜର ସ୍ୱଭାବସିଦ୍ଧ କବିତ୍ୱ, ଛନ୍ଦୋମୟତା ଓ ସାଙ୍ଗୀତିକଶବ୍ଦସଂଯୋଜନା ବଳରେ ନିଜ ରଚିତ ଗୀତିକାଗୁଡ଼ିକୁ ବେଶ୍ ପ୍ରଭାବଶାଳୀ କରାଇ ପାରିଥାନ୍ତି। ଶ୍ରଦ୍ଧେୟ ଶରତ ବାବୁ ଏହି ଶ୍ରେଣୀର ଜଣେ ଗୀତିକାର। ଶରତ ବାବୁଙ୍କର ଏହି ଗୀତି କବିତା ସଞ୍ଚୟନଟି କେବଳ ଭଜନ, ଜଣାଣ ବା ଭକ୍ତିମୂଳକ ଗୀତିକାଗୁଡ଼ିକର ଏକ ସଂଗ୍ରହ। ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ଭକ୍ତିମୂଳକ ରଚନା ପ୍ରତି ତାଙ୍କର ବିଶେଷ ଭାବାବେଗ ରହିଛି, ଅର୍ଥାତ୍ ସେ ନିଜେ ଜଣେ ଈଶ୍ୱରଭକ୍ତ। ତେଣୁ ଆଦୌ ଭକ୍ତିଭାବସମ୍ପନ୍ନ ନ ହୋଇ ଭଜନ-ଜଣାଣ ଲେଖୁଥିବା ଗୀତିକାରମାନଙ୍କ ଗୀତିକା ଅପେକ୍ଷା ଶରତ ବାବୁଙ୍କର ଏହି ଗୀତିକାଗୁଡ଼ିକରେ ଯେ ଯଥେଷ୍ଟ ଅଧିକ ସ୍ୱାଭାବିକତା ଓ ସ୍ୱତଃସ୍ଫୁର୍ତ୍ତତା ରହିଛି, ଏହା ଯେ କୌଣସି ପାଠକ ବା ଶ୍ରୋତା ଅନୁଭବ କରି ପାରିବେ।

ଶରତ ବାବୁଙ୍କ ଗୀତିକାଗୁଡ଼ିକରେ ସ୍ଥାନେ ସ୍ଥାନେ ଯେଉଁ ଲଳିତ-ସୁକୁମାର ଭାବବିଳାସ, ସରଳ, ତରଳ ଶବ୍ଦ ସଂଯୋଜନା, ସ୍ୱଚ୍ଛନ୍ଦ-ସ୍ୱାଭାବିକ ଅଭିବ୍ୟକ୍ତି ଓ ସ୍ୱତଃସ୍ଫୁର୍ତ୍ତ ଆଧ୍ୟାତ୍ମିକ ଭାବାବେଗର ପରିପ୍ରକାଶ ହୋଇଛି, ତାହା ଉତ୍ତମ କବିତ୍ୱର ଲକ୍ଷଣ ବୋଲି ସ୍ୱୀକାର କରିବାକୁ ହେବ। ତାଙ୍କର ଭଜନ-ଜଣାଣ ଗୁଡ଼ିକରୁ ଏ ପ୍ରକାର କବିତ୍ୱସମ୍ପନ୍ନ ଗୀତିକାଂଶ ଗୁଡ଼ିକର ଅସଂଖ୍ୟ ଉଦାହରଣ ଦିଆଯାଇ ପାରିବ। କିନ୍ତୁ ଏଠାରେ ତାହାର କିଛି ପ୍ରୟୋଜନୀୟତା ନାହିଁ ବୋଲି ମୁଁ ମନେ କରେ। କାରଣ ତାଙ୍କର ଅଧିକାଂଶ ଜଣାଣ-ଭଜନରୁ ଯେ କୌଣସି ପାଠକ ବା ଶ୍ରୋତା ଏହାର ନିଦର୍ଶନ ପାଇ ପାରିବେ। ଶରତ ବାବୁଙ୍କର ସେହି ଦୁର୍ଲ୍ଲଭ ଓ ସ୍ୱାଭାବିକ କବିତ୍ୱକୁ ମୁଁ ଓଡ଼ିଆ ଗୀତିକବିତା ଜଗତକୁ ସ୍ୱାଗତ ଜଣାଇ, ଏ କ୍ଷେତ୍ରରେ ତାଙ୍କର ଅଧିକତର କୃତିତ୍ୱ କାମନା କରୁଛି।

କିମଧିକମ୍ !
ଭୁବନେଶ୍ୱର
ତା ୧୩-୧-୯୫

# ଜଣେ ପାଠକର ଦୃଷ୍ଟିରେ ବନମାଳା

## ପଠାଣି ପଟ୍ଟନାୟକ

ଆଧୁନିକ ଗୀତିକବିମାନଙ୍କ ମଧ୍ୟରେ ଡଃ ଶରତଚନ୍ଦ୍ରରଥ ଅନ୍ୟତମ ସାର୍ଥକ ସ୍ରଷ୍ଟା ଭାବରେ ସ୍ୱୀକୃତି ଲାଭ କରିଅଛନ୍ତି । ତାଙ୍କ ଲିଖିତ କବିତାଗୁଡ଼ିକ ଏକାଧାରରେ ଗୀତିମୟ ଏବଂ ଗଭୀର ଭାବବ୍ୟଞ୍ଜକ । ସାଙ୍ଗୀତିକତା ସହିତ ମାର୍ମିକ ଭାବନାର ଉତ୍ତରଳ ପ୍ରବାହ ଶ୍ରୀ ରଥଙ୍କ କାବ୍ୟ ସାଧନାର ଚମତ୍କାର ଅଭିବ୍ୟକ୍ତି । ଏଠାରେ ଆଲୋଚ୍ୟ 'ବନମାଳା' ପୁସ୍ତକରେ କବିଙ୍କ ଭକ୍ତିଭାବନା ଏବଂ ଦେଶବନ୍ଦନାର ରୂପାୟଣ ଅତ୍ୟନ୍ତ ପ୍ରାଣସ୍ପର୍ଶୀ । ଅଧିକାଂଶ ଭକ୍ତିଭାବନାବ୍ୟଞ୍ଜକ କବିତାରେ ଲେଖକଙ୍କର ଅତୀନ୍ଦ୍ରିୟ ଭାବନାର ପରିଚୟ ମିଳିଥାଏ ।

ଯୁଗ ଯୁଗ ଧରି ଗୋଟିଏ ପ୍ରଶ୍ନ ସାଧାରଣ ମଣିଷ ମନରେ ଉଙ୍କିମାରିଥାଏ । ପ୍ରକୃତରେ ଈଶ୍ୱର କ'ଣ ଅଛନ୍ତି ? ବାସ୍ତବ କ୍ଷେତ୍ରରେ ତାଙ୍କର ଅନୁଭବ ସମ୍ଭବ କି ? ଆମ ସମୟର ମହାନ୍ ଯୋଗୀ ସ୍ୱାମୀ ଶିବାନନ୍ଦଙ୍କ ଅନୁଭବ ସଂପର୍କରେ ଏଠାରେ ଆଲୋଚନା କରାଯାଇପାରେ । ତାଙ୍କମତରେ "ଈଶ୍ୱର ଅନନ୍ତ ଓ ସର୍ବବ୍ୟାପୀ । ବିଶ୍ୱର ପ୍ରତ୍ୟେକ ଅଣୁ ପରମାଣୁରେ ତାଙ୍କର ଉପସ୍ଥିତି ଅନୁଭବୀ ଉପଲବ୍ଧି କରିପାରିବ । ସେ ଅରୂପ ଅଥଚ ବିସ୍ତାରିତ ହୋଇ ରହିଛନ୍ତି । ଫଳର ମଞ୍ଜି ମଧ୍ୟରେ ତୈଳ ଲୁକ୍କାୟିତ ହୋଇ ରହିଥାଏ । ଦୁଗ୍ଧ ମଧ୍ୟରେ ଲହୁଣି, ଶରୀର ମଧ୍ୟରେ ପ୍ରାଣ, କାଷ୍ଠ ମଧ୍ୟରେ ଅଗ୍ନି, ଜଳ ମଧ୍ୟରେ ଲବଣ, ପୁଷ୍ପ ମଧ୍ୟରେ ସୁବାସ, ମେଘର ଅନ୍ତରାଳରେ ସୂର୍ଯ୍ୟଙ୍କର ଅବସ୍ଥିତି ପରି ଈଶ୍ୱରଙ୍କ ସର୍ବବ୍ୟାପକତା ଅନୁଭବ୍ୟ ।" ସେଥିପାଇଁ ସ୍ୱାମୀଜି 'ଈଶ୍ୱର' ଶୀର୍ଷକ ପ୍ରବନ୍ଧରେ ସ୍ମରଣ କରାଇ ଦେଇଥିଲେ- "Feel the devine presence everywhere-in every form, in every thought, in every feeling in every sentiment, in every movement and in every emotion" ସେହି କଥାଟି ଯର୍ଜୁବେଦରେ ଝଙ୍କୃତ ହୋଇଅଛି- "ଈଶାବାସ୍ୟମିଦଂ ସର୍ବମ୍" । ଏହି ସମଗ୍ର ବ୍ରହ୍ମାଣ୍ଡ ସର୍ବଶକ୍ତିମାନ୍ ଈଶ୍ୱରଙ୍କ ନିୟମରେ ପରିବ୍ୟାପ୍ତ । କବି ଶ୍ରୀ ରଥ ସେହିଭାବନାକୁ ରୂପାୟିତ କରି ଲେଖିଛନ୍ତି-

"ତୁମେ ପରା ସର୍ବ ନାମ
        କେଉଁ ନାମେ ଭଜିବି ।
ତୁମେ ପରା ସର୍ବ ରୂପ
        କେଉଁ ରୂପେ ପୂଜିବି ॥"

ସମୁଦ୍ର, ପୁଷ୍କରିଣୀ, କୂପ ଏବଂ କୁଣ୍ଡ ଜଳରେ ଚନ୍ଦ୍ରକିରଣ ପ୍ରତିଫଳିତ ହେଲେ ହେଁ ସେହି ଏକ ଚନ୍ଦ୍ର ହିଁ ଦୃଶ୍ୟମାନ୍ ହୁଅନ୍ତି । ସେହିପରି ଈଶ୍ୱରଙ୍କୁ ଅଜସ୍ର ନାମରେ ଭକ୍ତମାନେ ବନ୍ଦନା କରୁଥିଲେ ମଧ୍ୟ ସେ ଏକ ଏବଂ ଅଭିନ୍ନ । ଋଗ୍‌ବେଦ କହିଛି- **"ଏକଂ ସଦ୍ ବିପ୍ରାଃ ବହୁଧା ବଦନ୍ତି ।"** ଅର୍ଥାତ୍ ବିଦ୍ୱାନ୍‌ଗଣ ଏକ ସତ୍ ପଦାର୍ଥକୁ ଅନେକ ନାମରେ ଡାକିଥାଆନ୍ତି । ସେହି ପ୍ରଭୁ ଏକ ଏବଂ ଅଦ୍ୱିତୀୟ ।

କବି ଶ୍ରୀ ରଥ ସେହି ପରମପିତାଙ୍କୁ ପ୍ରାକୃତ ସଂସାରର ପ୍ରତ୍ୟେକ ବସ୍ତୁରେ ଅନୁଭବ କରିଛନ୍ତି। ତେଣୁ ସେ ଗାଇଅଛନ୍ତି- "ମଧୁର ମଳୟ ସୁଲଳିତ ସୁର କହୁଥିବ ତୁମ କଥା।" ଅଥବା "ଗଗନେ ପବନେ ଅବିରତ ଶୁଭେ ତୁମ ଯଶ ଗୀତି କଥା"।

ଈଶ୍ୱରଙ୍କ ଭାବନାରେ ବିଗଳିତ କବିହୃଦୟ ବେଳେବେଳେ ଅତୀନ୍ଦ୍ରିୟ ଚେତନାରେ ବିମୋହିତ ହୋଇଯାଇଛି। ସେହି ଅଦୃଶ୍ୟ ଓ ଅତୀନ୍ଦ୍ରିୟ ଭାବଗ୍ରାହୀଙ୍କୁ ଲେଖକ ସାଥୀ କରିବାକୁ ବ୍ୟାକୁଳ ହୋଇଛନ୍ତି। ନିଜର ଯାତ୍ରା ପଥରେ ସେହି ପରମପିତା ହେଉଛନ୍ତି ଏକମାତ୍ର ସହାୟକ। ତାଙ୍କର ସଖ୍ୟଲାଭର ସୁଯୋଗ ମିଳିପାରିଲେ ଆଉ ଭୟ କାହାକୁ ?

କବି ଲେଖନୀରେ ସେଥିପାଇଁ ରୂପାୟିତ ହୋଇଅଛି-

"ଦୂର ଦିଗହଜା ମରୁ ବାଲୁକାରେ  
ନାଗଫେଣୀ କଣ୍ଟା କେତେ  
ମୋ ମନ କହୁଛି ଆଉ କିଏ ଅଛି  
ଚାଲିବାକୁ ମୋର ସାଥେ।  
ଦୂରେ ଶୁଭୁଅଛି ବିହଙ୍ଗ କାକଳି  
ବହୁଦୂର ମୋର ଯାତ୍ରା।

ଏହିପରି ବିଭୁଚିନ୍ତାରେ ତଲ୍ଲୀନ କବିଗୁରୁ ରବୀନ୍ଦ୍ରନାଥଙ୍କର ଏକ କାବ୍ୟିକ ଅନୁଭୂତି ଏଠାରେ ଉଲ୍ଲେଖନୀୟ।

"ତୁମି ନବ ନବ ରୂପେ ଏସୋ ପ୍ରାଣେ  
ଏସୋ ଗନ୍ଧେ ବରନେ, ଏସୋ ଗାନେ  
ଏସୋ ଅଙ୍ଗେ ପୁଲକମୟ ପରଶେ,  
ଏସୋ ଚିତ୍ତେ ଅମୃତମୟ ହରଷେ।  
ଏସୋ ମୁଗ୍ଧ ମୁଦ୍ରିତ ଦୁନୟନେ।  
ତୁମି ନବ ନବ ରୂପେ ଏସୋ ପ୍ରାଣେ ॥"

ସେହି ପରମ ଈଶ୍ୱର ହେଉଛନ୍ତି ଆନନ୍ଦ ଓ ଆଲୋକର ଏକୀଭୂତ ପ୍ରକାଶ। ସେ ହେଉଛନ୍ତି ଆନନ୍ଦର ମୁଗ୍ଧମୂର୍ଚ୍ଛନା। ତାଙ୍କୁ ସ୍ମରଣ କରି କୁହାଯାଇଛି- "ମଧୁବାତା ଋତାୟତେ ମଧୁକ୍ଷରନ୍ତି ସିନ୍ଧବଃ।" ସେ ହେଉଛନ୍ତି କବି କଳ୍ପନାରେ "ଜୀବନେ ଜୀବନେ ପ୍ରୀତି ପ୍ରବଣତା ସୁଧାଝରା ଶୁଭ ଚେତନା" ଅଥବା

"ତୁମେ, ବିଶ୍ୱନୟନ କାରା।  
ପ୍ରୀତି ପୁଲକିତ ଲଳିତ ସଙ୍ଗୀତ  
ଆଳାପର ମଧୁ ଧାରା।"

ଆଖିପୂରାଇ ଚାହିଁଲେ ଈଶ୍ୱରଙ୍କୁ ସର୍ବତ୍ର ଦର୍ଶନ କରାଯାଇ ପାରିବ। ଅନ୍ତରଙ୍ଗ ମନ ବିଭୁଚିନ୍ତାରେ ନିବିଷ୍ଟ ହୋଇଗଲେ ସେହି ପ୍ରଭୁ ଧରା ଦିଅନ୍ତି ଭକ୍ତର ଅତି ନିକଟରେ। ଆକାଶର ନୀଳିମାରେ, ବିଦ୍ୟୁତର ଝଲକରେ, ନିର୍ଝରିଣୀର କଳତାନରେ ପକ୍ଷୀର କଳରବରେ ଜଗଦୀଶ୍ୱରଙ୍କର ମହିମା ଦେଦୀପ୍ୟମାନ।

ଭକ୍ତିଭାବନାରେ ବିହ୍ୱଳିତ କବି ସର୍ବାନ୍ତଃକରଣରେ ଆତ୍ମସମର୍ପଣ କରିବାକୁ ଇଚ୍ଛାକରେ ସେହି ପ୍ରଭୁଙ୍କ ଚରଣକମଳରେ। ତାଙ୍କର ନାମ ଜପ କରି କବି ନିଜକୁ ଧନ୍ୟ ମନେ କରିଥାଏ। ସେଇ ନାମ ଜପରେ ଜୀବନ ସାର୍ଥକ ହୁଏ ବୋଲି କବି ବିଚାର କରେ।

କବିଙ୍କ ଭାଷାରେ-

"ଜନମେ ଜନମେ ତୁମ ପାଦ ତଳେ
ବନ୍ଧା ଥାଉ ମୋର ମନ
ମୋ ରସନା ଗାଉ ଦିବସ ରଜନୀ
ତୁମରି ମହିମା ଗାନ।"

x x x

"ମନ ପଡ଼ିଥାଉ ବନ୍ଧା ତୁମ ପାଦେ
ଏ ସାରା ଜନମ ପାଇଁ
ସଫଳ ହେଉ ଏ ଜୀବନ ମୋହର
ତୁମ ଯଶଗୀତ ଗାଇ ॥"

ମାୟାରେ ମୋହିତ ଦୁର୍ବଳ ମନୁଷ୍ୟ ସର୍ବଦା ନାନା ଆସକ୍ତିର ଅଧୀନ ହୋଇ ଅହଂଭାବନାରେ ବିଭ୍ରାନ୍ତ ହେଉଥାଏ। ନିଜର ବଡ଼େଇ କରି ସେ ଧରାକୁ ସରା ଜ୍ଞାନ କରିବାକୁ କୁଣ୍ଠିତ ହୁଏନାହିଁ। ସତେ ଯେପରି ସବୁ କର୍ମକୁଶଳତାର ସେ ହେଉଛି ନିୟାମକ। ମାତ୍ର ପ୍ରଭୁଙ୍କର ଇଚ୍ଛା ବ୍ୟତିରେକେ ସାମାନ୍ୟ ଦୂବଘାସ ମଧ୍ୟ ହଲିବା ସମ୍ଭବ ହୁଏନାହିଁ। ସଂସାରରେ ଯାହା ସବୁ ଆପଣାର ହାତଯଶ ବୋଲି ମନୁଷ୍ୟ ଭାବୁଥାଏ, ତାହା ହେଉଛି ଈଶ୍ୱରଙ୍କର। ଯାହା ଦାନ କରିବାପାଇଁ ଅଗ୍ରସର ହେଉଥାଏ, ତାହା ଯେ ଈଶ୍ୱରଙ୍କର, ସେହି କଥା ସେ ହୃଦୟଙ୍ଗମ କରି ନଥାଏ। କବି ଶ୍ରୀ ରଥ ଅତି ବିହ୍ୱଳିତ ଚିତ୍ତରେ ସେଥିପାଇଁ ଲେଖିଛନ୍ତି-

"ମୋର ବୋଲି ଯାହା ଅଛି ସବୁ ତୁମ ଦାନ ହେ।
ତୁମେ ବନ୍ଧୁ, ତୁମେ ସଖା, ଗୁରୁ ଗରୀୟାନ ହେ ॥"

'ବନମାଳା'ର ଆଉଏକ ବିଭାଗ ଜାତୀୟତାବ୍ୟଞ୍ଜକ ଗୀତିକବିତା। ପ୍ରତ୍ୟେକ କବିତାରେ ଉଦାର ଜାତୀୟତାବୋଧ ଏବଂ ଜାତୀୟସଂହତିର ଅପୂର୍ବ ସମନ୍ୱୟ ଦେଖିବାକୁ ମିଳିଥାଏ। ଆଜିକାଲିର ଅବକ୍ଷୟୀ ସମାଜରେ ବିଚ୍ଛିନ୍ନତାବାଦ, ବିଜାତୀୟ ମନୋଭାବ ଏବଂ ପ୍ରତିକ୍ରିୟାଶୀଳ ଚିନ୍ତାଧାରା ସାଧାରଣ ଜୀବନକୁ ଅତ୍ୟନ୍ତ ଉଦ୍‌ଭ୍ରାନ୍ତ ଓ ବିଚଳିତ କରିବାରେ ଲାଗିଛି। ଧର୍ମ, ଜାତି, ଗୋଷ୍ଠୀ ଓ ଭାଷାଗତ ସଂକୀର୍ଣ୍ଣଭାବନାରେ ସ୍ୱାର୍ଥାନ୍ଧମାନେ ଚତୁର୍ଦ୍ଦିଗରେ ବିଭେଦର ମଞ୍ଜି ବୁଣିବାରେ ତତ୍‌ପର। ସାମୟିକ ହୀନ ସ୍ୱାର୍ଥ ହାସଲ ପାଇଁ ଦେଶ ଓ ଜାତିକୁ ରସାତଳକୁ ନିକ୍ଷେପ କରିଦେବାକୁ ସେମାନେ ଆଦୌ କୁଣ୍ଠିତ ହେଉନାହାନ୍ତି। କବି ଶ୍ରୀରଥ ତାଙ୍କ ଲିଖିତ ଦେଶାତ୍ମବୋଧକ ଗୀତଗୁଡ଼ିକରେ ଏହି ବିକୃତଭାବନା ପ୍ରତି ତୀବ୍ର କଟାକ୍ଷ କରିଛନ୍ତି। ଏହି ସଂସାରରେ ଯେତେ ଧର୍ମଗ୍ରନ୍ଥ ପ୍ରଚାରିତ ହେଉଛି, ସେଥିରେ ଗୋଟିଏ ଧ୍ୱନି- 'ମାନବବାଦ'। ସମସ୍ତେ ସେହି ଏକ ଈଶ୍ୱରଙ୍କର ସନ୍ତାନ। ସେହି ହିସାବରେ ସବୁ ମନୁଷ୍ୟ ପରସ୍ପର ଭାଇ ଭାଇ।

ସେଥିପାଇଁ କବି କଣ୍ଠରେ ଝଙ୍କୃତ ହୋଇଛି ସୌଭ୍ରାତ୍ର ପ୍ରେମାନୁଭୂତିର ଅଭିବ୍ୟକ୍ତି । ଗଭୀର ଆଶାବାଦରେ ବିମୋହିତ କବି ଲେଖିଛନ୍ତି-

"ବନ୍ଦନା ଗାଉ ଆମେ ମାନବ ଜାତିର
ମମତାର ବାସେ ଭରା ଏ ଆମ ଅନ୍ତର ।
ନୂଆ ସକାଳର ଅଭିଷେକ ପାଇଁ
ଆମେ ତ ତୋରଣ-ଦ୍ୱାର ।"

ଧର୍ମନାମରେ ଧର୍ମଧ୍ୱଜାଧାରୀମାନେ ପୃଥିବୀରେ ଯୁଦ୍ଧ କରି ମାନବ ସଂହାର କରିଆସୁଛନ୍ତି । ଅଂସଖ୍ୟ ମନ୍ଦିର, ମସ୍‌ଜିଦ୍, ବୌଦ୍ଧସ୍ତୂପ ଓ ପ୍ରାର୍ଥନାମନ୍ଦିର ଭୂଲୁଣ୍ଠିତ ହୋଇଛି । ଅସୁମାରି ଜନପଦ ଶ୍ମଶାନରେ ପରିଣତ ହୋଇଯାଇଛି ଏହି ନରରାକ୍ଷସମାନଙ୍କ ଦ୍ୱାରା । ସତେ କଣ ପ୍ରୀତିର ଓ ମମତାର ଫଲ୍‌ଗୁ ପ୍ରବାହିତ ହେବ ଏହି ଧରାପୃଷ୍ଠରେ ? ସହାନୁଭୂତି, ଦରଦ ଓ ସହାବସ୍ଥାନର ମନ୍ତ୍ରରେ ମାନବ ସମାଜ ଦୀକ୍ଷିତ ହେବ ? କବି ଶ୍ରୀରଥ ଅତ୍ୟନ୍ତ ମାର୍ମିକ ଭାବରେ ସେହି ଆଗାମୀ ଆଲୋକିତ ସକାଳକୁ ଅଭ୍ୟର୍ଥନା କରିବା ପାଇଁ ବ୍ୟାକୁଳ ହୋଇ ଉଠିଛନ୍ତି-

**"ମରୁଭୂମି ବାଲି ବୁକେ ଫୁଟାଇବୁ**
**କେରି କେରି ସୁନାଫୁଲ**
**ଆମେ ଗାଇଯିବୁ ମମତାର ଗୀତି**
**ତୋଳି ସୁମଧୁର ସୁର ।**
**ଭାଷା ହେଉ ପଛେ ଅନେକ ଆମର**
**ଏକ ଭାବ ଏକ ଲୟ ।**
**ଏଇ ଆମ ପରିଚୟ ॥"**

ଏହିପରି ଉଦାହରଣ ଦେଲେ ସରିବ ନାହିଁ । ଶ୍ରୀରଥଙ୍କ ଗୀତିକବିତା ଗୁଡ଼ିକର ସାଙ୍ଗୀତିକ-ଐଶ୍ୱର୍ଯ୍ୟ ସହିତ ରସାଳଭାବନାର ବିଳାସ ଯେ କୌଣସି ପାଠକ ଏବଂ ଶ୍ରୋତାଙ୍କୁ ମୁଗ୍ଧ କରିରଖିବ ।

ପ୍ରଭୁ ଶ୍ରୀଜଗନ୍ନାଥ ତାହାଙ୍କର ସହାୟକ ହୁଅନ୍ତୁ ଏବଂ ଓଡ଼ିଆ ଗୀତିକବିତା ରାଜ୍ୟରେ ସେ ହୁଅନ୍ତୁ ଜଣେ ଯଶସ୍ୱୀ ସାହିତ୍ୟ ସାଧକ- ଆଜି ଏହି ଅବସରରେ ଏତିକି କାମନା ।

କେଉଁଝର କଲୋନୀ
କଟକ-୮
ତା ୨.୨.୨୦୦୧

# ନୂତନ ଆଶାବାଦର ମନ୍ମୟ କାବ୍ୟରୂପ 'ନବଚେତନା'

## ଡଃ ବୈଷ୍ଣବ ଚରଣ ସାମଲ

ଗୀତି କବିତା କବିର ଏକାନ୍ତ ବ୍ୟକ୍ତିଗତ ହୃଦୟର ମନ୍ମୟ ଅଭିବ୍ୟକ୍ତି । କବିଚିତ୍ତର କେନ୍ଦ୍ର-ଭୂମିକୁ ଅଭିଭୂତ କରି ଯେଉଁ ଭାବଟିଏ ପ୍ରକାଶ ପାଏ ତାହା ଏପରି ସରଳ ସାବଲୀଳ ଓ ଗୀତିମୟ ହୁଏ ଯେ, ଯେ କୌଣସି ପାଠକକୁ ତାହା ଗଭୀର ଭାବରେ ଆଲୋଡ଼ିତ କରିଦିଏ । ପ୍ରଜ୍ଞା ନୁହେଁ, ବୁଦ୍ଧି ନୁହେଁ, ଏକ ନମ୍ର କୋମଳ ହୃଦୟ ହିଁ ଏଥିରେ ପ୍ରାଧାନ୍ୟ ଲାଭ କରେ । ଡଃ ଶରତ ଚନ୍ଦ୍ର ରଥ ମୂଳତଃ ଜଣେ ଗୀତିକବି । ଅନ୍ୟାନ୍ୟ ଅନେକ ମାନବୀୟ ଭାବ ଓ ଅନ୍ତରୀଣ ସୌନ୍ଦର୍ଯ୍ୟ ବୋଧକୁ ନେଇ ତାଙ୍କର ବହୁ ଗୀତିକବିତା ପ୍ରକାଶ ପାଇଛି ଓ କେତୋଟି ସଂକଳନ ମଧ୍ୟ ଆଲୋକକୁ ଆସିଛି । 'ନବଚେତନା' ତାଙ୍କର ଦିବ୍ୟ ଚେତନା ଓ ଆଧ୍ୟାତ୍ମିକ ଭାବବୋଧର ମନ୍ମୟ ଆତ୍ମଲିପି । ଡଃ ରଥ ଶ୍ରୀଅରବିନ୍ଦ ଦର୍ଶନ ଓ ଶ୍ରୀମାଙ୍କର ଭବ୍ୟ ମାନବିକ ତଥା ଆଧ୍ୟାତ୍ମିକ ଆବେଦନରେ ଗଭୀର ଅବଗାହୀ । ସେହି ଦର୍ଶନକୁ ସେ ଏହି ସଂକଳନର ଗୀତିକା ଗୁଡ଼ିକରେ ରୂପ ଦେଇଛନ୍ତି । ଶ୍ରୀଅରବିନ୍ଦ ଯେପରି ଏକ ଦିବ୍ୟ ଜୀବନର ସଂଦେଶ ଦେଇଥିଲେ, ଯେପରି ଅତିମାନସର ମର୍ତ୍ତ୍ୟାବତରଣ ବିଷୟରେ ଉଲ୍ଲେଖ କରିଥିଲେ ଓ ଏକ ବିଶ୍ୱମାନବିକ ଦିବ୍ୟ ସମାଜର ପରିକଳ୍ପନା କରିଥିଲେ, ଶ୍ରୀମା ଯେପରି ବିଶ୍ୱର ମଣିଷମାନଙ୍କୁ ସେହି ଦିବ୍ୟଚେତନାର ଅବଧାରଣ ପାଇଁ ପ୍ରସ୍ତୁତ ହେବାକୁ କହିଥିଲେ, ତାହାକୁ ମର୍ମେ ମର୍ମେ ଉପଲବ୍ଧ କରିଛନ୍ତି ଡଃ ରଥ । ଏହି ଉପଲବ୍ଧ ଜୀବନ-ରସରେ ଜାରିତ ହୋଇଥିବାରୁ କବିତାଗୁଡ଼ିକ ହୋଇପାରିଛି ହୃଦ୍ୟ ।

କବିଙ୍କର ଆଶା-'ନୂତନ ଉଷାର ଆଲୋକ ପରଶେ ପାହିଯିବ ଅମା ନିଶା ।' ପୁନଶ୍ଚ ସେ କହନ୍ତି - 'ସୁଧା ସଂଜୀବନୀ ପ୍ରବାହ ପରଶେ ହସିବ ମରତ ଭୂଇଁ ।' ସେହି ସମୟରେ ମାନବିକତାର ଶୁଭ ସୌରଭ ବିଚ୍ଛୁରିତ ହୋଇଯିବ । ନୂତନ ସୂର୍ଯ୍ୟ ଉଇଁ ଆସିବ । ବିପର୍ଯ୍ୟସ୍ତ ଜଗତରେ ନୂତନ ଦିବସ ହେବ ଉଦ୍‌ଭାସିତ । ଏହି ଆଶାବାଦ ସମସ୍ତ କବିତାରେ ପ୍ରକଟିତ । କାବ୍ୟପୁରୁଷ ଅନୁଭବ କରିଛନ୍ତି ଯେ ଆପଣାର ବ୍ୟକ୍ତିସତ୍ତା ଭିତରେ ଗୋଟିଏ ମଧୁମୟ ବୀଣା ମନ୍ଦ୍ରିତ ହୋଇ ଉଠୁଛି । ଦିବ୍ୟଜନନୀଙ୍କର କରୁଣାବାରି ଯେପରି ତାଙ୍କ ହୃଦୟକୁ ପ୍ଲାବିତ କରିଦେଇଛି । ସେତିକିବେଳେ ଜୀବନ ଆକାଶରେ ଫୁଟି ଉଠିବ ନୂତନ ଆଲୋକ, ପ୍ରକଟିତ ହେବ ନବଚେତନା ଯେତେବେଳେ 'ମାନବ-ମାନସେ ନାଚିବ ଉଲ୍ଲାସେ ମାନବିକତାର ତରଙ୍ଗମାଳା', 'ସ୍ୱର୍ଗ ହେବ ଏ ଧରା ପରିବେଶ ନନ୍ଦନବନ କୁସୁମେ ଭରା ।' ଅତିମାନସର ସୁଷମା ବିରାଜିତ ହେବ ମରମ ତଳେ । କାବ୍ୟପୁରୁଷଙ୍କର ଦିବ୍ୟ ଜନନୀଙ୍କ ନିକଟରେ ନିବେଦନ - 'ଦୀପଟିଏ କର ମାଆ ମୁଁ ତୁମର/ ପାଦତଳେ ଜଳୁଥିବି । ଧୂପଟିଏ ହୋଇ ତୁମ ପୂଜା ବେଳେ/ ଜଳିଜଳି ଝରିଯିବି ।' କେତେ ଆନ୍ତରିକତାପୂର୍ଣ୍ଣ ଏହି ଉକ୍ତି ।

ଅହଂକାର ବିମୁକ୍ତ ଚିନ୍ତନ ହେଲେ ଏକଥା ଜଣେ କହିପାରେ । କାବ୍ୟ ପୁରୁଷ କହନ୍ତି ଯେ ମାଆ ହିଁ କରୁଣାମୟୀ । ମାତୃମମତା ଓ ମାନବିକତାକୁ ତେଣୁ ଡଃ ରଥ ଏକ ଭାବବିନ୍ଦୁକୁ ନେଇ ଆସିଛନ୍ତି । ଏପରି ଅବସ୍ଥାରେ 'ଅହମିକାର ରାତି ଯିବଟି ପାହି/ ବହିବ ମରତରେ  ଚେତନା ନଈ ।' ନୂଆ ଚେତନା ଆସି ଆଗାମୀ ଦିନ ପାଇଁ ଦେଇଯିବ ମଧୁବାର୍ତ୍ତା । ସେଇ ନୂଆ ଚେତନା, ଦିବ୍ୟଭାବର ପ୍ରତୀକ ଦିବ୍ୟଜୀବନ ପାଇଁ ଚାହିଁ ରହିଛନ୍ତି କାବ୍ୟପୁରୁଷ । ତାଙ୍କର ଧାରଣା ମାତୃବନ୍ଦନା, ମାତୃଉପାସନା ନିବିଡ଼ ହୋଇଗଲେ ଜଗତରୁ ଲୋପ ପାଇଯିବ ସକଳ କ୍ଷୁଦ୍ରତା ଓ ସଂକୀର୍ଣ୍ଣତା । ବିଶ୍ୱଭାବ ଓ ଭବ୍ୟ ମାନବିକତାର ସ୍ୱର୍ଣ୍ଣ ସିଂହାସନ ପ୍ରତିଷ୍ଠିତ ହେବ । ବିଶ୍ୱ ପ୍ରେମର ନିର୍ଝରିଣୀ ପ୍ରବାହିତ ହେବ । ମାଆଙ୍କ ଇଚ୍ଛାରେ ହିଁ ଏସବୁ ସଂଘଟିତ ହେବ । ତେଣୁ ମାଆଙ୍କ ନାମ ହିଁ ଏକମାତ୍ର ମନ୍ତ୍ର । ସେଇ ନାମରେ ଅଛି ଶାନ୍ତିର ପ୍ରଲେପ । ସେହି ନାମ ହିଁ ସଖା, ବନ୍ଧୁ । ସେହି ନାମର ମହିମାରେ ଧୋଇ ହୋଇଯିବ ସକଳ ଦୁଃଖ, କ୍ଳେଶ, ବ୍ୟଥା ଓ ବ୍ୟର୍ଥତା । ଏହି ଭାବଟି ହୃଦୟରେ ଘନୀଭୂତ ହୋଇଗଲେ ମଣିଷ ପାଲଟିଯିବ ଅମୃତର ସନ୍ତାନ । ସତ୍ୟ–ନ୍ୟାୟ ପ୍ରତିଷ୍ଠିତ ହେବ । ମଣିଷର ମନ ଯେତେବେଳେ ବାତଚକ୍ର ପରି ଘୂରୁଥାଏ, ସେତେବେଳେ ମାତୃମହିମା ହିଁ ତାକୁ ଶାନ୍ତ କରେ ଓ ମଣିଷକୁ ଏକ ଉତ୍ତରଣ ପଥରେ ଆଗେଇ ନିଏ । କାବ୍ୟପୁରୁଷ କାମନା କରିଛନ୍ତି –'ମାତୃ କରୁଣାରେ ଭରିଯିବ ଉଷାଲୋକ ।' ଜୀବନେଜୀବନେ ସେ ଅନୁଭବ କରିଛନ୍ତି ଦିବ୍ୟଲଳିତଛନ୍ଦ । ଦିବ୍ୟ ଅତିମାନସର ଅବତାର ହେଉଛନ୍ତି ମହାଯୋଗୀ ଶ୍ରୀଅରବିନ୍ଦ । ମନୁଷ୍ୟ ଯେତିକି ଯେତିକି ଅତିମାନସ ଓ ଦିବ୍ୟଚେତନାରେ ଉଦ୍‌ବୁଦ୍ଧ ହେବ ସେତିକି ସେତିକି ସେ ଭିତରେ ଓ ବାହାରେ ଅନୁଭବ କରିବ ନବ ସୌରଭ ଓ ମଧୁମଳୟର ପବିତ୍ର ପ୍ରଭାବକୁ । କାବ୍ୟପୁରୁଷଙ୍କର ଦୃଢ଼ ବିଶ୍ୱାସ ହୋଇଛି ଯେ, ବର୍ତ୍ତମାନର ଯୁଦ୍ଧଧ୍ୱାନ୍ତ ଜଗତ ଓ ବିଭୀଷିକାମୟ ପରିବେଶ ଭିତରୁ ଫୁଟି ଉଠିବ ଆଶାକୁସୁମ । 'ଅତି ମାନବର ଲୀଳା ନିକେତନ ହେବ ଏ ମରତ ପୁରୀ', ଏହା ହିଁ କାବ୍ୟପୁରୁଷଙ୍କର ଆଶାନ୍ୱିତ ଭାବନା । ଆଗାମୀ ଦିବ୍ୟ ଦିନରେ ପୁରୁଣା ଦିନ ରହିବ ନାହିଁ, ପୁରୁଣା କଥା ରହିବନାହିଁ । ନୂଆ ଜୀବନ ଆସିବ । ମର୍ତ୍ତ୍ୟ ହେବ ସ୍ୱର୍ଗ । ସମଗ୍ର କବିତାଗୁଡ଼ିକରେ ମଧୁସୂଦନୀୟ ବ୍ରହ୍ମବୋଧ ଓ ଜୀବନବୋଧ ଉଚ୍ଚାରିତ ହୋଇଥିଲେ ହେଁ ତାହା ଶ୍ରୀଅରବିନ୍ଦୀୟ ଅତିଚେତନା ଓ ବିଶ୍ୱ ମାନବିକ ଦିବ୍ୟଭାବରେ ଜାରିତ ହୋଇ ଏକ ନୂତନ କାବ୍ୟ ଚେତନା ସୃଷ୍ଟି କରିଛି । ଉପନିଷଦୀୟ ଭାବଧାରା ମଧ କବିତାଗୁଡ଼ିକୁ ପ୍ରାଣବନ୍ତ କରିଦେଇଛି । ମାତ୍ର ଏଥିରେ ଜଗତ, ମଣିଷ ଓ ଅତିମାନସ ଯେପରି ଏକ ସତ୍ତାକୁ ଅବତରି ଆସି ଏକ ବିଶ୍ୱ–ଗ୍ରାମ ପ୍ରତିଷ୍ଠାର ସଂକେତ ଦେଇଛି, ଏହା ଯେ କେହି ପାଠକ ଉପଲବ୍ଧ କରିବ । କବିତାର ଛନ୍ଦ ହୋଇଛି ହୃଦ୍ୟ, ଭାଷା ହୋଇଛି ଲଳିତ, ଭାବ ହୋଇଛି, ମଧୁର ଓ ଗଭୀର । ଏହି କବିତା ସଂକଳନ **'ନବଚେତନା'** ଯେ ଏକ ସାମାଜିକ ଦାୟିତ୍ୱବୋଧ ଓ ମାନବିକ ମୂଲ୍ୟବୋଧର ସୁବର୍ଣ୍ଣ ସ୍ମାରକୀ, ଏହା ନିଶ୍ଚିତ ଭାବରେ ସ୍ୱୀକାର୍ଯ୍ୟ ।

**ପ୍ରାକ୍ତନ ପ୍ରଫେସର**
ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ବିଶ୍ୱଭାରତୀ, ଶାନ୍ତିନିକେତନ

# ମୁଖଶାଳା (ନବଚେତନା)

## ମହାପାତ୍ର ନୀଳମଣି ସାହୁ

ଅଧ୍ୟାପକ ଡକ୍ଟର ଶ୍ରୀମାନ୍ ଶରତ ଚନ୍ଦ୍ର ରଥଙ୍କ ବିରଚିତ ପାଣ୍ଡୁଲିପି ପାଠ କରି ଆନନ୍ଦ ଅନୁଭବ କଲି । ଶ୍ରୀମାନ୍ ଶରତ ଚନ୍ଦ୍ର ଓଡ଼ିଆ ଭାଷା ସାହିତ୍ୟର କେବଳ ଜଣେ ଅଧ୍ୟାପକ ନୁହନ୍ତି, ସେ ମଧ୍ୟ ଜଣେ କାବ୍ୟରସିକ ଓ କବି । ବିଶେଷତଃ, ଆଧ୍ୟାତ୍ମିକ ଭାବାନୁଭୂତିସଂପନ୍ନ କବିତା ରଚନାରେ ତାଙ୍କର ବିଶେଷତ୍ୱ ଲକ୍ଷ୍ୟ କରିହୁଏ ।

କବିଙ୍କର ମନପ୍ରାଣ ଯୁଗପୁରୁଷ ଶ୍ରୀଅରବିନ୍ଦ ଓ ଶ୍ରୀମାଙ୍କ ଭାବାଦର୍ଶରେ ଅନୁପ୍ରାଣିତ । ଶ୍ରୀଅରବିନ୍ଦଙ୍କର ଭବିଷ୍ୟତ- ଦର୍ଶନରେ ପୃଥିବୀ ଓ ମାନବସମାଜ ଏକ ନୂତନ ଦିବ୍ୟଯୁଗ ପାଇଁ ଅପେକ୍ଷା କରୁଛି ଓ ପ୍ରସ୍ତୁତ ହେଉଛି । ସେହି ଭବିତବ୍ୟତା ଅବଶ୍ୟମ୍ଭାବୀ । ବର୍ତ୍ତମାନ ଏହି କାଳ-ସନ୍ଧି ମୁହୂର୍ତ୍ତଟି ହେଲା ଏକ ନୂତନ ଯୁଗର ଉଷା ଆବିର୍ଭାବ ହେବାର ପୂର୍ବ ସମୟ । ଏହି ସମୟରେ ଅନ୍ଧକାର ଆହୁରି ଘନୀଭୂତ ହୋଇଛି ଏବଂ ପାପଶକ୍ତିମାନେ ପ୍ରବଳ ହୋଇଛନ୍ତି । ତା'ର ଫଳସ୍ୱରୂପ ବର୍ତ୍ତମାନ ପୃଥିବୀରେ ନାନାଦି ବିପର୍ଯ୍ୟୟ ଦେଖା ଦେଇଛି । ତା'ହେଲେ ବି, ସେହି ନୂତନ ଯୁଗର ଉଷାର ପୂର୍ବାଭାସ ପୂର୍ବଦିଗରେ କ୍ରମଶଃ ପ୍ରକଟିତ ହୋଇଆସୁଛି । କବି ଶ୍ରୀମାନ୍ ରଥ ସେହି ଦିବ୍ୟଉଷାର ପ୍ରାକ୍‌ବନ୍ଦନା ଗାଇଛନ୍ତି ତାଙ୍କ ରଚିତ ଏହି ସୁଲଳିତ କବିତାଗୁଡ଼ିକରେ । ସମଗ୍ର କବିତା ସଂକଳନଟିରେ ସତେ କି ପୂତପ୍ରଭାତ ଶୁଭକାମୀ ବିହଗମାନଙ୍କର ମଧୁକାକଳିରେ ଭରା ଅପୂର୍ବ ଗୀତି-ସ୍ପନ୍ଦନ ବାଜି ଉଠିଛି । ଅତିମାନସ ଯୁଗର ଆଗମନୀ ପାଇଁ ଏହି କବିତାଗୁଡ଼ିକ ସତେକି ପ୍ରଗାଢ଼ ଅଭୀପ୍‌ସା ଓ ଆକୂତିରେ ଭରା ପ୍ରଭାତୀ ସଙ୍ଗୀତ ।

ତଥାପି ରହିଛି ଅଶା
ନୂତନ ଉଷାର ଆଲୋକ ପରଶେ ପାହିଯିବ ଅମାନିଶା ।

କବି ତାଙ୍କର ଭକ୍ତିପୂର୍ଣ୍ଣ ଅନ୍ତରରେ ଦୃଢ଼ ଆଶାପୋଷଣ କରିଛନ୍ତି ଏବଂ କେବଳ ଆଶା ପୋଷଣ କରି ନାହାନ୍ତି, ସେ ମଧ୍ୟ ଅୟୁତାୟୁତ ମଙ୍ଗଳକାମୀ ଅଭୀପ୍‌ସୁମାନଙ୍କ ସହିତ କଣ୍ଠ ମିଳାଇ ଗାଇଉଠିଛନ୍ତି ପରମ ଆସ୍ଥା ଓ ବିଶ୍ୱାସର ସଙ୍ଗୀତ ।

ସ୍ୱର୍ଗ ଆସିବ ନଇଁ
ସୁଧା ସଂଜୀବନୀ ପ୍ରବାହ ପରଶେ ହସିବ ମରତ ଭୂଇଁ ।

ଏହି ଯେଉଁ ନବୀନ ଦିବ୍ୟଯୁଗର ଅଭ୍ୟୁଦୟ ହେବାକୁ ଯାଉଛି ସେହି ଯୁଗର ଅଧିଷ୍ଠାତ୍ରୀ ଓ ନିର୍ମାତ୍ରୀ ଦେବୀଙ୍କୁ ସେ ଆରାଧନା କରି କହୁଛନ୍ତି –

ମୋ ମନରେ ରହୁ  ଅଶେଷ ଆନନ୍ଦ
ତୁମ ନିରାଜନା ପାଇଁ
ପାଖୁଡ଼ା ପାଖୁଡ଼ା  ମେଲି ଫୁଟିଯାଉ
ଚେତନାର ନୀଳକଇଁ ।

କବିଙ୍କ ହୃଦୟ ସେହି ଦିବ୍ୟଆଶାରେ ଉଦ୍‌ବେଳିତ ହୋଇଉଠିଛି । ସେ ତାଙ୍କର ଭକ୍ତି–ବିଶ୍ୱାସ–ପୂର୍ଣ୍ଣ ଅନ୍ତରରେ ଅପେକ୍ଷା କରି ରହିଛନ୍ତି ସେହି ଅଭୂତପୂର୍ବ ଦିବ୍ୟ ପ୍ରତିଶ୍ରୁତିରୁ ଉଦ୍‌ଭୂତ ଏହି ଆମର ମରପୃଥିବୀଟିର ଦିବ୍ୟରୂପାନ୍ତରିତ ଜ୍ୟୋତିସ୍ନାତ ଲୀଳାକୁ ଦେଖିବା ପାଇଁ –

ଦିବ୍ୟଭାବନା ଆସି କରିବ ଲୀଳା
ଆସିବ ଧରାବୁକେ ମାହେନ୍ଦ୍ର ବେଳା ।
ଦେବତା ଆଉ ସ୍ୱର୍ଗେ ରହିବେ ନାହିଁ
ଆସିବେ ସରାଗରେ ମରତ ଭୂଇଁ ।

ଯୁଗପୁରୁଷ ଦିବ୍ୟଦ୍ରଷ୍ଟା ଋଷିକବି ଶ୍ରୀଅରବିନ୍ଦ କହିଛନ୍ତି ଅତିମାନସ ଜ୍ୟୋତି, ଚେତନା ଓ ଶକ୍ତିରେ ଉଦ୍‌ବୁଦ୍ଧ ଏହି ପୃଥିବୀ ସ୍ୱର୍ଗ ଅଭିମୁଖେ ଉଠିଚାଲିବ ଏବଂ ସ୍ୱର୍ଗ ମଧ୍ୟ ତା'ର ସମସ୍ତ ଶାଶ୍ୱତ ଆନନ୍ଦ, ଆଲୋକ ଓ ଐଶ୍ୱର୍ଯ୍ୟ ସହ ଓହ୍ଲାଇ ଆସିବ ଏ ପୃଥିବୀକୁ । ସେହିଦିନ ସେହି ଦିବ୍ୟମୁହୂର୍ତ୍ତରେ ସ୍ୱର୍ଗ ଓ ପୃଥିବୀର ଦିବ୍ୟ ପରିଣୟ ଅନୁଷ୍ଠିତ ହେବ । ପୃଥିବୀ ହେବ ଚିରଦିନପାଇଁ ତା'ର ନଶ୍ୱର – କାଳିମାରୁ ମୁକ୍ତ । କବି ଶ୍ରୀମାନ୍ ଶରତ ସେହି ଆଶାରେ ବିହ୍ୱଳ ହୋଇ ଗାଇଛନ୍ତି –

ଅହମିକାର ରାତି ଯିବଟି ପାହି
ବହିବ ମରତରେ ଚେତନା ନଈ
ସେ ନଈ ଧାରେଧାରେ ପ୍ରୀତିକଦମ୍ବ
ଆଣିବ ମରତରେ ସରଗ ଭାବ ।

କହିବା ବାହୁଲ୍ୟ ଯେ ପୃଥିବୀର ସେହି ଦିବ୍ୟରୂପାନ୍ତର ଫଳରେ ମଣିଷ ଭିତରୁ ସମସ୍ତ ବିଭେଦକାରୀ ଅହମିକା, ଅଜ୍ଞାନତା ଓ ଅବାଧ୍ୟତା ଘୁଞ୍ଚିଯିବ ଏବଂ ଏ ପୃଥିବୀର ପ୍ରତି କୋଣେକୋଣେ ଦିବ୍ୟପ୍ରେମର ନବବୃନ୍ଦାବନମାନ ପ୍ରତିଷ୍ଠିତ ହୋଇଯିବ । ପାର୍ଥିବ ପ୍ରକୃତିର କୋଳରେ ସ୍ୱର୍ଗୀୟ ପ୍ରଣୟର ଲୀଳାପାଇଁ ଆନନ୍ଦର କୁଂଜଗୁଡ଼ିକ ସୃଷ୍ଟି ହୋଇଯିବ । କବି ଶରତ ସେହିକଥା ଆସ୍ଥାପୂର୍ଣ୍ଣ ପଂକ୍ତିରେ ଗାଇ ଉଠିଛନ୍ତି –

ଧରିତ୍ରୀରେ ସ୍ୱର୍ଗସୁଧା ମୃଦୁହସି ହେବ ଉପଗତ,
ଅଳକା ଆସିବ ନଇଁ ସବୁ ହେବ ସ୍ନିଗ୍ଧ ସୁରଭିତ,
ଭ୍ରାତୃତ୍ୱର ଅତୁଟ ବନ୍ଧନେ, ବିଶ୍ୱପ୍ରାଣ ହେବ ମଧୁସିକ୍ତ
ମମତା କଦମ୍ବ କଢ଼ି ଫୁଟିଯିବ, ବିଶ୍ୱମନେ ହୋଇ ପୁଲକିତ ।

କିନ୍ତୁ କବିଙ୍କର ଏହି ଆଶାବାଦ କେବଳ ଏକ ତରଳ ଭାବପ୍ରବଣତା ନୁହେଁ କିମ୍ବା ଭାବାବେଗର ଚପଳ ଉଚ୍ଛ୍ୱାସ ମାତ୍ର ନୁହେଁ । ଏହି ଆଶାବାଦ ପଛରେ ରହିଛି ଗଭୀର ଏକ ଆତ୍ମ–ଜିଜ୍ଞାସା ବା ଜୀବନ–ଜିଜ୍ଞାସା । ଅଛି ମଧ୍ୟ ଏକ ଚୈତ୍ୟିକ ବିଶ୍ୱାସ ଓ ହୃଦୟର ଗଭୀର ପ୍ରେମଭକ୍ତି । ମଣିଷର ଜୀବନ ଏକ ଆକସ୍ମିକ ନିରୁଦ୍ଦେଶ୍ୟତା ନୁହେଁ, ଏକ ଅର୍ଥହୀନ ଜାନ୍ତବ ବା ବୌଦ୍ଧିକ କ୍ଷଣିକ ଅଭିବ୍ୟକ୍ତି ନୁହେଁ । ନୁହେଁ ମଧ୍ୟ ଏହା ମୃତ୍ୟୁପାଇଁ ଏକ ନିଃସହାୟ ଆହାର ।

କବିଙ୍କ ଭାଷାରେ –

ଜୀବନର ମାନେ ନୁହେଁ ଜନମ କି ମରଣ
ଅବା ଏ ଦୁଇଟି ମଧ୍ୟେ କ୍ଷୀଣ ଏକ ନଶ୍ୱର ତୋରଣ,
ଅମୃତ ସନ୍ତାନ ପାଇଁ ଏହା ଏକ ପୁଣ୍ୟ ଉପହାର
ଅମୃତ ସନ୍ଧାନ ପାଇଁ ଏହା ଏକ ପୂଜା ଉପଚାର ।

ମୋଟ ଉପରେ, ଏହି ସଂକଳନସ୍ଥ ଗୀତି–କବିତାଗୁଡ଼ିକ ଯେ କୌଣସି ଅଭୀପ୍ସୁ ପାଠକପାଠିକାଙ୍କର ମନ ଓ ହୃଦୟକୁ ଗଭୀରଭାବେ ସ୍ପର୍ଶ କରିବ, ଏଥିରେ ସନ୍ଦେହ ନାହିଁ । ଏ କବିତାଗୁଡ଼ିକର ଅନ୍ୟତମ ବିଶେଷତ୍ୱ ହେଲା ଆଧୁନିକ ଯୁଗର ସଂଗୀତ ବିରହିତ କବିତା ରାଜ୍ୟରେ ଶ୍ରୀମାନ୍ ଶରତ ଚନ୍ଦ୍ରଙ୍କର ଏହି ଛନ୍ଦ–ମଧୁର କବିତାଗୁଡ଼ିକ ପାଠକ ପ୍ରାଣରେ ଏକ ନୂତନ ଗୀତିମୟ ଆବେଶ ସୃଷ୍ଟି କରିବ ଏବଂ ଭକ୍ତି ବିଶ୍ୱାସର ଆକୂତିମୟ ସ୍ପନ୍ଦନ ସୃଷ୍ଟି କରିବ । ବିଶେଷତଃ, ଏଥିରେ ସଂକଳିତ ଗୁରୁବନ୍ଦନା ଓ ମାତୃବନ୍ଦନା ଗୀତିଗୁଡ଼ିକୁ ସ୍ୱର ଲୟ ଦେଇ ଗାନ କଲେ ହୃଦୟରେ ଭକ୍ତିର କଲ୍ଲୋଳ ସୃଷ୍ଟି ହେବ ।

ମୁଁ ଏହି ଆଧ୍ୟାତ୍ମିକପ୍ରାଣ କବିଙ୍କର ଶୁଭ ଭବିଷ୍ୟତ କାମନା କରୁଛି ଏବଂ ତାଙ୍କ ଲେଖନୀରୁ ଆହୁରି ବେଶୀ ଅଧ୍ୟାତ୍ମଭାବ ସମ୍ବଳିତ ଗୀତିକବିତା ଆଶା କରୁଛି ।

ଶ୍ରୀମା ଭଗବତୀ ତାଙ୍କ ହୃଦୟକୁ ସର୍ବଦା ଶୁଭଭାବରେ ପରିପୂର୍ଣ୍ଣ କରି ରଖନ୍ତୁ ।

୭୮୭ , ଆକାଶପାତାଳ
ଶହୀଦ ନଗର, ଭୁବନେଶ୍ୱର

# ଅଭିମତ (ତୁମେ ଓ ମୁଁ)

## ଡକ୍ଟର ସଂଘମିତ୍ରା ମିଶ୍ର

ପ୍ରଫେସର ଶରତ ଚନ୍ଦ୍ର ରଥଙ୍କର ସଦ୍ୟ ପ୍ରକାଶିତ ଗୀତିକବିତା ସଂକଳନ 'ତୁମେ ଓ ମୁଁ' ପାଠକଲି । କବି ପ୍ରଫେସର ରଥ ଓଡ଼ିଶାର ପ୍ରତିଷ୍ଠିତ ଗୀତିକବି ଯିଏ ଏକାଧାରରେ ସୁନୀତି ଓ ସୁରୁଚିକୁ ସମନ୍ୱିତ କରିବାର ସାମର୍ଥ୍ୟ ରଖନ୍ତି । ତାଙ୍କର ଗୀତିକବିତାଗୁଡ଼ିକ ସୁଖପାଠ୍ୟ, ସୁଗେୟ ଓ ସାହିତ୍ୟର ମାନଦଣ୍ଡରେ ମଧ୍ୟ ଉଚ୍ଚକୋଟିର ବୋଲି ବହୁବାର ପରୀକ୍ଷିତ ଓ ପ୍ରମାଣିତ । ଏହି ସଂକଳନରେ ସ୍ଥାନିତ ଗୀତିକବିତାଗୁଡ଼ିକରୁ ପ୍ରତ୍ୟେକ ସୁବିନ୍ୟସ୍ତ ଓ କବିଙ୍କ ଚେତନାର କ୍ରମଉତ୍ତରିତ ପଥରେ ଗୋଟିଏ ଗୋଟିଏ ଆଲୋକବର୍ତ୍ତିକା ସଦୃଶ ।

କବି ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ଦର୍ଶନରେ ବିଶ୍ୱାସୀ । ତେଣୁ ଗଭୀର ନୈରାଶ୍ୟ ଭିତରୁ ଉଜ୍ଜ୍ୱଳ ଆଶାବାଦ ଆଡ଼କୁ ତାଙ୍କର ଗତି । ଦିବ୍ୟଜନନୀଙ୍କର ଆଶିଷ ଭିକ୍ଷା କରିବା ସହିତ ସେ କାମନା କରନ୍ତି ଯେ ସବୁ ସ୍ୱର ଦିନେ ସରସ ସଂଗୀତରେ ରୂପାନ୍ତରିତ ହୋଇଯିବ, ନବଚେତନାର କିରଣରେ ଚେତନାର ନୀଳକଇଁ ହସିଉଠିବ. ଦେବ ତରଙ୍ଗିଣୀ ତଟରୁ ସୁବାସିତ ସମୀର ସହିତ ଅରୁଣିମା ଆସି ସମଗ୍ର ଜଗତକୁ ଦିବ୍ୟଶାନ୍ତିରେ ଭରିଦେବ । ଆଲୋକର ତୀର୍ଥରେ ସକଳ ସୀମାରେଖା ଲିଭିଯିବ । ଆଲୋକ ଓ ଆନନ୍ଦର ବାର୍ତ୍ତା ନେଇ ଏହି କ୍ଲାନ୍ତ ମଣିଷ ପୁଣିଥରେ ନୂଆଦିନ ପାଇଁ ଅପେକ୍ଷା କରିବ ।

ଅନ୍ୟ ଏକ ଧାରାର କବିତା ଭିତରେ ଜୀବନର ଚିରନ୍ତନ ସତ୍ୟକୁ ବହନ କରୁଥିବା ତାତ୍ତ୍ୱିକ ଚିନ୍ତା ଦେଖିବାକୁ ମିଳେ । ଯେମିତି 'ବନମଇନା' କବିତାର 'ପାଣି ନୁହେଁ ମେଘ, ମେଘ ନୁହେଁ ପାଣି', 'ଜୀବନ ଚିନ୍ତା'ର 'ସିଏ ରାଜ୍ୟ ପୁଣି ସିଏ ରାଜା', 'ବସୁନ୍ଧରା'ର "ଯେବେ ଲୁହ ସତ ତେବେ ଗାର ବି ସତ", 'ଅବତରଣ'ର ମାଟି ବଡ଼ କି ଆକାଶବଡ଼', ବାଉଳାଗୀତିର "ହରାଇ ପାଇବା ପାଇ ହରାଇବା" ଭଳି ପ୍ରୟୋଗ ପାଠକ/ଶ୍ରୋତାକୁ ଏଭଳି ବିରଳ ଅନୁଭବ ଦିଏ, ଯାହା ତାକୁ ଜୀବନର ଅର୍ଥ ବୁଝିବାପାଇଁ ନୂଆ ମାର୍ଗ ଦେଖାଏ । 'ନୂଆ ପୁରୁଣା' ଗୀତିର ନୂଆ ପୁରୁଣା, ଭାବ ଭାବନା, ଜଣାଅଜଣା, ଭାଷା ଭାବନା ସହିତ ଜଳ ତରଂଗ, ଲତାପତର, ପବନ ଛନ୍ଦ, ସାଗର ନଦୀ ଭିତରେ ଥିବା ସାମ୍ୟ ବୈଷମ୍ୟ ଓ ସମନ୍ୱୟର ଉପଲବ୍ଧି ବେଶ୍ ମାର୍ମିକ । ପୁଣି 'ନୂଆ ଗୀତ'ର ପୁରୁଣା ପାଠ ଶେଷ ହୋଇ ନୂତନ ସ୍ୱରର ଶିହରଣ ସଂପର୍କରେ କବି ଯାହା କହିଛନ୍ତି ତାହା ନିତ୍ୟନୂତନ ଜୀବନାନୁଭବର ମନ୍ଦ୍ରସ୍ୱର । ଏହି ଗୀତିସମୂହ ଯେକୌଣସି ସମୟର ଯେକୌଣସି ସାହିତ୍ୟର ଚିନ୍ତାଶୀଳ ପାଠକ ବା ଶ୍ରୋତାକୁ ସମଭାବରେ ପ୍ରଭାବିତ କରିବାର କ୍ଷମତା ରଖେ । 'ଚିହ୍ନା ଅଚିହ୍ନା' ଗୀତରୁ ପଦଟିଏ –

ପୁରୁଣାରେ ନୂଆ କି ମୁଁ
　　　　ନୂଆରେ ପୁରୁଣା
ଜଣାରେ ଅଜଣା କିବା
　　　　ଅଜଣାରେ ଜଣା

କବିଟିଏ ଏକାଧାରରେ ସଂସାରୀ ଓ ସନ୍ୟାସୀ । ଚେତନାର କ୍ରମଉତ୍ତରିତ ସ୍ତରରେ ସେ ହୁଏତ ନିଃସଂଗ ମାତ୍ର ସେ ପରିବାର ଓ ପରିଜନଙ୍କ ମଧ୍ୟରେ ଜଣେ । ତା ପାଇଁ 'ତୁମେ' ଏଭଳି ଏକ ସତ୍ତା ଯେଉଁଠି ଈଶ୍ୱର, ପ୍ରେମ, ବଂଧୁ, ସନ୍ତାନ ସବୁ ଏକାକାର ହୋଇଯାଆନ୍ତି । ସେ ନିଜର ଉପଲବ୍ଧିକୁ ବାଣ୍ଟିବାକୁ ଚାହାନ୍ତି ସେହିଭଳି ବଂଧୁ ସହିତ ଯିଏ ସହୃଦୟତା ଦେଇ ତାଙ୍କୁ ବୁଝିବ ଓ ଗ୍ରହଣ କରିବ । ଡ. ରଥ 'ଜହ୍ନରାତି' କବିତାରେ ଲେଖିଛନ୍ତି -

ଲତା ଝୁଲଣାରେ ଝୁଲୁଅଛି ଛାଇ
ଲଳିତ ଲାବଣ୍ୟ ମାଖି
ଦୂରଦେଶୀ ପାନ୍ଥ ନିଜକୁ ଖୋଜେ ମୁଁ
ନିଜେ ତ ନିଜର ସାକ୍ଷୀ

'ଦିଗନ୍ତଯାତ୍ରୀ'ରେ ସେହି ଚିନ୍ତା 'ନିଜେ ତ ନିଜର ସାଥୀ' ରୂପାୟିତ ହୋଇଛି । 'ଆତ୍ମନେପଦୀ'ର ଉଦାସୀ ଏକାକୀ ପଥିକ କାହାର ଗୀତ ଶୁଣି ଆନମନା ହୁଏ । ଅତିଆପଣାର କେହି ଜଣେ ଆଶାବରୀ ରାଗ ଶୁଣାଏ । ତା'ର ପାଦଚିହ୍ନ ଦିଶେ ପୁଣି ହଜିଯାଏ । କିନ୍ତୁ ସେ ସ୍ୱର କହେ 'ହତାଶ ହୁଅନା', 'ତୁହି ବସିଛୁ ମୋ କାନ୍ଧେ'- ଅର୍ଥାତ୍ ସେହି ଆତ୍ମୀୟ ତାଙ୍କ ପରମ ଆହ୍ୱାନରେ ନିରାଶ ପଥିକକୁ କାନ୍ଧରେ ବସାଇ ପାରି  କରିଦିଅନ୍ତି ଉତ୍ତପ୍ତ ମରୁବାଲି । କିନ୍ତୁ 'କାଶତଣ୍ଡୀ' ଗୀତରେ କାଶତଣ୍ଡୀ ଓ ପବନର ଆହ୍ଲାଦିତ କଥୋପକଥନରେ 'ସତେ ତୁମେ ବଡ଼ ଇଏ' ବା 'ଲାଜକୁଳି ଲତା'ର

କନକବରଣୀ, ମଧୁ ସୁହାସିନୀ, ବସ ମନସିଂହାସନେ
ପାରିଜାତ ହୋଇ ବାସୁଥାଅ ତୁମେ ସୁଷମାର ଉପବନେ
ସବୁଜ ବନାନୀ ଶୀତଳ ଛାଇଗୋ କାନ୍ତିମୟୀ ନୀରବତା

ତଥା 'ବନକୁସୁମ'ର ଅନୁପମ ମାଦକତା ଭିତରେ ଆମେ ଯେଉଁ ରୂପର ଉପସ୍ଥିତି ଦେଖୁ ସିଏ କବିଙ୍କୁ ନିର୍ଜନତାରୁ ମୁକ୍ତି ଦିଅନ୍ତି, ତାଙ୍କ ଦୁଃଖ ସୁଖକୁ ଆତ୍ମସ୍ଥ କରନ୍ତି । କବିଙ୍କ ଜୀବନକୁ ସେ ଶ୍ରଦ୍ଧାରେ ପ୍ଲାବିତ କରନ୍ତି । ସେ ଅଶରୀରୀ ନୁହନ୍ତି; ହେବା ମଧ୍ୟ ସମ୍ଭବ ନୁହେଁ । ତେବେ ସେ ସହଯାତ୍ରୀ ବା ଲୁଚକାଳି ଖେଳିବାକୁ ଭଲପାଉଥିବା ସାଧାରଣ ନାୟିକାରୁ ପରମୋପ୍ରକୃତି ସ୍ଥାନକୁ ଉତ୍ତରିତ ହୋଇପାରିଛନ୍ତି ଯେଉଁଠି ନୀରବତା କାନ୍ତିମୟ ପାଲଟି ଯାଇଛି ।

କବି ସମୟ ସଚେତନ । ନିଜର ଶିକ୍ଷା, ଅନୁଭୂତି ଓ ଅଭିଜ୍ଞତା ଦେଇ ସେ ବୁଝିଛନ୍ତି  ଯେ ସମୟର ଗତିକୁ ଯୁକ୍ତିକରି ବୁଝିହୁଏନା କି ଅଂକ କଷି ଖୋଜି ହୁଏନା । ସେ ଜାଣନ୍ତି ସବୁ ଘାସ ଦୂବଘାସ ନୁହେଁ । ଏଥିସହିତ ସେ ଖୋଜିବାକୁ ଚାହାନ୍ତି ଜୋଛନା, ଚନ୍ଦ୍ରମଣ୍ଡଳ ଓ ବଉଦ ଫାଙ୍କରେ ସେହି ସମୟକୁ । ବସନ୍ତ ପାଇଁ ପ୍ରତୀକ୍ଷା କରିବା ଭିତରେ ସେ ବୁଝିପାରନ୍ତି 'ବେଦନାର ତୁଠପଥରରେ ତୁମନାମ ଲେଖା' । ମଣିଷ ମାଟିର ଖେଳଣା ବୋଲି ଜାଣିବା ସତ୍ତ୍ୱେ ମଧ୍ୟ ସେ କାମନା କରନ୍ତି ମାଟି ଦିନେ ଖାଣ୍ଟିସୁନା ହୋଇଯିବ ଓ ତହିଁରେ ସୂକ୍ଷ୍ମ ତାରକସିର କାରୁକାର୍ଯ୍ୟ ଝଲିସିବ । କବି କହନ୍ତି -

କବିଙ୍କ ଭାଷାରେ -

ସୁନାରେ ସୁବାସ ଆସିବ ସେ ଦିନ
ନନ୍ଦନ ମନ୍ଦାର ବାସ ଅନୁପମ
ଚିରମଳୟର ଧୀର ହିଲ୍ଲୋଳରେ
ଆଳାପ ତୋଳିବ ପ୍ରାଣବୀଣା ।

କବି ଚିରଦିନ ପ୍ରଳୟ ଭିତରେ ମଳୟର ସନ୍ଧାନ କରୁଥାଏ । ଭାଙ୍ଗିଯାଇଥିବା ସଂପର୍କର ଲତାକୁ ଆତ୍ମୀୟତାର ରଂଜା ଦେଇ ଉପରକୁ ଟେକିନିଏ । ସେଥିପାଇଁ ତ ସେ କହନ୍ତି -

ଭାଙ୍ଗିପଡୁଥିବା ନୀଳ ତରଙ୍ଗକୁ ଯୋଡ଼ି ଦେଲେ ଜଳଧାରା
ଅନ୍ଧାର ଆଲୁଅ ଏକାଠି ଯେଉଁଠି ସେଇ ଏଇ ବସୁନ୍ଧରା ।

ଏ ବସୁନ୍ଧରା କବିପାଇଁ ଆତ୍ମୀୟତାର ସୁବାସରେ ଭରା । ଏଠି ଝରୁଚରଣା ବର୍ଷା ଅଛି, ଅଛି ବାସନ୍ତୀ ଗୀତିର ଶୁଭ ଅଭିଳାଷ, ସୁଦିନର ଅବତରଣ ପାଇଁ ମାଟି ଅଛି, ଅଛନ୍ତି ନଦୀ ସାଗର, ଲତାପତ୍ର, ନୌକାଜଳ, ଫଗୁଣଶ୍ରାବଣ, ତା' ସହିତ ଲାଜୁଆସକାଳ, ଦୂବଘାସ, ସୋମଫୁଲ, ଅଶିଣର ମେଘ, ଗୋଧୂଳିର ତାରା, ହେନା ମଲ୍ଲୀ ଓ ନୀଡ଼ଫେରା ପକ୍ଷୀ । ଏ ସମସ୍ତେ ମିଶି କବିଚିତ୍ତକୁ ଏକ ଅପୂର୍ବ ତନ୍ମୟତାରେ ଭରି ଦିଅନ୍ତି ଯେଉଁଠି ଅଶ୍ୱସ୍ତିର ଛାଇପଡ଼େନି । ମନେହୁଏ ସବୁକିଛି ଶାନ୍ତ ସମାହିତ ।

କବି ପ୍ରଫେସର ଶରତ ଚନ୍ଦ୍ର ରଥଙ୍କର ଦୁଇଟି ଗୀତିର ସ୍ୱତନ୍ତ୍ର ଉଲ୍ଲେଖ ଲୋଡ଼ା । ପ୍ରଥମଟି 'ମାଆ' ଯେଉଁଠି ସେ ଦିବ୍ୟଜନନୀ ଶ୍ରୀମାଙ୍କୁ ପୁଣ୍ୟ ତରଙ୍ଗିଣୀ, ପତିତପାବନୀ ଭାବେ ସମ୍ବୋଧନ କରିଛନ୍ତି । ଦୁନିଆଁରେ ସବୁ କାଚ ହେଲେ ସେହି ଜନନୀ ଏକା 'ହୀରା' ଭଳି ଉଜ୍ଜ୍ୱଳ ଯେ ସମଗ୍ର ଜୀବନ ଖାଲି ଆଶିଷ ଦେଇ ଚାଲିଛନ୍ତି । ଅନ୍ୟ କବିତାଟି ହେଉଛି 'ଅନୁରାଗ' । ଏହି କବିତାରେ ଶରତକାଳୀନ ଦୁର୍ଗାପୂଜାର ଦଶଭୂଜା ମୂର୍ତ୍ତିର କଥା କୁହାଯାଇଛି । ସେଠି ଜନନୀଙ୍କ ଆଗମନପାଇଁ କାଶତଣ୍ଡୀ ଆଲଟ ଚାମର ଢାଳୁଛି । ଫାଟିଯାଇଥିବା ଆକାଶର ଛାତିକୁ ଆଉଁଷି ଦେବାକୁ ଶରତ ଆସିଛି । ଏ ଦଶଭୂଜାଙ୍କ ବର୍ଣ୍ଣନାରେ -

"ମାଆ ଦଶଭୂଜା ଦେବୀ ମନୋରମା କଇଁଫୁଲେ ଫୁଲେ ପାଦକୁ ଥାପି
ଆସିଛନ୍ତି ଏଇ ମରତେ ଓହ୍ଲାଇ ନାଶିବେ ଅସୁର ତୋଷିବେ ତପୀ ।"

କବି ଶ୍ରୀଯୁକ୍ତ ରଥ ଓଡ଼ିଆ ସାହିତ୍ୟରେ ଅବଗାହୀ । ତାଙ୍କ ରଚନା ଭିତରକୁ ଆମ ପରଂପରାର ରଙ୍ଗ ଓ ସୁବାସ ଆସିବା ସ୍ୱାଭାବିକ । ଯେମିତି 'ପରାଣ କୁଞ୍ଜରେ ନବକିଶଳୟ' ଆମକୁ ଯାତ୍ରାସଂଗୀତର (ବୈକୁଣ୍ଠ ନାଥ) 'ପରାଣ କୁଞ୍ଜେ ମୋ ତା'ର ମୁରଲୀ ଧ୍ୱନି / ପରାଣ ପବନେ ମୋ ତା' ଶୁଭ ଆବାହନୀ' ମନେ ପକାଇଦିଏ ସେମିତି 'ବନରାଜି ଲୀଳା' ଭିତରେ ଦିଶେ ରାଧାମୋହନଙ୍କ ମୁହଁ । ଆଉ 'ଛଣା ସୁଧା' ଭିତରେ ଦିଶନ୍ତି ବୈଷ୍ଣବ କବିଗଣ । ଆଶା ପଲଙ୍କର ଭାଷା ଆମକୁ 'ଆହା ମୋ ଜୀବନ ଧନୀ ଜୀବନେ କି ଥିବରେ' ମନେ ପକାଇଦିଏ । 'ଅପରାଜିତାର ନୀଳରଂଗ ଘେରେ' ନେଇଯାଏ 'ଚିଲିକା' ପାଖକୁ ଯେଉଁଠି ରାଧାନାଥ ଲେଖନ୍ତି 'ଅପରାଜିତାର ନୀଳିମା ତସ୍କର / ଦୂରେ ରାଜେ

ଗିରିରାଜ ମନୋହର' । ନୀଳକଇଁ, ଅଶୋକ, ନବମଲ୍ଲିକା, ପଦ୍ମ ଓ ଆମ୍ରବଉଳ ପ୍ରଭୃତି କାମଦେବର ପଞ୍ଚଶର ମଧ୍ୟ ଆମକୁ ରୀତିକବିଙ୍କ କାବ୍ୟ ନିକେତନକୁ ହାତଧରି ନେଇଯାଏ ।

କବି ଯେଉଁଠି ନିଜସ୍ୱ ଢଙ୍ଗରେ ନୂଆ ଭାବରେ ବାକ୍ୟ ପ୍ରୟୋଗ କରିଛନ୍ତି ସେସବୁ ବେଶ୍ ଭାବଦ୍ୟୋତକ । ଯେମିତି ପଣିକିଆ ଘୋଷା ସୁନାପିଲା, ପବନ ଝୁଲଣା, ଝିରିଝିରି ଜୋଛନା, ଝୁମାଝୁମା ମଧୁଜହ୍ନ ପ୍ରଭୃତି ।

ଗୀତିକବିତା ଜଗତରେ ଆଜି ବେଶ୍ ଉତ୍ସାହ ଓ ଉଦ୍ଦୀପନା କାରଣ କ୍ଷୁଦ୍ର ମଧ୍ୟରେ ବିରାଟର ଉପଲବ୍ଧି ହିଁ ଏହାର ମୂଳକଥା । କବି ଶ୍ରୀଯୁକ୍ତ ରଥ ସେହି ଧାରାରେ ନିଜପାଇଁ ତିଆରି କରିଛନ୍ତି କ୍ରମଆଲୋକିତ ଏକ ଦିବ୍ୟପଥ । ତେଣୁ ତାଙ୍କୁ ଶୁଭିଛି – 'ଛନ୍ଦ କବିତାର ଅନୁବନ୍ଧେ ଶୁଭେ ଭରସାର ଶୁଭଶଂଖ' । ନୈରାଶ୍ୟର ଅନ୍ଧାରରେ ଭରସାର ଶୁଭଶଂଖ ଶୁଭିବା ହିଁ ଉଷାକାଳର ସଂକେତ ଦିଏ । ହୁଏତ ଅନ୍ତହୀନ ପ୍ରତୀକ୍ଷାର ଶେଷ ହେବ । ଫଗୁଣ ପାଇଁ ତାଙ୍କର ଅପେକ୍ଷା ଫଳବତୀ ହେବ । ସ୍ମୃତିବୀଣା ତାଳରେ ବାଜୁଥିବା ଅନାହତ ସ୍ୱର ଶୁଣି କବି ଓ କବିତାକୁ ଶ୍ରଦ୍ଧା କରୁଥିବା ସକଳ ଅନୁରାଗୀ ମଣିଷ ପୁଲକିତ ହେବେ । ଆମ ଭାଷା ଓ ସାହିତ୍ୟ ରାଜ୍ୟରେ ନୂତନ ସ୍ୱର ଶୁଭିବ, ଯାହା କେବଳ ଆଗ୍ରହୀ କରିବ ନାହିଁ; ଉଚ୍ଚାଟ କରିବ ଓ ନୂତନ ଉପଲବ୍ଧି ଦେଇ ଜୀବନକୁ ନୂତନ ଦୀପ୍ତି ପ୍ରଦାନ କରିବ । ଏହି ନୂତନ ଗୀତିକବିତା ସଂକଳନଟି ପାଠକୀୟ ଶ୍ରଦ୍ଧା ଅର୍ଜନ କରିବ, ଏହି ବିଶ୍ୱାସ ମୋର ରହିଛି ।

ପ୍ରାକ୍ତନ ପ୍ରଫେସର, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର

# ଭବ୍ୟ ମୁହୂର୍ତ୍ତର ଅପେକ୍ଷାରେ

## ରମେଶ ଦାସ

ମନୁଷ୍ୟ ଭିତରେ ଅହେତୁକ ଅଭୀପ୍ସା କାହିଁକି ଉଦୟ ହୁଏ କିଏ କହିବ, କିନ୍ତୁ ଥରେ ତା'ର ପଦପାତ ଶୁଭିଗଲେ ସେ ହୁଏ ଆତ୍ମହରା। ନିରଙ୍କୁଶ, ନିରାମୟ ଭାବର ପୁଷ୍ପ ମୁକୁଳିତ ହେଉହେଉ ତା' ଭିତରେ ସୁଗନ୍ଧ ସତେ ଯେମିତି ତୁହାକୁ ତୁହା ଆହ୍ଲାଦିତ କରିବାର ସଂକଳ୍ପ ନେଇଯାଏ। ଆତ୍ମସତ୍ତା ପ୍ରସାରିତ ହୋଇ ଅନନ୍ତର ପ୍ରତ୍ୟେକ ଅଣୁକୁ ସ୍ପର୍ଶ କରି ମୂର୍ଚ୍ଛନାମୟ କରିଦିଏ ଭାବୋଚ୍ଛ୍ୱାସକୁ।

ହୁଏତ ସେଇ ଉଦ୍‌ବେଳନ କେତେବେଳେ ତାକୁ ରହସ୍ୟମୟ ଜଗତର ସ୍ପର୍ଶ ପାଇଁ ଆତୁର କରିଥାଏ ତ କେତେବେଳେ ତାକୁ ମହାଜାଗତିକ ଚେତନାର ଅମୃତକୁ ପାନ କରିବା ପାଇଁ ଉନ୍ମୁଖ କରିଥାଏ। ସେତେବେଳେ ସେ ଅଜ୍ଞାତରେ ହୋଇଯାଏ ଋଷିଟିଏ କବି ରୂପରେ। ଶବ୍ଦ ସବୁ ଅନାବିଳ ଭାବରେ ଝରିପଡ଼େ ସହସ୍ରାରୁ । ସେଇ ସତ୍ତା କବିକୁ ଭାବମୟ କରେ କି କବି ଋଷିର ପ୍ରଜ୍ଞାଲୋକରେ ଆଲୋକିତ ହୋଇଉଠେ, ଏହା ବିଶ୍ଳେଷଣର ଅପେକ୍ଷା ରଖେନା। କିନ୍ତୁ ସୂକ୍ଷ୍ମ ଜଗତରେ ଯେଉଁ ବିସ୍ଫୋରଣ ହୁଏ ତାହାକୁ ଏକ ଆତ୍ମିକ ସୌନ୍ଦର୍ଯ୍ୟର ପରିଭାଷା ଭିତରେ ବନ୍ଦୀ କରିବା ସହଜସାଧ୍ୟ ନୁହେଁ ।

କବିର ସନ୍ଧାନୀ ଦୃଷ୍ଟି ଅନ୍ତଃକରଣର ଆବେଗଧର୍ମିତାକୁ ସାଥୀ କରି ରହସ୍ୟର ଉତ୍ସ ଖୋଜିବାରେ ଆଗଭର ହୁଏ ଏବଂ ସମ୍ଭାବ୍ୟ ସମ୍ଭାବନା ସହିତ ଯୋଗସୂତ୍ର ରକ୍ଷାକରେ। ତାହାକୁ ଯେଉଁ ନାମରେ ନାମିତ କରାଯାଉନା କାହିଁକି ବହିଃପ୍ରକୃତି ଭିତରେ ମଗ୍ନ ଚୈତନ୍ୟକୁ ଆବିଷ୍କାର କରିବାର ନିଶା ହିଁ କବିକୁ ସନ୍ଧାନୀ, ଦ୍ରଷ୍ଟା ଭାବରେ ପ୍ରତିପାଦନ କରିଥାଏ ।

ସେହି ପ୍ରେକ୍ଷାପଟରେ ଅନୁଶୀଳନ କଲେ କବି ଶରତ ଚନ୍ଦ୍ର ରଥଙ୍କ କବିତାଗୁଡ଼ିକରେ କେବଳ ଆବେଗ ନୁହେଁ, ତାଙ୍କ ଉଚ୍ଛ୍ୱାସମୟ ସତ୍ତାଟି ମଧ୍ୟ ସହଜରେ ବାରି ହୋଇପଡ଼େ । ବିସ୍ତାରିତ ପ୍ରକୃତିର ଅଙ୍ଗଲତା ଭିତରେ ସେ ସାକ୍ଷାତ କରିବାକୁ ଚାହିଛନ୍ତି ତାଙ୍କର ପ୍ରିୟତମ ଇପ୍ସିତ ଆକାଂକ୍ଷାକୁ । କିନ୍ତୁ ବାସ୍ତବରେ ତାହା କେବଳ ଅଭୀପ୍ସାର ଝଲକଟିଏ ହୋଇ ରହିଯାଇଛି ମାନସଭୂମିରେ । କିନ୍ତୁ ଉଚ୍ଛ୍ୱାସର ପ୍ରତିବିମ୍ବ ପ୍ରତି ନିସ୍ପୃହ ନହୋଇ ବରଂ କବି ଅପେକ୍ଷା କରିଛନ୍ତି ସେଇ ରହସ୍ୟମୟ ଦିବ୍ୟସମ୍ଭୋଗ ପାଇଁ ।

କବିଙ୍କ ଶବ୍ଦ ତାରୁଣ୍ୟକୁ ଅନୁଭବ କରିହୁଏ ଯେତେବେଳେ ସେ ନିଜକୁ ଅନୁରାଗର ରଙ୍ଗରେ ରଙ୍ଗେଇ ଦିଅନ୍ତି । ତାଙ୍କର ଭାବର ସମ୍ବେଦନା ଶବ୍ଦର ପ୍ରତ୍ୟେକ ତନ୍ତ୍ରୀରେ ଝଙ୍କୃତ ହୋଇଉଠେ । ତାଙ୍କୁ ଲାଗେ କେହି ଜଣେ ଯେମିତି ଅଦୃଶ୍ୟ ଭାବରେ ତାଙ୍କ ସହିତ ସମ୍ବନ୍ଧ ଯୋଡ଼ି ଦେଇଛି । ସେଇ ସମ୍ବନ୍ଧର ଆକାର୍ଷଣ ବାରମ୍ବାର ତାଙ୍କୁ ଆନମନା କରିଦେଉଛି । ତାଙ୍କର ସସ୍ନେହ ସ୍ପର୍ଶ ପାଇବା ପାଇଁ ସେ ଆତ୍ମବିଭୋର ହୋଇ ଅପେକ୍ଷା କରିଛନ୍ତି । ନିଜର ପରିପାର୍ଶ୍ୱରେ ସେହି ମୂର୍ଚ୍ଛନା, ଶିହରଣ ବାରମ୍ବାର ତାଙ୍କର ଉପସ୍ଥିତି ବିଷୟରେ ସଚେତନ କରୁଥିଲେ ମଧ୍ୟ, ଅଦୃଶ୍ୟ ଇଙ୍ଗିତ ଦେବାର ଉପକ୍ରମ କଲାଭଳି ମନେ ହେଉଥିଲେ

ମଧ୍ୟ, କବିଙ୍କ ହୃଦୟ ଅଭ୍ୟନ୍ତରରେ ଏକ ଦିବ୍ୟ ଅତୃପ୍ତି ତାଙ୍କୁ ପରିପୂର୍ଣ୍ଣ ସନ୍ତୋଷ ଦେଇପାରୁନି । ଯାହାକୁ ସେ ଅନୁଭବିଛନ୍ତି ତାଙ୍କୁ ସେ ସ୍ୱଚକ୍ଷୁରେ ଦେଖିପାରୁନାହାନ୍ତି । ତଥାପି ସେ ଆଶାବାଦୀ । ସଦେହରେ ନ ହେଲେ ବି ମିଳନର ଦୁର୍ବାର ସଂକଳ୍ପ ତାଙ୍କୁ ସେଇ ଆଭାସ ଦେବାରେ କେବେ ବି ଦିଗହରା କରିପାରିନାହିଁ ।

'ଦେଖା ପାଇବି କି ନାହିଁ ଏବେ ବି ଜାଣିନି ।
ଦେଖା ପାଇବାର ଆଶା କେବେ ବି ଛାଡ଼ିନି ।।' - (ମୁଁ ଖୋଜିଯିବି)

ସାନ୍ନିଧ୍ୟର ଅମୃତ ଲଗ୍ନ ପ୍ରତି କବିମାନସରେ ଏହିଭଳି ଉଦ୍‌ବେଳନକୁ ଅନେକଥର ଭେଟିହୁଏ କବିତାର ବିଭିନ୍ନ ପଙ୍‌କ୍ତିରେ । ଛନ୍ଦ ଓ ଲୟର ଯୁଗଳବନ୍ଦୀ ତାଙ୍କ ଗୀତିକବିତାର ମର୍ମବାଣୀକୁ ମୂର୍ଚ୍ଛନାମୟ କରିଦେଇଛି । ବେଳେ ବେଳେ ଗୀତାଞ୍ଜଳିର ନିଷ୍କପଟ ଭାବାବେଗ ଆଡ଼କୁ ଟାଣିନେଇଛି ପାଠକୀୟ ଚେତନାକୁ । ରବୀନ୍ଦ୍ରନାଥଙ୍କ ହାର୍ଦ୍ଦିକ ଭାବୋଚ୍ଛ୍ୱାସର ଦୃପ୍ତ-ମଧୁର ଶୁଦ୍ଧ ଅଭିବ୍ୟକ୍ତି ସ୍ମରଣକୁ ଆସିଯାଇଛି ଏଇ କବିତାର ପଙ୍‌କ୍ତିରେ ଅବଗାହନ କଲାବେଳେ :

ସବୁଜ ବନାନୀ ଫାଙ୍କେ ଫାଙ୍କେ ତୁମେ ଆଲୋକର ଆଭୂଷଣ ।
ବନ ଝରଣାର ଧାରେ ଧାରେ ତୁମେ ପବନର ଶିହରଣ । - (ଦିବ୍ୟଶାନ୍ତି)

ଅଥବା

ଆକାଶ ଯେଉଁଠି ମାଟିକୁ ଛୁଇଁଛି ସେଇଠି ତୁମରି ଦେଖା
ନୀଳ ସାଗରର ନୀଳିମା ଭିତରେ କେତେ ତୁମ ନାମ ଲେଖା । -(ମାଦକତା)

ଶରତ ଚନ୍ଦ୍ର ରଥଙ୍କ ଅନ୍ୟାନ୍ୟ ଗୀତିଗ୍ରନ୍ଥ ଅପେକ୍ଷା ଏଥିରେ କିଛି ନିଆରାପଣ ଅନୁଭବ କରିହୁଏ । ଯଥାର୍ଥରେ ଗୀତକବିତା ଜଗତରେ ଏହା ଏକ ସୁଲଳିତ ଅଧ୍ୟାୟ ।

କବି, ନାଟ୍ୟକାର, କଥାକାର
ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ
ଭୁବନେଶ୍ୱର

# 'ତୁମେ ଓ ମୁଁ' ପାଇଁ ପଦେ

## ଡକ୍ଟର ତୁଳସୀ ଓଝା

କବିର ମନ ଏକ ନିଆରା ଯାନ । କେତେବେଳେ କବିଙ୍କୁ କେଉଁଠିକି ବହି ନିଏ ନିଜେ କବିଟିଏ ମଧ୍ୟ ଜାଣେନା । କବିର କଳ୍ପନା ଉଡ଼ନ୍ତା ଇଗଲର ଡେଣାପରି କେତେବେଳେ ମାଟିକୁ ଛୁଏଁ ତ କେତେବେଳେ ଆକାଶକୁ – ଟୋପାଟୋପା କାକର କଣାରେ କେବେ ସିକ୍ତ ହୁଏତ କେବେ ମେଘ ସାଙ୍ଗରେ ଉଡୁଉଡୁ ବିଦ୍ୟୁତ୍‌ର ଆଘାତରେ ଭୂତଳଶାୟୀ ହୋଇ ଭଗ୍ନ ଡେଣାନେଇ ଅଶେଷ ଯନ୍ତ୍ରଣା ଭୋଗକରେ । ଆଉ ସେଇ ଯନ୍ତ୍ରଣାରୁ ସାଉଁଟେ ଅସୁମାରୀ ସପନର ଫୁଲ । ଯନ୍ତ୍ରଣାରୁ ଆନନ୍ଦ ପୁଣି ଆନନ୍ଦରୁ ଯନ୍ତ୍ରଣା ଭିତରେ ନିତ୍ୟ ଘୂରିବୁଲୁଥାଏ କବିର ଚିର ସବୁଜ ମନ । ସବୁ ଜଣା, ସବୁ ଅଜଣାର ଏକ ନୀରବ ନଗରୀ ଭିତରେ ନିଜକୁ ବନ୍ଦୀକରି ସବୁ ନିଃଶବ୍ଦ ମୁଖରତାର ସଂଗୀତ ସେ ଶୁଣୁଥାଏ । କବିର ଏ ଅବୁଝା ମନର ଝଙ୍କାର ବେଳେବେଳେ ଐକ୍ୟତାନ ତୋଳେ କବିତାର ପଦ ଓ ପଙ୍‌କ୍ତି ଭିତରେ । ସବୁ ଘାସ ଦୂବ ନୁହେଁ, ସବୁ ନଦୀ ବି ନୁହେଁ ମନ୍ଦାକିନୀ, ସବୁ ଶିଳା ଶାଳଗ୍ରାମ ନୁହେଁ କି ସବୁଫୁଲ ନୁହେଁ କମଳିନୀ ତଥାପି କବିର ମନଟିଏ ଖୋଜିନିଏ ସବୁ ଘାସରେ ଦୂବର ସଂକଳ୍ପକୁ, ସବୁ ନଦୀରେ ମନ୍ଦାକିନୀର ପବିତ୍ରତାକୁ, ସବୁ ଶିଳାରେ ଶାଳଗ୍ରାମର ମହନୀୟତାକୁ ଓ ସବୁଫୁଲରେ କମଳିନୀର ସୁଗନ୍ଧକୁ । କବିର ଏ କଳ୍ପନା ଭରା ଓ ସ୍ୱପ୍ନଘେରା ପୃଥିବୀର କଥା ବିଚ୍ଛୁରିତ ହୋଇ ପଡ଼ିଛି କବି ଶରତ ଚନ୍ଦ୍ର ରଥଙ୍କ ଗୀତିକବିତା ସଂକଳନ 'ତୁମେ ଓ ମୁଁ'ର ପଙ୍‌କ୍ତି ମଧ୍ୟରେ । ଏକ ଅଭୂତପୂର୍ବ ଆଧିଭୌତିକ ପୃଥିବୀରେ କବି ଗଢ଼ିଛନ୍ତି ନିଜର କାବ୍ୟ କୋଣାର୍କ । ଯାହାକିଛି ଏ ଦୃଶ୍ୟମାନ ପୃଥିବୀରେ ରହିଛି ତାକୁ ପ୍ରାଣଭରି ଭଲପାଇଛନ୍ତି କବି । ଦୃଶ୍ୟମାନ ପୃଥିବୀର ସଜଳ ଛାୟା କବି ଶ୍ରୀଯୁକ୍ତ ରଥଙ୍କୁ ତନ୍ମୟ କରି ରଖିଛି ଯାହାର ପରିପ୍ରକାଶ ତାଙ୍କ କବିତାର ପ୍ରତ୍ୟେକ ଛତ୍ରରେ ପ୍ରତିଫଳିତ ହୋଇଛି –

"ଅଶିଣର ଧଳା ତୁଳା ମେଘ ମୁହିଁ ତୁମେ ଗଗନର ତାରା
ଧାଇଁଛି ତୁମକୁ ଛୁଇଁବା ପାଇଁକି ସଂଜରୁ ସକାଳ ପରା ।

x x x

"ସକାଳ ଶିଶିର ଭିଜା ତନିମାରେ ଅପରାଜିତାର ହସ
ବେଳେବେଳେ ମୋତେ ହାତ ଠାରି ଡାକେ ଆଲୋକିତ ଦଶ ଦିଶ"

x x x

"ନୀଳ ଆକାଶର ଚାନ୍ଦ ଆଇନାରେ ତୁମ ମୁହଁ ମୋତେ ଦିଶେ
ସ୍ମୃତି ଓ ସ୍ୱପ୍ନର ରୂପା ସିଲଟରେ ଜୀବନର ଛବି ଭାସେ ।"

ଅଥଚ ଏ ପୃଥିବୀର ମୋହିନୀ ମାୟାରେ କବି ସମ୍ପୂର୍ଣ୍ଣ ରୂପେ ନିଜକୁ ବନ୍ଦୀ କରିପାରି ନାହାନ୍ତି । ଲକ୍ଷ୍ୟ ତାଙ୍କର ମୋହିନୀ ହାତରେ ଥିବା ଅମୃତ କଳସ । ତେଣୁ ଯାହା ସେ ଦେଖିଛନ୍ତି ତା'ର ଉର୍ଦ୍ଧ୍ୱରେ ହିଁ ସେ ଆଉ କିଛି ଅନୁଭବ କରିଛନ୍ତି ଓ କରିବାକୁ ଚାହିଁଛନ୍ତି । କାରଣ ଏ ଚାହିଁବା ହିଁ କବିଙ୍କର ସ୍ୱତନ୍ତ୍ରତା ଓ କବିତ୍ୱର ଅନୁପମ ବର୍ଣ୍ଣବିଭା । ଦୃଶ୍ୟମାନ ପୃଥିବୀର ପଟ ବାରମ୍ବାର ପରିବର୍ତ୍ତିତ ହୁଏ । କେବେ ବର୍ଷା ଧୋଇନିଏ ତ  କେବେ ଖରା ଶୁଖାଇଦିଏ - କେବେ ବସନ୍ତ ରଙ୍ଗେଇ ଦିଏ ତ କେବେ ଶୀତ ଛଡ଼େଇ ନିଏ । କିନ୍ତୁ ଅଦୃଶ୍ୟ ଜଗତର ଛିଟା ମନ ଭିତରେ ରହିଯାଏ ସବୁକାଳ ପାଇଁ ।

'ବୟସ ବରଷା ଧୋଇନେଇଯାଏ        ସପନର କେତେ ଝୋଟି
ଧୋଇ ହୁଏ ନାହିଁ ଚଉଁରା ମୂଳର        ଲିପା ପୋଛା ରଙ୍ଗମାଟି ।'

x x x

'ତୁମକୁ ମୁଁ ଖୋଜିଯିବି ତାରାରେ ତାରାରେ ।
ନୀହାରିକା ଧାରେ ଧାରେ ନୀଳ ଆକାଶରେ ।'

ଏକ ଅଶରୀରୀ ନାୟିକା ଓ ଅସରନ୍ତି ଲୋଡ଼ିବା ପଣ ହିଁ କବିଙ୍କ ମନର ଠିକଣା ନିଏ, ପ୍ରାପ୍ତିଠାରୁ କଳ୍ପନା  ଯେ କବିଙ୍କୁ ବେଶୀ ସଂଚରଣଶୀଳ କରେ, କବିଙ୍କ କବିତାକୁ ଅନୁଧ୍ୟାନ କଲେ ତାହା ସହଜରେ ଜଣାପଡ଼େ । କଳ୍ପନାର ଚରମ ଭୂମିରେ କବିଙ୍କ ପଦପାତ ଯେପରି ସ୍ପଷ୍ଟ ସେହିପରି ଜଣେ ଅନୁଭୂତି ସମ୍ପନ୍ନ ମଣିଷର ଅନ୍ତରୀଣ ଭାବକୁ ପ୍ରକାଶ କରିବାରେ କବିଙ୍କ ଲେଖନୀ ସେହିପରି ଦକ୍ଷ । ଗୀତିକବିତାର ଯେଉଁ ସାଧାରଣ ଧର୍ମମାନ ନିର୍ଣ୍ଣିତ ହୋଇଛି, ସେଥିରେ ଜଣେ କବିର ଭାବ ସମ୍ପଦ ଓ କଳ୍ପନା ଶକ୍ତି ଠାରୁ ତାର ଅଭିବ୍ୟଞ୍ଜନା ଅଧିକ ଗୁରୁତ୍ୱ ରଖେ ।  କବି ଭାବର ଭାଷ୍ୟକାର, କଳ୍ପନାର ରୂପକାର, ସ୍ୱପ୍ନର କଥାକାର ତେଣୁ ତାର କବିତାର ଭାଷାରେ ଭାବ ସଂବାହକ ଶକ୍ତି ସବୁଠାରୁ ଅଧିକ ରହିବା ବିଧେୟ । ଛନ୍ଦଚର୍ଯ୍ୟା, ଯତିପାତ, ଗୀତିମୟତା ଆଦି ଗୀତିକବିତାକୁ ଅନ୍ୟ ସମସ୍ତ ସୃଷ୍ଟି ଠାରୁ ସ୍ୱତନ୍ତ୍ର କରିଥାଏ । ସେ ଦୃଷ୍ଟିରୁ କେଉଁ କବି କେତେ ସଫଳ, ତାହା ତା'ର ସୃଷ୍ଟି ହିଁ ନିର୍ଦ୍ଧାରଣ କରିଥାଏ । ଏ ଦୃଷ୍ଟିରୁ ଡଃ. ରଥଙ୍କ କବିତା ଆକଳନରେ ନିରାଶ ହେବାକୁ ପଡ଼େନାହିଁ । ତାଙ୍କର ଗୀତିକବିତା ଗୁଡ଼ିକ ଯଥାର୍ଥରେ ତାଙ୍କ ଭାବ ସଂପଦକୁ ବହନ କରିବାରେ ସମର୍ଥ । ଏହାବ୍ୟତୀତ ପଦ ସଂଯୋଜନା ରୀତି ଅତ୍ୟନ୍ତ ଚମକପ୍ରଦ ।

ଏଇ ଯେପରି 'ଛାଇ ଆଲୁଅରେ ଲୁଚକାଳି ଖେଳେ ଚହଲା ଚହଲା ନଈ' 'ସ୍ମୃତି ତୁମେ କେତେ ଚହଲା ଛାଇର ଜ୍ୟାମିତିକ ରଙ୍ଗରେଖା', 'ବାରି ଅଗଣାର ତରୁଛାଇ ତୁମେ ନିଜେ ନିଜ ପ୍ରିୟ ସଖା', 'ଆପଣା ପଣର ନୀଳଜହ୍ନ ତୁମେ', 'ବିଜନ ବନର ଚହଲା ଛାଇରେ ତୁମେ ଭରା ଶୀତଳତା', 'ମନର କଳସୀ ପଡ଼ିବ ଉଛୁଳି ଫୁଟିବ ପାହାନ୍ତି ତାରା', 'ଅଳସୀ ନଦୀର ବେଣୀରେ ଗୁନ୍ଥା ମୋ ସପନର ଶୁଭସ୍ମୃତି', 'ଝରାପତରର ପାଉଁଜିରେ ବାଜେ ଲାଜଭିଜା ସ୍ମୃତିସୁର', ପୁଣି

'ଭାବନା ବିଳାସ, ଭଂଗା ଅଳସରେ
ଭରିଦିଏ କିଏ ମନ କଳସରେ

ଭାରି ଭଲ ଲାଗେ ଶୁଣିବା ପାଇଁ କି
ତା' ପାଦ ଶବଦ ଧୀର'

x x x

କିଛି ଶୋଷ ଆଉ କିଛି ଅବସୋସ
ମଝିରେ ଦୂରତା କେତେ
ସବୁ ଭାଜକରେ ଭାଗଫଳ ପରେ
ଭାଗଶେଷ ରହେ ଯେତେ ।
ଭାବନା ବାଙ୍କରେ ଭାବର ଲହରୀ
ପଡୁଥାଏ ଖାଲି ଝୁଣ୍ଟି ।'

ସମେତ ବହୁତ ପଂକ୍ତି ମଧରେ କବିଙ୍କର ଚମତ୍କାରୀ ଶବ୍ଦ ସଂଯୋଜନା, ରୀତି ଓ ଭାବ ସଂବାହକ ଶକ୍ତିର ପରିଚୟ ମିଳେ । ଭାବ ସହିତ ଭାଷାର ଏ ନିବିଡ଼ ମିଳନ ହିଁ କବିଙ୍କ କୃତିତ୍ୱକୁ ଏକ ଉଚ୍ଚତମ ଉଚ୍ଚତାରେ ପହଞ୍ଚାଇବା ନିମିତ୍ତ ସମର୍ଥ ହୋଇଛି । ନିଜକୁ ଅତିକ୍ରମ କରି କଳ୍ପନାର ପାହାଡ଼ ଚଢ଼ି କବି ଯେଉଁ ପ୍ରଣୟ ପ୍ରତିମା ପାଖରେ ନିଜକୁ ବ୍ୟକ୍ତ କରିଛନ୍ତି ତାହା ପ୍ରତ୍ୟେକ ସମ୍ବେଦନଶୀଳ ପାଠକ ଓ ଶ୍ରୋତା ମନକୁ ଛୁଇଁବ, ଏଥିରେ କୌଣସି ଦ୍ୱିରୁକ୍ତି ନାହିଁ । ଆଦ୍ୟ ଆଷାଢ଼ରେ ରାମଗିରିରୁ ଅଳକାପୁରୀ ଯାତ୍ରା କବିଙ୍କର ସଫଳ ହେଉ ।

ସୁଲେଖିକା, କବି
ପୁରୀ

# ଅଭିମତ (ପ୍ରତିଧ୍ୱନି)

## ରମେଶ ଦାସ

'ପ୍ରତିଧ୍ୱନି'ର କବିତା ସ୍ତବକରେ ଯେତିକି ଫୁଲର ସମାହାର ହୋଇଛି, ସେ ସବୁଥିରେ ଏକ ସ୍ୱାଭାବିକ ମହକ ରହିଛି । ସେଇ ମହକ ଭିତରେ ଭରି ରହିଛି ମାଦକତା, ବିଭୋର କରିଦେବା ଭଳି ଏକ ମହୁଲି ନିଶା । 'ପ୍ରତିଧ୍ୱନି'ରେ କବିତା ସୁନ୍ଦରୀ କେବଳ ଅଳଂକାର ପିନ୍ଧି ସୁନ୍ଦରୀ ହୋଇ ନାହାନ୍ତି ବରଂ ଭାବର ମୂର୍ଚ୍ଛନା ଫୁଟିପଡ଼ିଛି ତାଙ୍କର ହୃଦୟ କନ୍ଦରରୁ । ସେଇ ମୂର୍ଚ୍ଛନାର ପ୍ରତିଧ୍ୱନିରେ ପ୍ରତିଧ୍ୱନିତ ହୋଇଛି କବିତାର ପ୍ରତ୍ୟେକ ପଙ୍‌କ୍ତି, ପ୍ରତ୍ୟେକ ପୃଷ୍ଠା । 'କୁଆଁତାରା' 'ନୀଳକଇଁ', 'ରଜନୀଗନ୍ଧା', 'ଧ୍ରୁବତାରା', 'ମଧୁଜ୍ୟୋସ୍ନା' ସମସ୍ତେ ନିଜକୁ ମୁକୁଳା କରିଦେବାକୁ ଚାହିଁଛନ୍ତି, ମୁକୁଳିତ କରିଦେଇଛନ୍ତି ମଧ୍ୟ । ଯେତେବେଳେ ଶବ୍ଦ ହୃଦୟ କନ୍ଦରରୁ ଝରିଆସେ, କଣ୍ଠରେ ବସାବାନ୍ଧେ, ସେତେବେଳେ ବସାରୁ ବାୟା ଚଢ଼େଇ ଉଡ଼ିଗଲା ଭଳି ସେଥିରୁ ମୂର୍ଚ୍ଛନାର ବିଜୁଳି ଚମକି ଉଠେ, କରିଦିଏ ଦୀପ୍ତିମାନ, କରିଦିଏ ଝଙ୍କୃତ କୋଟିଏ ପ୍ରାଣର ବିସ୍ତୀର୍ଣ୍ଣ ଇଲାକାକୁ । ସେଇଥିରେ ହୁଏ ଜୀବନର ଅଭିଷେକ, ଜୀଇଁ ରହିବାର ବାସ୍ତବିକତା ତଦ୍ୱାରା ଅଭିନନ୍ଦିତ ହୋଇଥାଏ ।

'ପ୍ରତିଧ୍ୱନି'ର ଅଧିକାଂଶ କବିତାରେ ପ୍ରକୃତି ସହିତ ଅନ୍ତରଙ୍ଗତାକୁ ମାନବୀୟ ଉଚ୍ଛ୍ୱାସରେ ନିରାଜନା କରିବା ନିମିତ୍ତପୂର୍ଣ୍ଣ ପ୍ରୟାସ କରାଯାଇଛି । ଏଥିରେ ପୁନଶ୍ଚ ଏଇ ପ୍ରକୃତି କେବଳ ଦୃଶ୍ୟମୟୀ ହୋଇ ହାସ-ଲାସ୍ୟମୟୀ ଶାନ୍ତ-କାନ୍ତ ବା ରୁଦ୍ର-ଗମ୍ଭୀର ହୋଇ ରହିଯାଇନି, ବରଂ ସିଏ ଉଦ୍‌ଭାସିତ କରିଦେଇଛି ଅନ୍ତର୍ଜଗତକୁ, ଉର୍ଦ୍ଧ୍ୱାୟିତ କରିଦେଇଛି ଚେତନାର ଦିଗଦିଗନ୍ତକୁ । ସିଏ ସତ୍ୟ-ଶିବ-ସୁନ୍ଦରର ସ୍ୱାଗତିକା ଗାନ କରିଛି -

> ''ତୁମେ ଆନନ୍ଦର ସ୍ନିଗ୍ଧ ସୁନ୍ଦର ଶୁଦ୍ଧ ଶାଶ୍ୱତ ପ୍ରଭା''
> ''ବରଷା କି କେବେ ଭାବି ଚିନ୍ତି ଝରେ ଇଏ ନଦୀ ଇଏ ସାଗର''

କିଏ ସେଇ ପ୍ରେମିକ, କାହା ଅନ୍ତହୀନ ପ୍ରତୀକ୍ଷା ନେଇ କିଏ ସିଏ ଚାହିଁ ରହିଛି ? କେତେବେଳେ ଗବାକ୍ଷ ଫାଙ୍କରେ ଝରି ପଡ଼ିବ ସେଇ ସୁନେଲି କିରଣ, କେତେବେଳେ ଦିଶିଯିବ ସେଇ ସୌମ୍ୟ ଲଳିତ ଶୋଭା, ଯାହାର ଚିତ୍ରକୁ କବିଚିତ୍ତ କଳ୍ପଲୋକରେ ଅଙ୍କନ କରିଚାଲିଛି ଗଭୀର ଭାବାବେଗରେ। କେତେବେଳେ ଫୁଲର ସୁଗନ୍ଧ ହୋଇ ମଳୟ ପବନ ରୂପରେ ସେ ଆସିବେ, ସେଥିପାଇଁ ବାରମ୍ବାର କବିଚିତ୍ତ ହୋଇ ଉଠିଛି ଉନ୍ମନା। ସେଇ ମଳୟ ସ୍ପର୍ଶ ପାଇଁ ତା' ଭିତରେ ଅପୂର୍ବ ଉତ୍କଣ୍ଠା, ଅନନ୍ୟ ଶିହରଣ । ଆଶାର ଅନେକ ପାରିଜାତ ଫୁଟି ଉଠିଛି ଭାବର ନନ୍ଦନକାନନରେ। 'ମଳୟ ପବନ', 'ବିରହବଇଁଶୀ' ଭଳି ଅନେକ ଗୀତିକବିତାରେ ଭାବର ସ୍ଫୁରଣ ହୋଇଛି ଅନାବିଳ ଭାବରେ।

ମାଟି ହେଉଛି ଅପ୍, ତେଜ, ମରୁତ ଓ ବ୍ୟୋମର ଘନୀଭୂତ ସ୍ଥୂଳ ରୂପ। ଏହା କେବଳ ଏକ ଜଡ଼ ବସ୍ତୁ ନୁହେଁ ଏଥିରେ ରହିଛି ଚେତନା, ମହକ ଓ ମହତ୍ତ୍ୱ। ରୂପ, ରସ, ରଙ୍ଗ ଓ ବାସ ଏଥିରେ ନିବର୍ତ୍ତିତ ହୋଇ ରହିଥିବାରୁ ବିଭିନ୍ନ ମାଧ୍ୟମରେ ସ୍ୱତଃସ୍ଫୂର୍ତ୍ତ ଭାବରେ ତାହା ପ୍ରକଟିତ ହେଉଛି। ତେଣୁ ଏ ମାଟିର ମହିମା ଅନିର୍ବଚନୀୟ। କବି ଡଃ ରଥଙ୍କ କେତେକେ କବିତାରେ ମାଟି ପ୍ରତି ମମତ୍ୱବୋଧ ଅନନ୍ୟ। କବିଙ୍କ ଭାଷାରେ -

''ଏଇ ମାଟି ଯେବେ ପ୍ରବାସ ହୁଅନ୍ତା
ଲାଗନ୍ତା କି ଏଥି ମନ
ଏ ନୁହେଁ ପ୍ରବାସ ଆଉ କିଛି କଥା
ଅଛି ଏଥି ସଂଗୋପନ''

କବି କୁନ୍ତଳାକୁମାରୀ ଯେମିତି ଦିନେ ଗଙ୍ଗଶିଉଳି ଫୁଲକୁ ଦେଖି ଗାଇ ଉଠିଥିଲେ 'କ୍ଷୁଦ୍ର ତୋର ଜୀବନରେ ସୁମହତ ବିକାଶ' ସେହିପରି 'ପ୍ରତିଧ୍ୱନି'ର କଳେବର କ୍ଷୁଦ୍ର ହେଲେ ମଧ୍ୟ ତାହା ଶାଶ୍ୱତର ଅଭିବ୍ୟକ୍ତି ପାଇଁ, ମାଟିର ଐଶ୍ୱର୍ଯ୍ୟକୁ ପ୍ରତିଷ୍ଠା କରିବା ପାଇଁ ଏକ ମୁଗ୍ଧ ପଦପାତ ବୋଲି କୁହାଯାଇପାରିବ ।

[signature]

କବି, ନାଟ୍ୟକାର, କଥାକାର
ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ
ଭୁବନେଶ୍ୱର

# ଭକ୍ତିଗୀତିର ରାଗମୂର୍ଚ୍ଛନା 'ଆରାଧନା'

ଡ. ଅର୍ଚ୍ଚନା ନାୟକ

'ଗାନେର ଭିତର ଦିୟେ ଯଖନ ଦେଖି ଭୁବନଖାନି
ତଖନ ତାରେ ଚିନି ଆମି ତଖନ ତାରେ ଜାନି ।'

କବିଗୁରୁ ରବୀନ୍ଦ୍ରନାଥ ଠାକୁର ସଙ୍ଗୀତ ମାଧମରେ ପ୍ରତ୍ୟକ୍ଷ କରିପାରିଛନ୍ତି ସମଗ୍ର ଭୁବନକୁ ଓ ତା' ସହିତ ଚିହ୍ନି ପାରିଛନ୍ତି ଭୁବନ ଅନ୍ତରାଳରେ ଥିବା ଭୁବନେଶ୍ୱରଙ୍କୁ ।

କେବଳ-ଦର୍ଶନ ଶାସ୍ତ୍ର, ଧର୍ମ ଗ୍ରନ୍ଥ ଗଠନ ଓ ପୂଜା ଉପାସନା ଦ୍ୱାରା ଈଶ୍ୱରୋପଲବ୍ଧ ଘଟିବା ସହଜ ସାଧ୍ୟ ହୁଏ ନାହିଁ । ସଙ୍ଗୀତ ଗାନରେ ହିଁ ବ୍ୟକ୍ତିର ପଞ୍ଚେନ୍ଦ୍ରିୟ ଓ ଚଞ୍ଚଳମନ ଶାନ୍ତ ସମାହିତ ହୁଏ । ଚିତ୍ତବୃତ୍ତି ଏକ ଅପୂର୍ବ ରସଲୋକରେ ନିର୍ଜିତ ହୁଏ । ଫଳରେ ଭକ୍ତ ମଣିଷର ସର୍ବାନ୍ତକରଣରେ ଏକ ଅପୂର୍ବ ସାତ୍ତ୍ୱିକ ଅନୁଭବ ଘଟିଥାଏ ।

ଈଶ୍ୱରଙ୍କ ପ୍ରତି ପ୍ରେମର ସର୍ବୋତ୍ତମ ଅନୁଭବ ହେଉଛି ଭକ୍ତି । ଯେଉଁ କବି ନିଜର ଭକ୍ତିଶ୍ରଦ୍ଧା ତା'ର ପ୍ରିୟ ପରମଙ୍କ ଉଦ୍ଦେଶ୍ୟରେ ଶବ୍ଦ ମାଧ୍ୟମରେ ପ୍ରକାଶ କରିଥାଏ ସେ ହେଉଛି ଭକ୍ତକବି । ଭକ୍ତି ଭାବନା ସହ କାବ୍ୟିକ ଉତ୍କର୍ଷ ଯୁକ୍ତ ହୋଇ ତାଳ, ଲୟ ଓ ନାଦକୁ ଅନୁସରଣ କଲେ ଭକ୍ତି ସଙ୍ଗୀତର ସୃଷ୍ଟି ହୋଇଥାଏ ।

ଓଡ଼ିଆ ସାହିତ୍ୟର ଆଦିସ୍ରଷ୍ଟାମାନେ ସମସ୍ତେ ସଙ୍ଗୀତ ସଂପର୍କରେ ବିଶେଷଜ୍ଞାନର ଅଧିକାରୀ ଥିଲେ । ପଞ୍ଚଦଶରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ କାବ୍ୟ ସାହିତ୍ୟ ଥିଲା ସଙ୍ଗୀତମୟ । କାରଣ ସେ ସମୟରେ ବିଦଗ୍ଧମାନଙ୍କର ଅନୁଭବର କାବ୍ୟ ରଚନାରେ ସଙ୍ଗୀତର ସ୍ଥାନ ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହି ସମୟ ମଧ୍ୟରେ ଓଡ଼ିଆ ଭାଷାରେ ରଚିତ ହୋଇଛି ଅଗଣିତ ଭକ୍ତିଗୀତ । ରାମ ଓ କୃଷ୍ଣଙ୍କ ଉଦ୍ଦେଶ୍ୟରେ ବହୁ ଭକ୍ତିଗୀତି ରଚିତ ହୋଇଥିଲେ ମଧ୍ୟ ଓଡ଼ିଶାର ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଛି ସର୍ବାଧିକ ଗୀତ । ମୁଖ୍ୟତଃ ଶ୍ରୀକୃଷ୍ଣଙ୍କ ସହ ଶ୍ରୀଜଗନ୍ନାଥଙ୍କର ଅଭେଦତ୍ୱ ନିରୂପଣ କରାଯାଇଥିବାରୁ ଅଧିକାଂଶ ଭକ୍ତକବି ଶ୍ରୀକୃଷ୍ଣଙ୍କର ଲୀଳାହିଁ ବର୍ଣ୍ଣନା କରିଛନ୍ତି ।

ତେବେ ଯୁଗେ ଯୁଗେ ଭକ୍ତ, ସାଧକ ଓ କବିମାନେ ନିଜର ପ୍ରିୟ ପରମଙ୍କ ନିକଟରେ ନିଜ ହୃଦୟର ପ୍ରେମ, ଅନୁରାଗ ଓ ଭକ୍ତି ନିବେଦନ କରିବା ପାଇଁ ସ୍ତବ, ସ୍ତୁତି ଓ ସଙ୍ଗୀତକୁ ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି । ଏହି କ୍ରମରେ ବିଶିଷ୍ଟ ଗୀତିକବି ଶରତ ଚନ୍ଦ୍ର ରଥଙ୍କର ଭକ୍ତିଗୀତି 'ଆରାଧନା' ସଂକଳନରେ ଆରାଧନାର ସୃଷ୍ଟି ସୌନ୍ଦର୍ଯ୍ୟ ଲକ୍ଷ୍ୟ କରାଯାଇପାରେ । ଏଥିରେ ରହିଛି ସମୁଦାୟ ଅଶୀଗୋଟି ଗୀତି । ତନ୍ମଧ୍ୟରୁ ସାତଗୋଟି ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଥିବା ବେଳେ ଦୁଇଟି ଶ୍ରୀ କୃଷ୍ଣ, ଗୋଟିଏ ମହାଦେବ ଓ ଦଶ ଏଗାର ଗୋଟି ମା'ଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଛି । ଅନ୍ୟ ସମସ୍ତ ଗୀତି ନିବେଦିତ ହୋଇଛି ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ; ଯାହାଙ୍କର ନିର୍ଦ୍ଦିଷ୍ଟ ରୂପରେଖ ନାହିଁ, ଯାହାଙ୍କର ଗୁଣାଗୁଣର ତର୍ଜମା ନାହିଁ, ଯାହାଙ୍କ ନିକଟରେ ମାନ ଅଭିମାନ ନାହିଁ, କୌଣସି ଅଭିଯୋଗ ନାହିଁ, ଅଛି କେବଳ ଭକ୍ତି, ଶ୍ରଦ୍ଧା ଓ ସର୍ବାନ୍ତଃକରଣରେ ସମର୍ପଣର ଭାବ ।

ପ୍ରଥମତଃ ତାଙ୍କର ଏହି ସଂକଳନରେ ରହିଥିବା ଶ୍ରୀ ଜଗନ୍ନାଥଙ୍କ ଭଜନରେ ଆମେ ସେହି ପାରମ୍ପରିକ ବର୍ଣ୍ଣନା ଲକ୍ଷ୍ୟ କରୁ ।

କେତେ ସୁନ୍ଦରରେ ଚକାଡୋଳା କଳାମୁଖ
ଦେଖିଲା ଲୋକର ଆଖି ଲାଖି ଯାଏ
ଦୂର ହୁଏ ମନୁ ଦୁଃଖ ।

ସେ ଜଗତଜୀବନ, ସେ କରୁଣା ନିଦାନ, ସେ ପତିତପାବନ ଓ ଭକ୍ତର ପ୍ରାଣଧନ । କବି ପୂର୍ଣ୍ଣ ପ୍ରାଣରେ ତାଙ୍କର ମହିମା ଗାନ କରିଛନ୍ତି । କବିଙ୍କ ଭାବନାରେ ମନ ଯେବେ ପ୍ରେମ କରିବାକୁ ଋହେଁ, ତେବେ ସେ ପ୍ରେମ କେବଳ ହେଉ ରଙ୍ଗାଅଧର ପାଇଁ; କାରଣ ସେ ହିଁ ରସର ସାଗର, ନାଗର ବର ଓ ଅମୃତଝର । ଲକ୍ଷଣୀୟ ପ୍ରସଙ୍ଗଟି ହେଲା କବିର କୌଣସି ଅଭିମାନ ବା ଅନୁଯୋଗ ପ୍ରକାଶ ପାଇନି । ସେ କେବଳ ନିଜ ହୃଦୟରେ ଚକାଡୋଳାଙ୍କ ପାଇଁ ପ୍ରଗାଢ଼ ପ୍ରେମର ଅନୁଭବ କରୁଛନ୍ତି । ସେହିପରି ଭଗବାନ ଶ୍ରୀକୃଷ୍ଣଙ୍କ ସଂପର୍କରେ କବିଙ୍କର ଅନୁଭବ ହେଲା ସେ ହେଉଛନ୍ତି ଆନନ୍ଦର ଅବତାର, ଅଧିମାନସର ଅବତାର –

ଅନ୍ତରେ ପୂରିତ ତୁମ ପ୍ରୀତିର ପୀୟୁଷ ଧାରା
କରୁଣା ବାରିଧି ହରି ମୋହନ ମୁରଲୀ ଧରା

ମାତୃଶକ୍ତି ଉଦ୍ଦେଶ୍ୟରେ ଲିଖିତ ତାଙ୍କର ଗୀତିଗୁଡ଼ିକ ତାଙ୍କର ଆଧ୍ୟାତ୍ମିକ ଜୀବନର ପଥ ପ୍ରଦର୍ଶକ ଶ୍ରୀମା'ଙ୍କ ନିମିତ୍ତ ଉଦ୍ଦିଷ୍ଟ । ଆମର ପାରମ୍ପରିକ ଦେବୀ ବନ୍ଦନାରୁ ଏହି ଗୀତିଗୁଡ଼ିକ ଭିନ୍ନ । କବି କୌଣସି ବ୍ୟକ୍ତିଗତ ପ୍ରାପ୍ତିର ଆକାଂକ୍ଷା ମନରେ ପୋଷଣ କରୁ ନାହାନ୍ତି; ସେ କେବଳ ତାଙ୍କ ଚେତନାର ଉତ୍ତରଣ ନିମନ୍ତେ ପ୍ରାର୍ଥନା କରୁଛନ୍ତି । ସେଥିପାଇଁ ସେ ଋହୁଁଛନ୍ତି "ନବଚେତନାର ଶୁଭଉଷାଲୋକ ହସିଉଠୁ ଜୀବନରେ" ଆଉ ଗୋଟିଏ ପଂକ୍ତିକୁ ଲକ୍ଷ୍ୟ କରାଯାଉ "ଚେତନା ଜୁଆରେ ହସି ଉଠୁଥିବ ଜୀବନ ବିଜନ ବେଳା, ମଧୁ ମମତାରେ ଭରି ଉଠୁଥିବ ମନର କଳସୀ ପରା । ତୁମରି ପରଶ ସୁଧା ବରଷିବ ଜୀବନର ମରୁପଥେ ।" ଅନ୍ୟ ଗୋଟିଏ ପଂକ୍ତିରେ କବି ଦିବ୍ୟଜନନୀଙ୍କୁ ସମସ୍ତ ସର୍ଜନାର ମୂଳଶକ୍ତି ରୂପେ ବନ୍ଦନା କରି କୁହନ୍ତି,–

ମାଆ ତୁମେ ଅରଚନା ଦେବ ମାନବର
ମାଆ ତୁମ ସରଜନା ଏ ସାରା ସଂସାର
ଜଡ଼ରୁ ଜୀବନ ତୁମେ ଜୀବନରୁ ମନ ତୁମେ
ମନରୁ ଯେ ଅତି ମନ ତୁମରି ବିଋର

ଏତଦ୍‌ଭିନ୍ନ ଅନ୍ୟ ଗୀତିଗୁଡ଼ିକରେ କବି ପରମବ୍ରହ୍ମ, ପୁରୁଷୋତ୍ତମ ଓ ଲୀଳାମୟ ଭଗବାନଙ୍କର ମହିମାଗାନ କରିଛନ୍ତି । ସେ ଅନୁଭବ କରିପାରିଛନ୍ତି ଯେ ଯାହା ସେ ଦେଖୁଛନ୍ତି ସବୁ ସେ ପରମ ପୁରୁଷ ରାଜରାଜେଶ୍ୱରଙ୍କର ସୃଷ୍ଟି, ସେ ଶୁଣି ପାରିଛନ୍ତି ନୀଳ ସାଗରର ଲହରୀମାଳାରେ, ଜଳ ତରଙ୍ଗରେ ତାଙ୍କର ମନ୍ଦ୍ର ମଧୁର ଧ୍ୱନି, ପବନର ସ୍ପର୍ଶରେ ତାଙ୍କରି ମୃଦୁମନ୍ଦ ସ୍ୱର । ସର୍ବତ୍ର ସେ ନିଜକୁ ଅଭିବ୍ୟକ୍ତ କରିଛନ୍ତି, ଜୀବରେ ଓ ଜଡ଼ରେ । ସେତିକି ଉପଲବ୍ଧି କରିପାରିବା ହିଁ ଅଭୀପ୍ସୁ ମଣିଷ ପାଇଁ ଶ୍ରେଷ୍ଠ ପ୍ରାପ୍ତି ।

କବି ଶରତ ଚନ୍ଦ୍ର ରଥଙ୍କର ନିଷ୍କପଟ ପ୍ରେମ ଓ ପରମେଶ୍ୱରଙ୍କ ନିକଟରେ ସର୍ବାନ୍ତଃକରଣରେ ସମର୍ପିତ ହେବାର ଅଭୀପ୍ସା ଏଥିରେ ପ୍ରକାଶିତ ହୋଇଛି । ସହଜ, ସରଳ ଓ ଆନ୍ତରିକ ଭାବନା ଉପରେ ଆଧାରିତ ଏହି ଭକ୍ତିଗୀତ ଗୁଡ଼ିକ ଭାଗବତପ୍ରେମୀ ପାଠକ ଓ ଶ୍ରୋତାର ଅନ୍ତରକୁ ଗଭୀର ଭାବରେ ସ୍ପର୍ଶ କରିବ ବୋଲି ବିଶ୍ୱାସ କରୁଛି ।

"ଅଭୀପ୍ସା"
୧୦୨, ଶହୀଦନଗର, ଭୁବନେଶ୍ୱର-୭

# 'ବନ୍ଦନିକା'ର ମନ୍ତ୍ର ଓ ମାଧୁର୍ଯ୍ୟ

## ଅଧ୍ୟାପକ ବିଶ୍ୱରଂଜନ

ଶରତ ରଥଙ୍କ ନିକଟ ସମ୍ପର୍କରେ ଆସି ମୁଁ ଦେଖିଛି, ତାଙ୍କ ଗହାଣିରେ ଗୀତିକବିତାର ଚମକ। ସେଇ ଗହାଣି ହିଁ ତାଙ୍କର ଲେଖନୀକୁ କରିଛି ଚଳଚଞ୍ଚଳ, ଖ୍ୟାତିମୁଖର। ସେଇ ଗହାଣିରେ ଅଛି ଜୀବନର କାହାଣୀ, ପୁଣି ଛନ୍ଦାଚରଣ ପାଖରେ ବନ୍ଧା ପଡ଼ିବାର ମାଗୁଣି। ଜୀବନ କେତେବେଳେ ଶରତ ସକାଳର କୋମଳ ସ୍ପର୍ଶ ନେଇ ଆସେ ତ, କେତେବେଳେ ହୋଇଯାଏ ଯୋଡ଼ା ବଇଶାଖର ତାତି। କେତେବେଳେ ଜ୍ୟୋତ୍ସ୍ନାଭରା ମଧୁରାତି ତ କେତେବେଳେ ପୁଣି ବିରହୀ ବସନ୍ତର ସ୍ମୃତି। ବଦଳି ଯାଉଥିବା ଋତୁର ରଂଗରେ ବଦଳି ଯାଉଥାଏ ଜୀବନର ରୂପ। ଆଉ ସେଇ ରୂପରଙ୍ଗକୁ ନିଜର ଗୀତ ଓ ଗାନରେ ତୋଳି ଧରିବାର ପ୍ରୟାସରେ ବାରି ହୋଇପଡ଼େ ଶରତଙ୍କ ସଫଳ ସୃଜନ ପ୍ରୟାସ। ସ୍ମୃତିର ଢେଉ ଆସି ମଥାପିଟେ ଶରତଙ୍କ ଭାବଭୂମିରେ। ତେଣୁ ଭାବର ବିଭୋରତାରେ ସେ ବେଶ୍, ସ୍ୱଚ୍ଛନ୍ଦରେ ଗାଇ ଉଠନ୍ତି — "ଆଉ ଥରେ କିବା ଶୁଭନ୍ତା ଜୀବନେ କୋଇଲିର କୁହୁତାନ/ କି ମଳୟ ଛୁଇଁ ବହନ୍ତା କିଶଳୟ ଚହଲାଇ ତନୁମନ।"

ଆଉ ଥରେ କାହିଁକି, ଥରକୁ ଥର, ବାରମ୍ବାର ଅତିମନସ୍କ କବିର ଅନୁଭାବନାରେ ଭଲପାଇବା ରାଗ, ଅନୁରାଗ, ମିଠାମିଠା ସ୍ମୃତି, ଜହ୍ନରାତି, ମହକିତ କଦମ୍ବ କେଳି କୁସୁମର ବାସ ଚହଟି ଉଠେ। ଆଉ ତା'ର ଚିତ୍ରଛାୟା ପ୍ରତିଫଳିତ ହୁଏ ତାଙ୍କ ଗୀତିକବିତାରେ। ବେଶ ସରଳ, ସ୍ୱାବଲୀଳ ଢ଼ଙ୍ଗରେ, ସ୍ୱତଃସ୍ଫୂର୍ତ୍ତ ଭାବରେ।

ଭାବ ଅନୁସାରୀ ଭାଷାର ପ୍ରୟୋଗ ନହେଲେ ମନକୁ ସ୍ପର୍ଶ କରେ ନାହିଁ ଗୀତିକବିତା। ଉପଯୁକ୍ତ ଶବ୍ଦର ଚୟନ ଓ ଛନ୍ଦୋବଦ୍ଧତା ହିଁ ଗୀତିକବିତାର ବୈଶିଷ୍ଟ୍ୟ। ଶରତ ଏ କ୍ଷେତ୍ରରେ ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରିବାରେ ସଫଳ ହୋଇଛନ୍ତି।

'ମାଦକତା' ଶୀର୍ଷକ ଗୀତିକବିତାରେ -

'ରହିଛ କି ତୁମେ ମାଟି ମହକରେ
ମଳୟର ମଧୁବାସେ
ରହିଛ କି ତୁମେ ବନଝରଣାର
କୁଞ୍ଚିତ ମଞ୍ଜୁଳ କେଶେ।'

'ତୁମେ ହିଁ ତୁମେ' ଶୀର୍ଷକ ଗୀତିକବିତାରେ ଏହା ସୁସ୍ପଷ୍ଟ। କେବଳ 'ତୁମେ'କୁ ନେଇ କେତେ ଉପମା, କେତେ ଅଳଙ୍କାର। 'ତୁମେ ଶୀତ ପାହାନ୍ତିର ଶୀତଳତା, ତୁମେ ପ୍ରଣୟିନୀ ପ୍ରୀତିପ୍ରବଣତା, ତୁମେ ନୀଳ ପାରାବାର ବିଶାଳତା' 'ନୀଳ ବାଚିମାଳା ଚଞ୍ଚଳତା', 'ଶ୍ରାବଣୀ ମେଘର ଗମ୍ଭୀରତା', 'ଶିଶୁ ମିଠାହସ ସରଳତା' ଇତ୍ୟାଦି ଇତ୍ୟାଦି......। ଏହି କବିତାରେ ଶବ୍ଦ ଓ ଛନ୍ଦର ଯାଦୁକରୀ ସ୍ପର୍ଶ ପାଠକର ଚିତ୍ତ ଓ ଚେତନାକୁ ଚହଲାଇ ଦିଏ।

ଶରତ ନିଜର 'ବନ୍ଦନିକା' ପୁସ୍ତକରେ ଦୁଇ ପ୍ରକାର ଗୀତିକବିତା ରଖିଛନ୍ତି । ଗୋଟିଏ ହେଉଛି ଭକ୍ତିଗୀତି ଏବଂ ଅନ୍ୟଟି ହେଉଛି ଜୀବନଗୀତି । ଜୀବନର ଆଶା-ନିରାଶା, ସ୍ୱପ୍ନ, ପ୍ରେମ ଓ ପ୍ରତୀକ୍ଷା ଆଦି ଭାବ ଓ ଭାବନାକୁ ଆଧାର କରି ଗୀତିମୁଖର ହେବା ସଂଗେ ସଂଗେ ସେ ସ୍ମରଣକରିଛନ୍ତି, ମାଆ ଦଶଭୁଜାଙ୍କୁ, ପ୍ରଭୁ ଜଗନ୍ନାଥଙ୍କୁ ଏବଂ ନିଜର ଭକ୍ତିପୂତ ହୃଦୟର ପ୍ରେମ ଓ ପ୍ରଣାମ ନିବେଦନ କରିଛନ୍ତି ପ୍ରେମମୟ, ମହିମାମୟ ପରମେଶ୍ୱରଙ୍କ ନିକଟରେ -

'ଯେଦିନ ଦେଖିଲି ପଦ୍ମପାଖୁଡ଼ାରେ
ଢ଼ଳଢ଼ଳ ଜଳବିନ୍ଦୁ
କିରଣମାଳୀଙ୍କ କିରଣମାଳାରେ
ଢ଼ଳ ଢ଼ଳ ନୀଳସିନ୍ଧୁ ।
ଯେ ଦିନ ଶୁଣିଲି ପକ୍ଷୀ କାକଳିରେ
ଛନ୍ଦାୟିତ ମଧୁତାନ
ସେଦିନ ଜାଣିଲି ଏ ଜଗତ ଆହା
ଆନନ୍ଦ ନନ୍ଦନବନ ।

ସକଳ ଜୀବନର ଜୀବନ, ସକଳ ବେଦର ଗାୟତ୍ରୀ ଛନ୍ଦ ଛନ୍ଦାଚରଣଙ୍କୁ ଶରତ ନିଜର ଗୀତିମୟତାରେ ଆବିଷ୍କାର କରୁଛନ୍ତି ରୂପରେ, ପୁଣି ଅରୂପରେ । ସେଇ ରୂପମୟ ଅରୂପର ଅନ୍ୱେଷଣରେ ପୁଣି ଜଗତକଲ୍ୟାଣୀ, ଜଗତପାଳିନୀ ମା'ଙ୍କ ଉଦ୍ଦେଶ୍ୟରେ ଆଭୁମ ପ୍ରଣତି ସହ ଗାଇ ଚାଲିଛନ୍ତି ଅସରନ୍ତି ଗୀତ । ଜୀବନର ସବୁ କଥା ଓ ବ୍ୟଥା, ଆକାଂକ୍ଷା ଓ ଅଭୀପ୍ସା ତାଙ୍କର ଗିରିଝର ଭଳି ଝରି ଯାଇଛି ଆପେଆପେ ଗୀତିକବିତା ମାଧ୍ୟମରେ । ଏହି ମନନେଇ ରହି ସେ ଚାହିଁ ରହିଛନ୍ତି ଦୂର ଦିଗନ୍ତ ଆଡ଼େ । ଉଡ଼ି ଯାଉ ଯାଉ ମନପକ୍ଷୀ ତାଙ୍କର ଛନ୍ଦିହୋଇଯାଏ କେତେ କେତେ ଭାବନାର ଜାଲରେ ।

ସେଇ ଛନ୍ଦମୟ ଜୀବନର ସୃଜନ ସ୍ୱାକ୍ଷର ହେଉଛି ଶରତଙ୍କ 'ବନ୍ଦନିକା' । ବ୍ୟକ୍ତିଗତ ଅନୁଭବର ସଂକ୍ଷିପ୍ତ ଗୀତିମୟ ଅଭିବ୍ୟକ୍ତି ହେଉଛି ଗୀତିକବିତା । ଅନୁଭୂତିର ତୀବ୍ରତା ହେଉଛି ଏହାର ବିଶେଷ ଉପାଦାନ । କବି ଓ ସମାଲୋଚକ ସ୍ୱର୍ଗତଃ ଚିନ୍ତାମଣି ବେହେରାଙ୍କ ଭାଷାରେ- "ସଂଗୀତକୁ ତାର ସମ୍ମୋହନ ଓ ଯାଦୁକରୀ ଶକ୍ତି ଅର୍ଜନ କରିବାକୁ ହେଲେ ତାକୁ କେବଳ ସ୍ୱର ନିର୍ଭର ହେବାକୁ ପଡ଼ି ନଥାଏ । ତା' ପାଇଁ ଆବଶ୍ୟକ ଆଉ ଅଧିକ କିଛି ଏବଂ ତା' ହେଉଛି କଠୋର ମନ୍ତ୍ରଶକ୍ତି । କବିତ୍ୱର ଐନ୍ଦ୍ରଜାଲିକ ଶକ୍ତି ।"

କବିତ୍ୱର ମନ୍ତ୍ର ଓ ମାଧୁର୍ଯ୍ୟରେ ଶ୍ରୀମଣ୍ଡିତ ହୋଇଛି ଶରତରଥଙ୍କ 'ବନ୍ଦନିକା' । ପ୍ରାଣଦେଇ ଓ ପ୍ରାଣଭରି ସେ ଜୀବନର ବନ୍ଦନା ଗାଇ ଚାଲିଛନ୍ତି । କବି ହୃଦୟର ପ୍ରେମପ୍ରବଣତାରେ ସ୍ୱାକ୍ଷରିତ ମୁଁ ତାଙ୍କର ଏହି ଭୂମିକାକୁ ମୁଁ ସର୍ବାନ୍ତକରଣରେ ସ୍ୱାଗତ କରୁଛି ।

[signature]

ଭୁବନେଶ୍ୱର

## ସମ୍ମାନ ଓ ପୁରସ୍କାର

| | | |
|---|---|---|
| ୧. | ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ | ୧୯୭୭ ମସିହାର ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇଁ |
| ୨. | ଭକ୍ତକବି ମଧୁସୂଦନ ରାଓ ସ୍ମାରକୀ ସ୍ୱର୍ଣ୍ଣପଦକ | ୧୯୭୭ ମସିହାର ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇଁ |
| ୩. | ଲେଖା ସାହିତ୍ୟ ସମ୍ମାନ | କୋଲକାତା |
| ୪. | ଓଡ଼ିଆ ସମ୍ମିଳନୀ | ଭୁବନେଶ୍ୱର |
| ୫. | ଉପେନ୍ଦ୍ରଭଂଜ ପୁରସ୍କାର | ବ୍ରହ୍ମପୁର |
| ୬. | ରାଷ୍ଟ୍ରୀୟ ମହିଳା ସଂସ୍ଥାନ | ଭୁବନେଶ୍ୱର |
| ୭. | ଅମୃତାୟନ ସାହିତ୍ୟ ସମ୍ମାନ | ଭୁବନେଶ୍ୱର |
| ୮. | ଜୟଦେବ ସମ୍ମାନ | ଭୁବନେଶ୍ୱର |
| ୯. | ଦିଗ୍‌ବଳୟ ପ୍ରବନ୍ଧ ସମ୍ମାନ | ଭୁବନେଶ୍ୱର |
| ୧୦. | ଅନ୍ୱେଷା ସମ୍ମାନ | ପୁରୀ |
| ୧୧. | ମା ମଣିନାଗ ଦୁର୍ଗା ସାହିତ୍ୟ ସମ୍ମାନ | ସାକ୍ଷୀଗୋପାଳ |
| ୧୨. | ଶ୍ରୀଜଗନ୍ନାଥ ସାହିତ୍ୟ ସମ୍ମାନ | ଖୋର୍ଦ୍ଧା |
| ୧୩. | ଓଡ଼ିଶା ବହିମେଳା ପୁରସ୍କାର | ଭୁବନେଶ୍ୱର |
| ୧୪. | ସାରସ୍ୱତ ସମ୍ବର୍ଦ୍ଧନା | ଫକୀର ମୋହନ ବିଶ୍ୱବିଦ୍ୟାଳୟ, ବାଲେଶ୍ୱର |
| ୧୫. | ଓଡ଼ିଆ ବିଭାଗ | କେ.ବି.ଡ଼ି.ଏ.ଭି ମହାବିଦ୍ୟାଳୟ, ନିରାକାରପୁର |
| ୧୬. | ତାଳପଦେଶ୍ୱରୀ ସାହିତ୍ୟ ସମ୍ମାନ | ଭୁବନେଶ୍ୱର |
| ୧୭. | ଚିର ସମର୍ଥା ସାହିତ୍ୟ ସମ୍ମାନ | ଭୁବନେଶ୍ୱର |
| ୧୮. | ପାଣିନି ସମ୍ମାନ | ଭୁବନେଶ୍ୱର |
| ୧୯. | ଗୋପବନ୍ଧୁ ସ୍ମୃତି ସମ୍ମାନ | ଭୁବନେଶ୍ୱର |
| ୨୦. | ଗୋଧୂଳି ସାହିତ୍ୟ ସମ୍ମାନ | ଭୁବନେଶ୍ୱର |
| ୨୧. | ସାହିତ୍ୟ ସମ୍ବର୍ଦ୍ଧନା | ବରୁଣେଶ୍ୱର ମହାବିଦ୍ୟାଳୟ, ଯାଜପୁର |
| ୨୨. | ସୁଲେଖା ସାହିତ୍ୟ ସଂସ୍କୃତି ପରିଷଦ | ପୁରୀ |

# ପ୍ରଫେସର ଶରତଚନ୍ଦ୍ର ରଥଙ୍କର ଗଦ୍ୟ ପୁସ୍ତକ

## ପ୍ରବନ୍ଧ, ସମାଲୋଚନା ଓ ସଂକଳନ

୧. ବଞ୍ଚିବାର କଳା
୨. ଜୀବନର ମୂଲ୍ୟ ଓ ମୂଲ୍ୟବୋଧ
୩. ରାଜକବି ଧନଞ୍ଜୟ ଭଂଜଙ୍କ କୃତି ଓ କୃତିତ୍ୱ
୪. ସମୀକ୍ଷା ସୌରଭ
୫. ସମୀକ୍ଷା ସ୍ତବକ
୬. ସାହିତ୍ୟ ଚିନ୍ତନ
୭. ଆମ ସଂସ୍କୃତି; ଆମ ଜୀବନ
୮. ସମୀକ୍ଷା ପ୍ରବାହ
୯. ସାମାନ୍ୟ ସୂଚନା
୧୦. ଶ୍ରୀଅରବିନ୍ଦଙ୍କ ସାବିତ୍ରୀ ସମ୍ବନ୍ଧେ
୧୧. ଆମ ସଂସ୍କୃତି ଓ ଅନ୍ୟାନ୍ୟ ପ୍ରବନ୍ଧ
୧୨. ଆଧୁନିକ ଓଡ଼ିଆ ଗୀତିକବିତାର ସ୍ୱର ଓ ସ୍ୱରୂପ
୧୩. ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଗୀତିକବି ଓ ଗୀତିକବିତା
୧୪. ପୂର୍ଣ୍ଣଯୋଗ ଓ ଆମେ
୧୫. ପୂର୍ଣ୍ଣଯୋଗ କ'ଣ ଓ କାହିଁକି ?

## ସଂକଳନ

୧. ସେମାନଙ୍କ ଆତ୍ମଲିପି
୨. ସାହିତ୍ୟ ସଂପଦ
୩. ଶ୍ରୀଅରବିନ୍ଦଙ୍କ ସାବିତ୍ରୀ ଉପାଖ୍ୟାନ
୪. ମାତୃ କଥାମୃତ
୫. ସଂଗୀତ ମାଳା
୬. ଶ୍ରୀଅରବିନ୍ଦ କଥାମୃତ
୭. କେତେ ପଥ କେତେ ମତ
୮. ସାହିତ୍ୟ ସମ୍ବାଦ
୯. ଦିବ୍ୟବାଣୀ
୧୦. ସ୍ମୃତି ରେଖା



ପିତା ଶ୍ରୀ ନୀଳାଦ୍ରି ବିହାରୀ ରଥ ଏବଂ ମାତା ଶ୍ରୀମତୀ ମନୋରମା ରଥ



ମାଆ ମନୋରମା ରଥ, ବଡ଼ଭାଇ ଶ୍ରୀ ସଚ୍ଚିଦାନନ୍ଦ ରଥ ଓ ସାନଭାଇ
ଡ. ସୁରେଶ ଚନ୍ଦ୍ର ରଥଙ୍କ ସହିତ ।



ପଣ୍ଡିଚେରୀର ଅରୋଭିଲରେ ସାନଭାଇ ଶ୍ରୀଅରବିନ୍ଦ ଆଶ୍ରମର ସାଧକ
ସନ୍ତୋଷ କୁମାର ରଥଙ୍କ ସହିତ ।



ପ୍ରକାଶକ ତଥା ଛାତ୍ର
ଶ୍ରୀମାନ ବିଭୁପ୍ରସୂନଙ୍କ ସହିତ ।



ସାନଭାଇ ଶ୍ରୀ ବିଶ୍ୱନାଥ ମିଶ୍ରଙ୍କ
ସହିତ ।



ଜେରି କେୟାରର
ସଭାପତି ଶ୍ରୀ ହରିଶ୍ଚନ୍ଦ୍ର କରଙ୍କ
ଦ୍ୱାରା ପାଣିନି ସମ୍ମାନ ଗ୍ରହଣ
କରିବା ଅବସରରେ ।



ବାମଣ୍ଡାର ଗଙ୍ଗାଧର ମେହେର
ସ୍ମୃତି ଅନୁଷ୍ଠାନ ତରଫରୁ
ସମ୍ବର୍ଦ୍ଧନା



ସତ୍ୟବାଦୀର ବକୁଳବନ
ମହୋତ୍ସବରେ



ସାହିତ୍ୟ ଚର୍ଚ୍ଚା ତରଫରୁ ସମ୍ବର୍ଦ୍ଧନା



ଭାଷାପ୍ରତିଷ୍ଠାନ ଦ୍ୱାରା ସମ୍ବର୍ଦ୍ଧନା




ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ଧାରା ବିବରଣୀ ପ୍ରଦାନ



କବିଙ୍କ ଅନେକ ଭଜନ ଗାଇଥିବା ସୁପରିଚିତ କଣ୍ଠଶିଳ୍ପୀ ଶ୍ରୀ ଅରବିନ୍ଦ ମୁଦୁଲିଙ୍କ ସହିତ



ବରୋଦାରେ ଶ୍ରୀଅରବିନ୍ଦ ରହିଥିବା ପ୍ରକୋଷ୍ଠରେ



ବରୋଦା ରାଜାଙ୍କ ରାଜପ୍ରାସାଦ ସମ୍ମୁଖରେ



ସୁସାହିତ୍ୟିକ ଶ୍ରୀଯୁକ୍ତ ସାତକଡ଼ି ହୋତାଙ୍କ ସହିତ ଏକ ଅନ୍ତରଙ୍ଗ ମୁହୂର୍ତ୍ତରେ



ସୁସାହିତ୍ୟିକ ଶ୍ରୀଯୁକ୍ତ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ସହିତ ଗୋଟିଏ ମଞ୍ଚରେ ।



୧୯୭୭ ମସିହାର ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇଁ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣ ପଦକ ଓ ଭକ୍ତକବି ମଧୁସୂଦନ ରାଓ ସ୍ୱର୍ଣ୍ଣ ପଦକ ।



ବିଭିନ୍ନ ଅନୁଷ୍ଠାନ ତରଫରୁ ପ୍ରାପ୍ତ ସମ୍ମାନ ।



## ପ୍ରଫେସର ଶରତ ଚନ୍ଦ୍ର ରଥ

ଜନ୍ମ ସ୍ଥାନ : ସାକ୍ଷୀଗୋପାଳ ନିକଟସ୍ଥ
ବୀରରାମଚନ୍ଦ୍ରପୁର ଶାସନ।
ପିତାଙ୍କ ନାମ : ଶ୍ରୀ ନୀଳାଦ୍ରି ବିହାରୀ
ରଥ।
ମାତାଙ୍କ ନାମ : ଶ୍ରୀମତୀ ମନୋରମା
ରଥ।

ଶିକ୍ଷା : ଏମ୍.ଏ., ଏମ୍.ଫିଲ୍, ପିଏଚ୍.ଡି।
୧୯୭୭ ମସିହାରେ ଓଡ଼ିଆ ଏମ୍.ଏ.
ପରୀକ୍ଷାରେ
ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ
ଅଧିକାର କରି ଉତ୍କଳ
ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ ଓ
ଭକ୍ତକବି ମଧୁସୂଦନ ରାଓ ସ୍ୱର୍ଣ୍ଣପଦକ
ଲାଭ।

ବୃତ୍ତି : ଉତ୍କଳ ବିଶ୍ୱବିଦ୍ୟାଳୟ,
ବାଣୀବିହାରର ସ୍ନାତକୋତ୍ତର
ଓଡ଼ିଆ ବିଭାଗରେ ପ୍ରଫେସର ପଦରୁ
ସେବାନିବୃତ୍ତ ହୋଇ ମଧ୍ୟ ଅବିରତ
ସାହିତ୍ୟ ସେବାରେ ନିମଗ୍ନ ।

- ପ୍ରକାଶକ

ଆସିବ ଆସିବ କହି କହି ତୁମେ
କାହିଁ ତ ଆସିଲ ନାହିଁ,
ସକାଳରୁ ସଞ୍ଜ ସଞ୍ଜରୁ ସକାଳ
ବେଳ ଗଲା ବାଟ ଚାହିଁ ।

(ତୁମେତ ଆସିଲ ନାହିଁ)

ତୁମକୁ ମୁଁ ଖୋଜି ଯିବି ତାରାରେ ତାରାରେ
ନୀହାରିକା ପାରେ ପାରେ ନୀଳ ଆକାଶରେ
ଦେଖା ପାଇବିକି ନାହିଁ ଏବେ ବି ଜାଣିନି
ଦେଖା ପାଇବାର ଆଶା କେବେ ବି ଛାଡ଼ିନି ।

(ମୁଁ ଖୋଜିଯିବି)

ମାଛଧରା ଜାଲ ପଡ଼ିଛି କେଉଁଠି
ଜାଲରେ ପଡ଼ିଛି ମାଛ
ମାଛ ପାଇଁ ଜାଲ, ଜାଲ ପାଇଁ ମାଛ
କିଏ ସତ କିଏ ମିଛ । (ନଦୀ)

ତୁମେ କେତେବେଳେ ଶରତ ସକାଳ
ମାଧବୀ ଜୋଛନା ରାତି
ଆଉ କେତେବେଳେ ହେମନ୍ତ ନିଶୀଥ
ଉଦାସୀ ଗୀତ ଗାହାନ୍ତି ।

(ଜୀବନର ରଙ୍ଗ)

ଭାବି ଭାବି ଜୀବନକୁ ପାରୁନି ମୁଁ ଜାଣି
କାହାଣୀରେ ଗୀତ କି ସେ ଗୀତରେ କାହାଣୀ

(ଜୀବନ)

ବିଦ୍ୟା ପ୍ରକାଶନୀ

ବିତରକ ସର୍ଜନା